# ଭାରତର ସାମାଜିକ ଓ ସାଂସ୍କୃତିକ ଇତିହାସ

ମନ୍ମଥ ନାଥ ଦାସ



ବିଦ୍ୟାପୁରୀ

# ଭାରତର
# ସାମାଜିକ ଓ ସାଂସ୍କୃତିକ ଇତିହାସ

ଅଧ୍ୟାପକ ମନ୍ମଥ ନାଥ ଦାସ

ବିଦ୍ୟାପୁରୀ
ବାଲୁବଜାର, କଟକ

ପ୍ରଥମ ପ୍ରକାଶ ଜୁଲାଇ ୧୯୯୦

ପ୍ରକାଶକ : ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରାକର : ଦିବାକର ମିଶ୍ର
ଗୋସ୍ୱାମୀ ପ୍ରେସ
ଆଲମଚନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୧୮.୦୦

## ସୂଚୀ

## ପ୍ରଥମ ଅଧ୍ୟାୟ

# ଭାରତୀୟ ସଂସ୍କୃତିର ବିଶେଷତ୍ୱ : ପାର୍ଥକ୍ୟ ମଧ୍ୟରେ ଐକ୍ୟ

**( Characteristics of Indian Culture : Unity in Diversity )**

**ଦେଶର ନାମ : ଭାରତବର୍ଷ, ଇଣ୍ଡିଆ**

ହିମାଳୟଠାରୁ କୁମାରିକା ଓ ହିନ୍ଦୁକୁଶଠାରୁ ବ୍ରହ୍ମଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିବା ଏହି ସୁବିଶାଳ ଭୂଭାଗର ଆଦି ନାମ ହେଉଛି ଭାରତବର୍ଷ । 'ବର୍ଷ' ଶବ୍ଦର ଅର୍ଥ ଦେଶ । ଭରତଙ୍କ ଦେଶ ରୂପେ ଏ ଦେଶ ଭାରତବର୍ଷ ନାମ ବହନ କରିଛି । ପ୍ରାଗୈତିହାସିକ କାଳରେ ଏହି ନାମ ପ୍ରଚଳିତ ହୋଇଥିଲା । ତେଣୁ, କେଉଁ ମହାନ୍ ବ୍ୟକ୍ତି ବା ବିଖ୍ୟାତ ଗୋଷ୍ଠୀଙ୍କ ନାମାନୁସାରେ ଏ ଦେଶର ନାମକରଣ କରାଗଲା, ତାହା କୁହେଳିକାମୟ ରହିଛି ।

ଗୋଟିଏ ମତରେ, ପୁରୁବଂଶୀୟ ରାଜା ଦୁଷ୍ୟନ୍ତ ଏବଂ ତାଙ୍କ ପତ୍ନୀ ଶକୁନ୍ତଳାଙ୍କ ପୁତ୍ର ଭରତ ଥିଲେ ଜଣେ ପ୍ରବଳ ପ୍ରତାପଶାଳୀ ନରପତି । ସେହି ଭରତଙ୍କ ନାମ ଅନୁସାରେ ତାଙ୍କ ଦେଶର ନାମ ହୋଇଥିଲା ଭାରତବର୍ଷ । ଦ୍ୱିତୀୟ ମତରେ, ଭରତ ଥିଲେ ରାଜର୍ଷି ଋଷଭଦେବଙ୍କ ପୁତ୍ର । ଜମ୍ବୁଦ୍ୱୀପରେ ଅବସ୍ଥିତ ସର୍ବପ୍ରଧାନ ଭୂଭାଗଟିକୁ ଋଷଭଦେବ ତାଙ୍କ ସୁଯୋଗ୍ୟପୁତ୍ର ଭରତଙ୍କ ହସ୍ତରେ ଅର୍ପଣ କରିଥିଲେ । ତେଣୁ, ସେହି ରାଜାଙ୍କ ଶାସିତ ଦେଶ ଭାରତବର୍ଷ ନାମରେ କଥିତ ହେଲା । ତୃତୀୟ ମତରେ, ପ୍ରାଚୀନ ଆର୍ଯ୍ୟମାନେ ପାଞ୍ଚଗୋଟି 'ଜନ' ବା ଗୋଷ୍ଠୀରେ ବିଭକ୍ତ ଥିଲେ । ସେଗୁଡ଼ିକ ମଧ୍ୟରେ ସର୍ବପ୍ରସିଦ୍ଧ ଗୋଷ୍ଠୀର ନାମ ଥିଲା 'ଭରତ ଜନ' । ସେହି ଗୋଷ୍ଠୀର ନାମାନୁସାରେ ସମଗ୍ର ଦେଶର ନାମ ରହିଲା ଭାରତବର୍ଷ ।

ପ୍ରାଚୀନ ଆର୍ଯ୍ୟମାନଙ୍କ ବିଶ୍ୱାସରେ ପୃଥିବୀ ସାତଗୋଟି ମୁଖ୍ୟ ଭୂଭାଗରେ ବିଭକ୍ତ ଥିଲା । ସେଥିମଧ୍ୟରେ ଗୋଟିଏ ଥିଲା ଜମ୍ବୁଦ୍ୱୀପ । ସେହି ଜମ୍ବୁଦ୍ୱୀପର

ଦକ୍ଷିଣଭାଗର ନାମ ହେଉଛି ଭାରତବର୍ଷ । ହିମାଳୟ ପର୍ବତମାଳା ଓ ସାଗର ପରିବେଷ୍ଟିତ ସମଗ୍ର ଭୂଖଣ୍ଡ ଏହି ଦେଶର ଅନ୍ତର୍ଭୁକ୍ତ ।

ଭାରତବର୍ଷର ଅନ୍ୟ ଏକ ପ୍ରଖ୍ୟାତ ନାମ ହେଉଛି ଇଣ୍ଡିଆ । ଏହାମଧ୍ୟ ଗୋଟିଏ ପ୍ରାଚୀନ ନାମ । ଭାରତର ପଶ୍ଚିମଭାଗରେ ପ୍ରବାହିତ ସିନ୍ଧୁନଦୀକୁ ପ୍ରାଚୀନକାଳର ପାରସ୍ୟ ବା ଇରାନ୍ ଦେଶର ଅଧିବାସୀମାନେ 'ହିନ୍ଦୁ' ବୋଲି ଉଚ୍ଚାରଣ କରୁଥିଲେ । କାଳକ୍ରମେ ସେହି ଶବ୍ଦକୁ କେନ୍ଦ୍ର କରି ଏ ଦେଶର ଅଧିବାସୀମାନଙ୍କୁ ମଧ୍ୟ ସେମାନେ 'ହିନ୍ଦୁ' ବୋଲି କହିଲେ । ସେଥିସଙ୍ଗେ ସେମାନେ ଦେଶର ନାମ ରଖିଲେ 'ହିନ୍ଦ୍' । ପାରସିକମାନଙ୍କୁ ଅନୁକରଣ କରି ପ୍ରାଚୀନ ଗ୍ରୀକ୍‌ମାନେ ସିନ୍ଧୁନଦୀକୁ 'ଇଣ୍ଡୋସ୍' ନାମରେ ଉଚ୍ଚାରଣ କଲେ । ସେମାନେ ମଧ୍ୟ ଏ ଦେଶକୁ 'ହିନ୍ଦ୍' ବା 'ଇନ୍ଦ୍' ବୋଲି କହିଲେ । ପ୍ରାଚୀନ ରୋମାନ୍‌ମାନେ ସେହି ନାମ ଅନୁକରଣ କଲେ । ଶେଷରେ 'ଇନ୍ଦ୍' ଶବ୍ଦରୁ 'ଇଣ୍ଡିଆ' ନାମର ଉତ୍ପତ୍ତି ହେଲା । ଦେଶବାସୀଙ୍କୁ କୁହାଗଲା 'ଇଣ୍ଡିଆନ୍' । ଇତିହାସ ଯୁଗର ଆରମ୍ଭ କାଳରୁ ପାଶ୍ଚାତ୍ୟ ଜଗତରେ କ୍ରମେ କ୍ରମେ ଏହି ନାମ ପ୍ରତିଷ୍ଠିତ ହୋଇଗଲା ।

ଏହିପରି ଭାବରେ, ସିନ୍ଧୁନଦୀର ନାମାନୁଯାୟୀ ହିନ୍ଦୁ, ହିନ୍ଦ୍, ଇଣ୍ଡିଆ ଓ ଇଣ୍ଡିଆନ୍ ନାମ ମାନ ପ୍ରଚଳିତ ହୋଇଥିଲା । ସ୍ୱାଧୀନ ଭାରତର ସମ୍ବିଧାନରେ ଏ ଦେଶକୁ ଇଣ୍ଡିଆ ତଥା ଭାରତ ନାମରେ ନାମିତ କରାଯାଇଛି ।

ମଧ୍ୟଯୁଗ ବେଳକୁ ଭାରତବାସୀମାନେ ହିନ୍ଦୁ ନାମରେ ଏତେଦୂର ବିଖ୍ୟାତ ହୋଇ ସାରିଥିଲେ ଯେ ସାରା ଦେଶର ଅନ୍ୟ ଏକ ନାମ ହୋଇଥିଲା 'ହିନ୍ଦୁସ୍ଥାନ୍' ।

ଭାରତବର୍ଷ ଓ ଇଣ୍ଡିଆ ନାମଦ୍ୱୟ ସମଗ୍ର ଭାରତୀୟ ଉପମହାଦେଶ ପ୍ରତି ପ୍ରୟୋଗ କରାଯାଇଛି । ଏହା ହିଁ ହେଉଛି ଏହି ନାମଦ୍ୱୟର ମହତ୍ତ୍ୱ ଓ ବିଶେଷତ୍ୱ ।

ଅଧୁନା, ଭାରତୀୟ ଉପମହାଦେଶରେ ଚାରିଗୋଟି ସ୍ୱାଧୀନ ଦେଶର ଅବସ୍ଥିତି ଦେଖିବାକୁ ମିଳେ । ଯଥା: ଭାରତ, ବାଙ୍ଗ୍ଲାଦେଶ, ପାକିସ୍ତାନ ଓ ନେପାଳ । କିନ୍ତୁ ଭୌଗୋଳିକ, ଐତିହାସିକ, ସାଂସ୍କୃତିକ ଓ ଅର୍ଥନୈତିକ ଦୃଷ୍ଟିରୁ ଏହିସବୁ ବିଭାଗ ହେଉଛି ପ୍ରାକୃତିକ ଭାରତବର୍ଷର ଅଙ୍ଗବିଶେଷ ।

## ଭୌଗୋଳିକ ଅବସ୍ଥିତି

ପ୍ରାଚ୍ୟର ଭୌଗୋଳିକ ମାନଚିତ୍ରରେ ଭାରତବର୍ଷ ଉଲ୍ଲେଖନୀୟ ସ୍ଥାନ ଅଧିକାର କରିଛି । ଉତ୍ତରରେ ରହିଛି ପୃଥିବୀର ସର୍ବୋଚ୍ଚ ଓ ସୁଦୀର୍ଘ ପର୍ବତମାଳା ହିମାଳୟ । ସେଥିପାଇଁ ଭାରତର ପ୍ରାକୃତିକ ଉତ୍ତର ସୀମା ନିରାପଦ ରହି ଆସିଛି । ସେଥିସଙ୍ଗେ ଏସିଆ ମହାଦେଶର ଅନ୍ୟ ଦେଶ ପାଖରୁ ଏ ଦେଶ ବିଚ୍ଛିନ୍ନ ରହିଛି । ଉତ୍ତର-ପଶ୍ଚିମରେ ଥିବା ହିନ୍ଦୁକୁଶ ଓ ସୁଲେମାନ ପର୍ବତଶ୍ରେଣୀ ଦ୍ୱାରା ଭାରତବର୍ଷ ଆଫଗାନିସ୍ତାନ୍ ଓ ରୁଷିଆ ପାଖରୁ ପୃଥକ୍ ଅଛି । ପୂର୍ବରେ ଆରାକାନ୍ ପର୍ବତମାଳାର ଅବସ୍ଥିତି ପାଇଁ ଭାରତ ଓ ବ୍ରହ୍ମଦେଶ ମଧ୍ୟରେ ପାର୍ଥକ୍ୟ ରକ୍ଷା ହୋଇଛି । ଭାରତର ଦକ୍ଷିଣ-ପୂର୍ବରେ ରହିଛି ବଙ୍ଗୋପସାଗର, ଦକ୍ଷିଣରେ ରହିଛି ଭାରତ ମହାସାଗର ଏବଂ ପଶ୍ଚିମରେ ରହିଛି ଆରବ ସାଗର । ପର୍ବତ-ମାଳା ଓ ସାଗର ପରିବେଷ୍ଟିତ ଭାରତବର୍ଷର ଭୌଗୋଳିକ ଓ ପ୍ରାକୃତିକ ସ୍ୱାତନ୍ତ୍ର୍ୟ ପାଇଁ ଭାରତବାସୀ ନିଜସ୍ୱ ରୀତିରେ ସେମାନଙ୍କ ଜୀବନଧାରା ଉପଭୋଗ କରିପାରିଛନ୍ତି । ଆବହମାନକାଳରୁ ନିଜର ଅବସ୍ଥିତି ଦୃଷ୍ଟିରୁ ଭାରତବର୍ଷ ପ୍ରାଚ୍ୟର ଭୂଗୋଳରେ ଏକ ମହାନ୍ ଦେଶ ରୂପେ ଖ୍ୟାତିଲାଭ କରିଛି । ସେହି ସ୍ୱତନ୍ତ୍ର ଅବସ୍ଥିତି ପୁଣି ଭାରତ ଇତିହାସର ଗତି ନିୟନ୍ତ୍ରଣ କରିବା ସଙ୍ଗେ ଭାରତୀୟ ସଭ୍ୟତାକୁ ସ୍ୱୟଂସିଦ୍ଧ କରିଛି ।

ଯଦିଓ ଭୌଗୋଳିକ ଦୃଷ୍ଟିରୁ ଭାରତବର୍ଷ ବହିର୍ଦେଶମାନଙ୍କ ପାଖରୁ ବିଚ୍ଛିନ୍ନ, ତଥାପି ଅନ୍ୟ ଦେଶ ସହିତ ସଂଯୋଗ ସ୍ଥାପନ ପାଇଁ ଏ ଦେଶର ପ୍ରାକୃତିକ ସୁଯୋଗ ରହିଛି । ଉତ୍ତର-ପଶ୍ଚିମ ସୀମାନ୍ତର ଖାଇବର ଓ ବୋଲାନ୍ ଗିରିସଙ୍କଟ ପଥରେ ଭାରତୀୟମାନେ ପଶ୍ଚିମ-ଏସିଆ ସହିତ ଯୋଗାଯୋଗ ରଖିଥିଲେ । ବୈଦେଶିକ ଜାତିମାନେ ମଧ୍ୟ ସେହି ପଥରେ ଭାରତକୁ ଆସିଥିଲେ । ତେଣେ, ସମୁଦ୍ରପଥରେ ଭାରତବାସୀ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତ ସହିତ ସମ୍ପର୍କ ରକ୍ଷା କରିଥିଲେ । ଏପରିକି, ସାଗର ସେପାରି ଦେଶମାନଙ୍କରେ ସଭ୍ୟତା ଓ କ୍ଷମତା ବିସ୍ତାର ପାଇଁ ସେମାନେ ସମର୍ଥ ଥିଲେ ।

## ପ୍ରାକୃତିକ ବିଭାଗ

ଆକାର ଦୃଷ୍ଟିରୁ ସାଧାରଣତଃ ଭାରତବର୍ଷକୁ ଗୋଟିଏ ଉପମହାଦେଶ ବୋଲି ବର୍ଣ୍ଣନା କରାଯାଏ । ରୁଷିଆ ବ୍ୟତୀତ ସମଗ୍ର ଇଉରୋପ ମହାଦେଶର ଆୟତନ ସହିତ ଭାରତର ଆୟତନ ପ୍ରାୟ ସମାନ । ଏହି ଆୟତନ ମଧ୍ୟରେ




ଭାରତର ପ୍ରାକୃତିକ ମାନଚିତ୍ର

ରହିଛି ଚାରିନିୟୁତ ବର୍ଗକିଲୋମିଟର ପରିମିତ ଭୂଭାଗ । ସେଥିରେ ରହିଛି ବିଭିନ୍ନ ପ୍ରାକୃତିକ ଅବସ୍ଥା । ସୁଉଚ୍ଚ ପର୍ବତମାଳା, ଗହନ ଅରଣ୍ୟ, ନଦୀନାଳାର

ଉପତ୍ୟକା, ଦିଗନ୍ତବିସ୍ତାରୀ ମରୁଭୂମି ଏବଂ ସାଗରବିଧୌତ ବେଳାଭୂମି ଇତ୍ୟାଦିର ସମାବେଶ ଦ୍ୱାରା ଭାରତର ଭୂଗୋଳ ପରିପୁଷ୍ଟ ।

ଚାରିଗୋଟି ମୁଖ୍ୟ ପ୍ରାକୃତିକ ବିଭାଗଦ୍ୱାରା ଭାରତବର୍ଷ ବିଭକ୍ତ । ସେଗୁଡ଼ିକ ହେଲା, ଉତ୍ତରରେ ହିମାଳୟର ପାର୍ବତ୍ୟାଞ୍ଚଳ, ସୈନ୍ଧବ-ଗାଙ୍ଗେୟ ଉପତ୍ୟକା, ମଧ୍ୟଭାରତ ଓ ଦାକ୍ଷିଣାତ୍ୟର ମାଳଭୂମି ଏବଂ ଦକ୍ଷିଣର ଦୁଇ ସୁଦୀର୍ଘ ସାମୁଦ୍ରିକ ଉପକୂଳ ଅଞ୍ଚଳ ।

**ଭାରତର ଅଧିବାସୀ**

ପ୍ରାଚୀନକାଳରୁ ଭାରତର ସୁବିସ୍ତୃତ ପରିସର ମଧ୍ୟରେ ପୃଥିବୀ-ପୃଷ୍ଠର ଏକ ବୃହଦାକାର ଲୋକସଂଖ୍ୟା ଦେଖିବାକୁ ମିଳିଛି । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଗ୍ରୀକ୍ ଐତିହାସିକ ହେରୋଡୋଟାସ୍ ଲେଖିଥିଲେ ଯେ, "ଯେତେ ପ୍ରକାର ଜାତିମାନଙ୍କ କଥା ଜଣାଅଛି, ସେମାନଙ୍କ ମଧ୍ୟରେ ଭାରତର ଜନସଂଖ୍ୟା ହେଉଛି ବୃହତ୍ତମ ।" ଏବେ, ବିଭାଜିତ ଭାରତର ଜନସଂଖ୍ୟା ହେଉଛି ବିଶ୍ୱର ଦ୍ୱିତୀୟ ବୃହତ୍ତମ ଜନସଂଖ୍ୟା । ଏପରି ଏକ ଜନବହୁଳ ଦେଶରେ ବିଭିନ୍ନ ପ୍ରକାରର ମନୁଷ୍ୟ ବସବାସ କରିବା ସ୍ୱାଭାବିକ । ସେଥିପାଇଁ କୁହାଯାଏ ଯେ, ଜାତିଗତ ବୈଚିତ୍ର୍ୟ ଦୃଷ୍ଟିରୁ ଭାରତ ହେଉଛି ଗୋଟିଏ କ୍ଷୁଦ୍ରାକାର ପୃଥିବୀ ।

ପୃଥିବୀର ତିନିଗୋଟି ପ୍ରଧାନ ଜାତିର ମନୁଷ୍ୟମାନେ ଭାରତରେ ବସବାସ କରୁଥିବାର ଦେଖାଯାଏ । ସେମାନେ ହେଉଛନ୍ତି, କକେସୀୟ ବା ଶ୍ୱେତାଙ୍ଗ ଜାତୀୟ, ମଙ୍ଗୋଲୀୟ ବା ପୀତାଙ୍ଗ ଜାତୀୟ ଏବଂ ଆଫ୍ରିକୀୟ ବା କୃଷ୍ଣାଙ୍ଗ ଜାତୀୟ ମନୁଷ୍ୟ । ନୃତତ୍ତ୍ୱବିତ୍‌ମାନଙ୍କ ମତରେ ଭାରତୀୟ ଜନରାଶି ମଧ୍ୟରେ ଛଅଗୋଟିରୁ ବେଶି ସଂଖ୍ୟକ ପୃଥକ୍ ଜାତୀୟ ମନୁଷ୍ୟ (Ethnic Groups) ବାସ କରନ୍ତି । ଏହି ମୁଖ୍ୟ ଜାତିଗୁଡ଼ିକ ମଧ୍ୟରେ ପୁଣି ଅନେକଗୁଡ଼ିଏ ଶାଖା ପ୍ରଶାଖା ରହିଛି ।

ଭାରତର ସର୍ବପ୍ରାଚୀନ ଅଧିବାସୀ ଥିଲେ ଆଫ୍ରିକୀୟ ନିଗ୍ରୋ ଜାତୀୟ ମନୁଷ୍ୟ । ଯଦିଓ ସେମାନେ ପ୍ରାୟତଃ ନିଶ୍ଚିହ୍ନ ହୋଇ ଯାଇଛନ୍ତି, ତଥାପି ସେମାନଙ୍କର ଅସ୍ତିତ୍ୱ ଦେଶର କୌଣସି କୌଣସି ବିରଳ ସ୍ଥାନ ଓ ଆଣ୍ଡାମାନ ଦ୍ୱୀପପୁଞ୍ଜରେ ଦେଖିବାକୁ ମିଳେ । ସେମାନଙ୍କ ପରେ ଅଷ୍ଟ୍ରିକ୍ ଗୋଷ୍ଠୀର ମନୁଷ୍ୟମାନେ ଏ ଦେଶରେ ବିସ୍ତାରଲାଭ କରିଥିଲେ । ଏହିମାନେ ଥିଲେ ପ୍ରଥମ ସଂଗଠିତ ଆଦିମ ଜାତି, ଯେଉଁମାନଙ୍କ ବଂଶଧରମାନେ ଆଧୁନିକ ଭାରତର

ଅନେକ ସ୍ଥାନରେ ବସବାସ କରୁଛନ୍ତି । କୋହ୍ଲ ବା ମୁଣ୍ଡା (Kol or Munda) ଜାତୀୟ ଲୋକେ ସେହି ଗୋଷ୍ଠୀର ପ୍ରତିନିଧି ବୋଲି ବିବେଚିତ ହୋଇଥାନ୍ତି । ଗୁଜରାଟ, ରାଜସ୍ଥାନ, ମଧ୍ୟଭାରତ, ଓଡ଼ିଶା, ବଙ୍ଗ ଓ ବିହାର ପ୍ରଭୃତି ଅଞ୍ଚଳରେ ଏମାନଙ୍କୁ ଦେଖିବାକୁ ମିଳେ । ଅଷ୍ଟ୍ରିକ୍ ଜାତୀୟ ଲୋକଙ୍କର ଭାଷା ସାନ୍ତାଳି ଓ ତଦନୁରୂପ ଜାତିର ଲୋକେ ବ୍ୟବହାର କରନ୍ତି । ବିଶ୍ୱାସ କରାଯାଏ ଯେ, ପ୍ରାଚୀନ ଆର୍ଯ୍ୟମାନେ ସେହି ଆଦିମ ଜାତୀୟ ମନୁଷ୍ୟମାନଙ୍କୁ ନିଶାଦ ନାମରେ ଆଖ୍ୟାତ କରିଥିଲେ । ସେହିମାନେ ହେଉଛନ୍ତି ଭାରତୀୟ ଜନସାଣି ମଧ୍ୟରେ ପ୍ରଥମ ଗୋଷ୍ଠୀ ।

ଆଦିମ ଅଧିବାସୀମାନେ ପାହାଡ଼, ପର୍ବତ ଓ ଗହନ ଅରଣ୍ୟାନୀ ମଧ୍ୟରେ ବାସ କରୁଥିଲେ । ସେମାନଙ୍କ ମଧ୍ୟରେ ଥିବା ଛୋଡ଼, ହୋ ଏବଂ ସାନ୍ତାଳ ଇତ୍ୟାଦି ଗୋଷ୍ଠୀର ମନୁଷ୍ୟମାନେ ହେଉଛନ୍ତି ନୂତନ ପ୍ରସ୍ତର ଯୁଗର ଆଦିମମାନଙ୍କ ବଂଶଧର । ଆଧୁନିକ ଭାରତର ଆଦିମ ଗୋଷ୍ଠୀଗୁଡ଼ିକ ମଧ୍ୟରେ କୋହ୍ଲ, ଭିଲ ଓ ମୁଣ୍ଡାମାନେ ସର୍ବାଧିକ ପ୍ରସିଦ୍ଧ ।

ମଙ୍ଗୋଲୀୟ ଗୋଷ୍ଠୀର ମନୁଷ୍ୟମାନେ ନେପାଳ, ଭୁଟାନ, ସିକମ୍ ଓ ଆସାମର ପାର୍ବତ୍ୟାଞ୍ଚଳରେ ବସବାସ କରନ୍ତି । ହିମାଳୟର ପାଦଦେଶରେ ମଧ୍ୟ ସେମାନଙ୍କୁ ଦେଖିବାକୁ ମିଳେ । ଗୁର୍ଖା, ଭୁଟିୟା, ଓ ଖାସି ଇତ୍ୟାଦି ନାମରେ ଏହି ଜାତିମାନେ ପ୍ରସିଦ୍ଧ । ସେମାନଙ୍କ ଦେହର ରଙ୍ଗ ଈଷତ୍ ପୀତବର୍ଣ୍ଣ, ମୁଖ ପ୍ରଶସ୍ତ ଓ ନାସିକା ଚେପ୍ଟା । ସେମାନଙ୍କର ନିଜସ୍ୱ ପୃଥକ୍ ଭାଷାମାନ ରହିଛି । ଏହି ଜାତୀୟ ମନୁଷ୍ୟମାନଙ୍କୁ ଭାରତୀୟ ଜନତାର ଦ୍ୱିତୀୟ ଗୋଷ୍ଠୀ ବୋଲି କୁହାଯାଇ ପାରିବ ।

ତୃତୀୟ ଗୋଷ୍ଠୀର ମନୁଷ୍ୟ ହେଲେ ଦକ୍ଷିଣ ଭାରତର ଦ୍ରାବିଡ଼ ଜାତି । ସେହିମାନେ ଥିଲେ ପ୍ରାଗୈତିହାସିକ ସିନ୍ଧୁ ସଭ୍ୟତାର ନିର୍ମାତା । ପଶ୍ଚିମ ଓ ଉତ୍ତର ଭାରତର ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ଉପରେ ସେହି ସଭ୍ୟତା ବ୍ୟାପ୍ତ ଥିଲା । ହରପ୍ପା, ମହେଞ୍ଜୋଦାରୋ ଏବଂ ଅନ୍ୟ ଅନେକ ସ୍ଥାନରୁ ସିନ୍ଧୁ ସଭ୍ୟତାର ନିଦର୍ଶନମାନ ମିଳିଛି । ଦାକ୍ଷିଣାତ୍ୟର ତାମିଲ, ତେଲୁଗୁ, କାନ୍ନାଡ଼ ଓ ମାଲୟାଲମ୍ ଭାଷାଭାଷୀ ମନୁଷ୍ୟମାନେ ସେହି ପ୍ରାଚୀନ ଜାତିର ବଂଶଧର ରୂପେ **ବିଦ୍ୟମାନ** ।

ଚତୁର୍ଥ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ଅଛନ୍ତି ଆର୍ଯ୍ୟଜାତୀୟ ମନୁଷ୍ୟ । ସିନ୍ଧୁ ସଭ୍ୟତାର ପରବର୍ତ୍ତୀକାଳରେ ସେମାନେ ଭାରତରେ ପ୍ରବେଶ କରିଥିଲେ । ପଞ୍ଜାବ ଓ ଗାଙ୍ଗେୟ ଉପତ୍ୟକାରେ ବିସ୍ତାରଲାଭ କଲାପରେ ସେମାନେ କାଳକ୍ରମେ ଭାରତର ଅନ୍ୟ ଅଞ୍ଚଳମାନଙ୍କରେ ବସବାସ କରିଥିଲେ । ସେମାନେ ଦୀର୍ଘକାୟ ଓ ଗୌରବର୍ଣ୍ଣ ଥିଲେ । ସେମାନଙ୍କ କପାଳ ପ୍ରଶସ୍ତ ଓ ନାସିକା ଉନ୍ନତ ଥିଲା । ସଂସ୍କୃତ ଭାଷାରୁ ଉତ୍ପନ୍ନ ଭାଷା, ଯଥା: ହିନ୍ଦୀ, ପଞ୍ଜାବୀ, ରାଜସ୍ଥାନୀ, ଗୁଜରାଟୀ, ମାରାଠୀ, ସିନ୍ଧୀ, ଓଡ଼ିଆ, ବଙ୍ଗଳା ଓ ଆସାମୀୟା ଭାଷାଭାଷୀ ମନୁଷ୍ୟମାନେ ଭାରତୀୟ-ଆର୍ଯ୍ୟ ଗୋଷ୍ଠୀର ମନୁଷ୍ୟ ରୂପେ ପରିଚିତ ।

ଏହି ଚାରିଗୋଟି ମୁଖ୍ୟ ମନୁଷ୍ୟଗୋଷ୍ଠୀ ବ୍ୟତୀତ ଅନ୍ୟ ପ୍ରକାରର ଜାତିମାନେ ମଧ୍ୟ ବହିର୍ଦ୍ଦେଶରୁ ଏ ଦେଶକୁ ଆସିଥିଲେ ଏବଂ ଭାରତର ଜନରାଶି ସହିତ ମିଶି ଯାଇଥିଲେ । ପ୍ରଥମେ ଆସିଥିବା ବହିର୍ଜାତି ମଧ୍ୟରେ ପ୍ରସିଦ୍ଧ ଥିଲେ ଶକ, କୁଶାଣ ଓ ହୂଣଜାତୀୟ ମନୁଷ୍ୟ । ପରବର୍ତ୍ତୀକାଳରେ ଆସିଥିଲେ ଆରବ, ତୁର୍କ, ଆଫଗାନ୍ ଓ ମୋଗଲ ।

ଏହିପରିଭାବରେ, ଭାରତୀୟ ଉପମହାଦେଶରେ ଅନେକ ଗୋଷ୍ଠୀ ଓ ଜାତିର ମନୁଷ୍ୟମାନେ ଯୁଗ ଯୁଗ ବ୍ୟାପୀ ବସବାସ କରି ଆସିଛନ୍ତି । ବିଭିନ୍ନ ଗୋଷ୍ଠୀର ନିଜସ୍ୱ ପାର୍ଥକ୍ୟ ସତ୍ତ୍ୱେ, ଦେଶବାସୀଙ୍କ ସାଧାରଣ ଜୀବନରେ ଅନେକ ପ୍ରକାର ସାମାଜିକ ରୀତିନୀତି, ଧର୍ମୀୟ ବିଶ୍ୱାସ ଓ ଆଚାର ବ୍ୟବହାର ଇତ୍ୟାଦି ଏକାକାର ହୋଇଯାଇଛି । ଭାବଗତ ଐକ୍ୟ ମଧ୍ୟରେ ସମସ୍ତେ ଏକ ସର୍ବଭାରତୀୟ ସଂସ୍କୃତିର ଦାୟାଦ ରୂପେ ଅବସ୍ଥାନ କରି ଆସିଛନ୍ତି ।

**ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ**

ସଂସ୍କୃତି ଶବ୍ଦର ଅର୍ଥ ବ୍ୟାପକ । ଦେଶବାସୀଙ୍କର କର୍ମପ୍ରେରଣା ଓ ଚିନ୍ତାଧାରା ମଧ୍ୟରୁ ଯେଉଁସବୁ ଉନ୍ନତ କୃତିତ୍ୱମାନ ଉତ୍ପନ୍ନ ହୋଇଥାଏ ସେହିସବୁ ମଧ୍ୟରେ ଦେଶ ଓ ଜାତିର ସଂସ୍କୃତି ନିହିତ ଥାଏ । ସଂସ୍କୃତିର ପରିସର ମଧ୍ୟରେ ରହିଥାଏ ଧର୍ମବିଶ୍ୱାସ, ଆଧ୍ୟାତ୍ମିକ ଓ ନୈତିକ ଆଦର୍ଶ, ଜ୍ଞାନ ବିଜ୍ଞାନ, ଶିକ୍ଷା ଦୀକ୍ଷା, ସାହିତ୍ୟ, ଦର୍ଶନ, ସ୍ଥାପତ୍ୟ, କଳା, ସଙ୍ଗୀତ ଓ ନୃତ୍ୟ ଇତ୍ୟାଦି ବହୁବିଧ ବିଷୟ । ପର୍ବ ପର୍ବାଣି, ଧର୍ମୀୟ ଓ ସାମାଜିକ ଉତ୍ସବ, ପୋଷାକ ପରିଚ୍ଛଦ, ଆଚାର ବ୍ୟବହାର ଓ ରୀତି ନୀତି ଇତ୍ୟାଦିରେ ମଧ୍ୟ ସଂସ୍କୃତିର ରୂପ ପ୍ରକଟିତ ହୋଇଥାଏ ।

ଭିନ୍ନ ଭିନ୍ନ ସମୟରେ ପ୍ରକାଶ ପାଇଥିବା ସଭ୍ୟତାଗୁଡ଼ିକର ପ୍ରଭାବରେ ଦେଶର ସଂସ୍କୃତି ପରିପୁଷ୍ଟ ହୁଏ । ସିନ୍ଧୁ ସଭ୍ୟତା, ବୈଦିକ ସଭ୍ୟତା ବା ଗୁପ୍ତଯୁଗୀୟ ସଭ୍ୟତା ପରି ଉନ୍ନତ ସଭ୍ୟତାମାନଙ୍କର ସାରାଂଶ ଭାରତୀୟ ସଂସ୍କୃତି ମଧ୍ୟରେ ନିହିତ ରହିଛି । ଦୀର୍ଘ ସମୟ ମଧ୍ୟରେ ଦେଶର ସଂସ୍କୃତି ଦୃଢ଼ତାପ୍ରାପ୍ତ ହୋଇଛି ।

ଭାରତୀୟ ସଂସ୍କୃତିର ମହତ୍ତ୍ୱ ବିଶ୍ୱବିଦିତ । ସେହି ସୁମହାନ୍ ସଂସ୍କୃତିର ତାତ୍ପର୍ଯ୍ୟମାନ ନିମ୍ନରେ ବର୍ଣ୍ଣିତ ହେଲା ।

**ଭାରତୀୟ ସଂସ୍କୃତିର ପ୍ରାଚୀନତ୍ୱ**

ସୁଦୂର ଅତୀତରେ ଭାରତୀୟ ସଂସ୍କୃତିର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ଖ୍ରୀଷ୍ଟଜନ୍ମର ତିନିସହସ୍ର ବର୍ଷ ପୂର୍ବେ ଭାରତରେ ବିଶ୍ୱର ଅନ୍ୟତମ ପ୍ରାଚୀନ ସଭ୍ୟତାର ବିକାଶଲାଭ ଘଟିଥିଲା । ତାହା ଥିଲା ସିନ୍ଧୁ-ସଭ୍ୟତା । ନୀଳ ଉପତ୍ୟକାର ମିଶରୀୟ ସଭ୍ୟତା ଓ ଇଉଫ୍ରେଟିସ୍-ଟାଇଗ୍ରିସ୍ ଉପତ୍ୟକାର ମେସୋପୋଟେମୀୟ ସଭ୍ୟତାର ସମକାଳୀନ ସଭ୍ୟତା ଥିଲା ସିନ୍ଧୁ ଉପତ୍ୟକାର ସଭ୍ୟତା । ପ୍ରାଗୈତିହାସିକ ଯୁଗର ସେହି ବ୍ୟାପକ ସଭ୍ୟତା ପରବର୍ତ୍ତୀ ସମୟ ପ୍ରତି ପ୍ରକାରାନ୍ତରେ ତାହାର ପ୍ରଭାବମାନ ରଖିଯାଇଥିଲା ।

ଆର୍ଯ୍ୟମାନଙ୍କ ଆଗମନ ସଙ୍ଗେ ଭାରତୀୟ ସଭ୍ୟତା ନୂତନ ଭାବରେ ବିକଶିତ ହେଲା । ଆର୍ଯ୍ୟମାନଙ୍କର 'ବେଦ' ଥିଲା ମାନବଜାତିର ପ୍ରାଚୀନତମ ଧର୍ମଶାସ୍ତ୍ର । ବୈଦିକ ସାହିତ୍ୟ ଥିଲା ପୃଥିବୀର ସର୍ବପ୍ରାଚୀନ ସାହିତ୍ୟ ।

ଦ୍ରାବିଡ଼ ଓ ଆର୍ଯ୍ୟସଭ୍ୟତା ପରେ ପର୍ଯ୍ୟାୟକ୍ରମେ ଭାରତଭୂମିରେ ସଭ୍ୟତା ଓ ସଂସ୍କୃତିର ବିକାଶଲାଭ ଘଟିଥିଲା । ସେଥିପାଇଁ, ଏ ଦେଶର ସାଂସ୍କୃତିକ ପରମ୍ପରାର ପ୍ରାଚୀନତ୍ୱ ରହିଛି । ଏପରି ପ୍ରାଚୀନତ୍ୱ ସବୁ ଦେଶର ସଂସ୍କୃତିରେ ଦେଖିବାକୁ ମିଳେ ନାହିଁ ।

**ଭାରତୀୟ ସଂସ୍କୃତିର ଅନ୍ତର୍ନିହିତ ଶକ୍ତି**

ଯୁଗ ଯୁଗ ସମୟ ମଧ୍ୟରେ ଭାରତୀୟ ସଂସ୍କୃତି ନିଜ ଶାଶ୍ୱତ ଶକ୍ତିର ପରିଚୟ ଦେଇଛି । ରାଜନୈତିକ ଉତ୍ଥାନ ପତନ ସତ୍ତ୍ୱେ ଦେଶବାସୀଙ୍କର ମୌଳିକ ଧର୍ମ, ସାହିତ୍ୟ, ଦର୍ଶନ, ଓ କଳା ପ୍ରଭୃତି ଚିରଦିନ ପାଇଁ ଅମ୍ଳାନ ରହି

ଆସିଛି । ଦେଶବାସୀଙ୍କ କଳାକୌଶଳ ବଂଶାନୁକ୍ରମେ ଦେଶର ସଂସ୍କୃତିକୁ ଜୀବିତ ରଖିଛି ।

ଭାରତମାଟିରେ ବାରମ୍ବାର ଧର୍ମୀୟ ଓ ଆଧ୍ୟାତ୍ମିକ ଚେତନା ପ୍ରକାଶଲାଭ କରିଛି । ସତ୍ୟ ଓ ଅସତ୍ୟ, ପୁଣ୍ୟ ଓ ପାପ, ନ୍ୟାୟ ଓ ଅନ୍ୟାୟ, ଆଲୋକ ଓ ଅନ୍ଧକାର, ଅବିନଶ୍ୱର ଓ ନଶ୍ୱର ଏବଂ ପବିତ୍ର ଓ ଅପବିତ୍ର ମଧ୍ୟରେ ଥିବା ପାର୍ଥକ୍ୟ ଚିରକାଳ ପାଇଁ ଭାରତୀୟର ବିଶ୍ୱାସରେ ଦୃଢ଼ୀଭୂତ ହୋଇଛି । ଫଳରେ, ଏକ ନୈତିକ ପ୍ରେରଣା ଦ୍ୱାରା ଦେଶର ସାମାଜିକ ଜୀବନ ପ୍ରଭାବିତ ହୋଇଛି । ଉନ୍ନତତର ଦର୍ଶନ, ସାହିତ୍ୟ ଓ କଳା ସେହି ପ୍ରେରଣା ମଧ୍ୟରୁ ନିର୍ଗତ ହୋଇଛି ।

ଭାରତୀୟ ସଂସ୍କୃତିକୁ ଶକ୍ତି ପ୍ରଦାନ କରିଛି ଦେଶବାସୀଙ୍କର ଅନ୍ତର୍ନିହିତ ସୃଜନୀଶକ୍ତି । ଚିନ୍ତା ଓ କର୍ମ, ଏହି ଉଭୟ କ୍ଷେତ୍ରରେ ଭାରତବାସୀ ସ୍ୱପ୍ରତିଭାର ପରିଚୟ ଦେଇ ଆସିଛନ୍ତି । ରାଜନୈତିକ ବିଶୃଙ୍ଖଳା କିମ୍ବା ଅର୍ଥନୈତିକ ବିପର୍ଯ୍ୟୟ ମଧ୍ୟରେ ସୁଦ୍ଧା ଲୋକଙ୍କର ସୃଜନଲିପ୍ସା ଧ୍ୱଂସ ପାଇନାହିଁ । କବି, ଲେଖକ, ସାହିତ୍ୟିକ, ଶିଳ୍ପୀ, ଚିତ୍ରକର ଓ ସ୍ଥପତିମାନେ ଯୁଗେ ଯୁଗେ ଏ ଦେଶର ସାଂସ୍କୃତିକ ପରମ୍ପରା ଜୀବିତ ରଖିଛନ୍ତି । ଫଳରେ, ଭାରତୀୟ ସଂସ୍କୃତି ଏକ କାଳଜୟୀ ସଂସ୍କୃତିରୂପେ ଆତ୍ମମର୍ଯ୍ୟାଦା ଲାଭ କରି ଆସିଛି ।

## ଭାରତୀୟ ସଂସ୍କୃତିର ସ୍ଥାୟିତ୍ୱ

ବିଶ୍ୱର ଅନେକ ପ୍ରାଚୀନ ସଂସ୍କୃତି କାଳଗର୍ଭରେ ବିଲୀନ ହୋଇଯାଇଛି । ଉଦାହରଣସ୍ୱରୂପ, ନୀଳ ସଭ୍ୟତା ଓ ମେସୋପୋଟେମିଆ ସଭ୍ୟତାର ନିର୍ମାତା-ମାନେ କାଳକ୍ରମେ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ସେମାନଙ୍କ ପରମ୍ପରା ସେ ସ୍ଥାନଗୁଡ଼ିକର ଭବିଷ୍ୟତ ଅଧିବାସୀମାନେ ରକ୍ଷା କରିପାରି ନ ଥିଲେ । ଅଥଚ, ସିନ୍ଧୁ-ସଭ୍ୟତା କାଳରୁ ଭାରତୀୟମାନେ ନିଜ ଜନ୍ମମାଟିରେ ବଂଶାନୁକ୍ରମେ ରହି ଆସିଛନ୍ତି ଏବଂ ଅତୀତର ପରମ୍ପରାମାନ ଯଥାସମ୍ଭବ ରକ୍ଷା କରିପାରିଛନ୍ତି ।

ଭାରତ ଇତିହାସରେ ଗୌରବୋଜ୍ଜ୍ୱଳ ତଥା ଅନ୍ଧକାରାଚ୍ଛନ୍ନ ସମୟମାନ ଦେଖିବାକୁ ମିଳିଛି । ବାରମ୍ବାର ବୈଦେଶିକ ଆକ୍ରମଣ ଦ୍ୱାରା ରାଜନୈତିକ ବିପର୍ଯ୍ୟୟ ଘଟିଛି । ଅରାଜକତା ଓ ବିଶୃଙ୍ଖଳା ମଧ୍ୟରେ ବାରମ୍ବାର ଏ ଦେଶ ନିମଜ୍ଜିତ ହୋଇଛି । କିନ୍ତୁ ତଦ୍ଦ୍ୱାରା ଭାରତୀୟ ସଂସ୍କୃତି ଲୋପ ପାଇଯାଇ ନାହିଁ । ଐତିହାସିକ ହୁମାୟୁନ କବିରଙ୍କ କଥାରେ : "ଭାରତ ପ୍ରାକୃତିକ ବିପତ୍ତି ଓ

ମନୁଷ୍ୟକୃତ ଅପଶାସନ ଉପରେ ବିଜୟଲାଭ କରିଛି । ଭାରତୀୟ ସଂସ୍କୃତିର କାହାଣୀ ସେହି ଶକ୍ତି ଓ ସେହି ପ୍ରକ୍ରିୟାର ଗୂଢ଼ ରହସ୍ୟ ଉଦ୍‌ଘାଟିତ କରିଥାଏ । ସେହି କାହାଣୀ ହେଉଛି ଏକତା ଓ ମିଳନର ସମନ୍ୱୟ ଏବଂ ପୁରାତନ ତଥା ନୂତନ ପରମ୍ପରା ମଧ୍ୟରେ ଯଥାର୍ଥ ସଂଯୋଗର ବିକାଶ କାହାଣୀ ।"

ଭାରତୀୟ ସଂସ୍କୃତିର ଅବିଚ୍ଛିନ୍ନ ଧାରାବାହିକତା ପାଇଁ ଅନ୍ୟ ଗୋଟିଏ କାରଣ ଦେଖିବାକୁ ମିଳେ । ତାହା ହେଉଛି, ଯେକୌଣସି ନୂତନ ଧର୍ମ ବା ଦର୍ଶନ ବା କଳା କିମ୍ବା ଚିନ୍ତାଧାରା ପ୍ରତି ଏ ଦେଶର ଦ୍ୱାର ସବୁବେଳେ ଉନ୍ମୁକ୍ତ ରହିଛି । ବୈଦେଶିକ ଆକ୍ରମଣ କିମ୍ବା ବାଣିଜ୍ୟିକ ଯୋଗାଯୋଗ ଦ୍ୱାରା ଯେଉଁ ପ୍ରକାର ନୂତନତ୍ୱର ସୂଚନା ମିଳେ ତାହା ଭାରତବାସୀ ଆନନ୍ଦରେ ଗ୍ରହଣ କରିଥାନ୍ତି । ଜ୍ଞାନବିଜ୍ଞାନ କ୍ଷେତ୍ରରେ ଭାବ ବିନିମୟ ପାଇଁ ଏ ଦେଶର ଲୋକେ ସଦା ଆଗ୍ରହ ପ୍ରକାଶ କରିଛନ୍ତି । ନୂତନ ସ୍ଥାପତ୍ୟ ଶୈଳୀ ଓ କଳାକୌଶଳ ପ୍ରତି ମଧ୍ୟ ଆଗ୍ରହ ଦେଖିବାକୁ ମିଳିଛି । ଫଳତଃ, ପ୍ରାଚୀନ ଓ ନୂତନର ସଂଯୋଗ ଦ୍ୱାରା ସଂସ୍କୃତିର ପରିସର କ୍ରମାନ୍ୱୟ ଭାବରେ ବୃଦ୍ଧି ପାଇଛି ।

ଇତିହାସର ବିଭିନ୍ନ ଯୁଗରେ ଏ ଦେଶରେ ସାଂସ୍କୃତିକ ଜାଗରଣ ଦେଖିବାକୁ ମିଳିଛି । ମହାବୀର ଜିନ୍ ଓ ଗୌତମ ବୁଦ୍ଧଙ୍କ ସମୟରେ, ଅଥବା ମୌର୍ଯ୍ୟ, କୁଶାଣ ବା ଗୁପ୍ତଯୁଗରେ, କିମ୍ବା ମଧ୍ୟଯୁଗୀୟ ଭକ୍ତି ଆନ୍ଦୋଳନ କାଳରେ ଓ ଆଧୁନିକ ଯୁଗର ସଂସ୍କାର ଆନ୍ଦୋଳନ ବେଳେ, ଏ ଦେଶର ଆପାଦ ମସ୍ତକରେ ସାଂସ୍କୃତିକ ଚେତନା ପ୍ରକାଶ ପାଇଛି । ସେହି ଚେତନା ମଧ୍ୟରୁ ସାହିତ୍ୟ, ଦର୍ଶନ ଓ କଳା ଇତ୍ୟାଦି ପ୍ରେରଣାଲାଭ କରିଛି । ବୈଦିକଯୁଗରୁ ଏ ଯୁଗ ପର୍ଯ୍ୟନ୍ତ ସାଂସ୍କୃତିକ ଧାରାବାହିକତା ଦେଖିବାକୁ ମିଳିଛି ।

**ଭାରତୀୟ ସଂସ୍କୃତିର ସହନଶୀଳତା**

ଉଦାରତା ଓ ସହନଶୀଳତା ହେଉଛି ଭାରତୀୟ ସଂସ୍କୃତିର ଅନ୍ୟ ଏକ ବୈଶିଷ୍ଟ୍ୟ । ଆର୍ଯ୍ୟ ସଭ୍ୟତାର ଅରୁଣୋଦୟକାଳରେ, ଅର୍ଥାତ୍, ବୈଦିକ ଯୁଗରେ, ଆଧ୍ୟାତ୍ମିକ ଚିନ୍ତା ପାଇଁ ପ୍ରତ୍ୟେକ ନର ବା ନାରୀର ସ୍ୱାଧୀନତା ଥିଲା । ଏପରିକି, ଯେତେବେଳେ ସମାଜରେ ସମସ୍ତେ ଈଶ୍ୱରବିଶ୍ୱାସୀ ବା ଆସ୍ତିକ ଥିଲେ, ସେତେବେଳେ ମଧ୍ୟ କେହି କେହି ଅବିଶ୍ୱାସୀ ବା ନାସ୍ତିକ ଭାବେ ପରିଚିତ ଥିଲେ । ଅର୍ଥାତ୍, ଧର୍ମ ବିଶ୍ୱାସ ମଧ୍ୟରେ ନିଜର ମନକୁ ଆବଦ୍ଧ ରଖିବା ପାଇଁ କୌଣସି ବାଧ୍ୟ ନ ଥିଲେ ।

ଏହି ପ୍ରକାର ମୂଳଭିତ୍ତି ଉପରେ ଭାରତୀୟ ସଂସ୍କୃତି ପ୍ରତିଷ୍ଠାଲାଭ କରିଥିଲା । ଯେତେବେଳେ ବ୍ରାହ୍ମଣ୍ୟଧର୍ମର ରୀତିନୀତି ବିରୁଦ୍ଧରେ ଜୈନ ଓ ବୌଦ୍ଧ ଆନ୍ଦୋଳନ ଆରମ୍ଭ ହେଲା, ସେତେବେଳେ ସେହି ନୂତନ ଧର୍ମଦ୍ୱୟ ପ୍ରତି ବିଦ୍ୱେଷ ପରିବର୍ତ୍ତେ ସମର୍ଥନ ମିଳିଥିଲା । ଭାରତୀୟ ସମାଜ ମଧ୍ୟରେ ବ୍ରାହ୍ମଣ୍ୟ ଧର୍ମ, ଜୈନ ଧର୍ମ ଓ ବୌଦ୍ଧ ଧର୍ମ ଶତ ଶତ ବର୍ଷ ଧରି ସମାନ୍ତରାଳ ଭାବରେ ବିକାଶଲାଭ କରିପାରିଥିଲେ । ସେଥିସଙ୍ଗେ, ଆଧ୍ୟାତ୍ମିକ ଓ ଦାର୍ଶନିକ କ୍ଷେତ୍ରରେ ଭିନ୍ନ ଧର୍ମ ମଧ୍ୟରେ ସମନ୍ୱୟ ପ୍ରକାଶ ପାଇଥିଲା ।

ଭାରତୀୟ ଧର୍ମର ପରିସର ମଧ୍ୟରେ ନାନା ପ୍ରକାର ମତବାଦ ଦେଖିବାକୁ ମିଳନ୍ତି । ଏକେଶ୍ୱରବାଦୀ, ବହୁ ଦେବଦେବୀ-ବିଶ୍ୱାସୀ ଓ ନିରୀଶ୍ୱରବାଦୀ, ସମସ୍ତେ ନିର୍ଭୟରେ ସହାବସ୍ଥାନ କରୁଥିଲେ । ଈଶ୍ୱରଙ୍କୁ ନିରାକାର ବା ସାକାର ଭାବରେ ଚିନ୍ତା କରିବା ପାଇଁ ସ୍ୱାଧୀନତା ଥିଲା । ଶୈବ, ଶାକ୍ତ, ବୈଷ୍ଣବ ଇତ୍ୟାଦି ବିଭିନ୍ନ ସଂପ୍ରଦାୟର ଲୋକେ ନିଜ ନିଜ ବିଶ୍ୱାସ ଅନୁଯାୟୀ ପୂଜା ଆରାଧନା କରୁଥିଲେ । ବହୁ ମାର୍ଗ ମଧ୍ୟରେ ପରମଲକ୍ଷ୍ୟ ଓ ଚରମସତ୍ୟର ସନ୍ଧାନ ପାଇଁ ଭାରତୀୟ ସଂସ୍କୃତି ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲା ।

ଇସଲାମ୍ ଧର୍ମ ଏ ଦେଶରେ ପ୍ରବେଶ କଲାପରେ ସେହି ଧର୍ମର ସାରମର୍ମ, ଯଥା : ଏକେଶ୍ୱରବାଦ ପ୍ରତି ଅନେକେ ଆକୃଷ୍ଟ ହୋଇଥିଲେ । କିନ୍ତୁ ଯେତେ-ବେଳେ କେହି କେହି ଧର୍ମାନ୍ଧ ମୁସଲମାନ ସୁଲତାନ୍ ବଳପ୍ରୟୋଗ ଦ୍ୱାରା ସେମାନଙ୍କ ଧର୍ମ ପ୍ରଚାର ପାଇଁ ଇଚ୍ଛା କରିଥିଲେ, ସେତେବେଳେ ଦେଶବାସୀ ସେପରି କାର୍ଯ୍ୟର ପ୍ରତିରୋଧ କରିଥିଲେ । ଅଥଚ, ସମୟକ୍ରମେ ମୁସଲମାନ ସାଧୁ ସନ୍ଥମାନଙ୍କ ପ୍ରଚାର ଦ୍ୱାରା ଲୋକେ ସେହି ଧର୍ମରେ ଦୀକ୍ଷିତ ହୋଇପାରିଲେ ।

ଆଧୁନିକ ଯୁଗରେ ଖ୍ରୀଷ୍ଟଧର୍ମ ଭାରତକୁ ଆସିଲାପରେ ସେହି ଧର୍ମର ସାରନୀତି ପ୍ରତି ଆକୃଷ୍ଟ ହୋଇ ନାନା ସ୍ଥାନରେ ଲୋକେ ସେହି ଧର୍ମ ଗ୍ରହଣ କରିଥିଲେ । ଭାରତୀୟ ସମାଜରେ ଅନ୍ୟ ଧର୍ମଗୁଡ଼ିକ ସହିତ ଇସଲାମ୍ ଓ ଖ୍ରୀଷ୍ଟଧର୍ମ ବିକାଶଲାଭ କରିବାକୁ ଲାଗିଲା । ସେହିପରି, ଗୁରୁ ନାନକଙ୍କ ପ୍ରବର୍ତ୍ତିତ ଶିଖଧର୍ମ ଓ ରାଜା ରାମମୋହନ ରାୟଙ୍କ ପ୍ରଚାରିତ ବ୍ରାହ୍ମ ମତବାଦ ଭାରତୀୟ ସମାଜରେ ଆଦୃତ ହେଲା ।

ଭାରତୀୟ ସଂସ୍କୃତିର ସହନଶୀଳତା ପ୍ରାଚୀନ ଓ ମଧ୍ୟକାଳର ରାଜନୀତି **କ୍ଷେତ୍ରରେ ପ୍ରତିଫଳିତ ହୋଇଥିଲା । ଅଶୋକ, କନିଷ୍କ, ହର୍ଷ ଏବଂ ଆକବର**

ପ୍ରଭୃତି ବିଖ୍ୟାତ ଶାସକମାନେ ଉଦାର ଧର୍ମନୀତି ଅବଲମ୍ବନ କରିଥିଲେ । ଧର୍ମମତ ନିର୍ବିଶେଷରେ ସେମାନେ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିଥିଲେ ।

ଆଧୁନିକ ଯୁଗରେ ଭାରତୀୟ ସଂସ୍କୃତି ଉପରେ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନର ପ୍ରଭାବ ବ୍ୟାପକଭାବେ ପ୍ରତିଫଳିତ ହୋଇଥିଲା । ଏ ଦେଶର ଚିନ୍ତାଶୀଳ ମନୀଷୀମାନେ ଇଉରୋପ ମହାଦେଶରେ ପ୍ରକାଶ ପାଇଥିବା ନବଜ୍ଞାନର ହିତକର ଫଳାଫଳଗୁଡ଼ିକୁ ସ୍ୱାଗତ କରିଥିଲେ । ପାଶ୍ଚାତ୍ୟ ସାହିତ୍ୟ, ରାଜନୈତିକ ଦର୍ଶନ, ଚିକିତ୍ସା ବିଜ୍ଞାନ ଓ ଯାନ୍ତ୍ରିକ ସଭ୍ୟତାର ବିଭିନ୍ନ ଦିଗପ୍ରତି ଭାରତବାସୀମାନେ ପ୍ରବଳ ଆଗ୍ରହ ପ୍ରକାଶ କରିଥିଲେ । ଫଳତଃ, ଏ ଦେଶର ସଂସ୍କୃତି ଯୁଗୋପଯୋଗୀ ରୂପ ଧାରଣ କରିଛି ।

ନିଜସ୍ୱ ମୌଳିକତା ସହ ନୂତନତ୍ୱର ପ୍ରଭାବ ବହନ କରି ଭାରତୀୟ ସଂସ୍କୃତି ବଳିଷ୍ଠ ଆକାର ନେଇଛି । ଧର୍ମାନ୍ଧତା ଓ ଅନୁଦାରତା ପରିବର୍ତ୍ତେ ଏହି ସଂସ୍କୃତି ସହନଶୀଳତା ଓ ଉଦାରତା ଉପରେ ପ୍ରତିଷ୍ଠିତ ରହିଛି । ସେଥିପାଇଁ ଏ ଦେଶର ସାଂସ୍କୃତିକ ପରିସର ମଧ୍ୟରେ ବହୁ ଧର୍ମ, ବହୁ ମତ, ବହୁ ବିଶ୍ୱାସ, ବହୁ ଚିନ୍ତା, ବିବିଧ ସାହିତ୍ୟ, ଦର୍ଶନ ଓ କଳା ଇତ୍ୟାଦି ପରିପୁଷ୍ଟି ଲାଭ କରିଛି । ଜାତି, ବର୍ଣ୍ଣ, ଭାଷା ଓ ଆଚାର ବ୍ୟବହାରର ପାର୍ଥକ୍ୟମାନ ସାଂସ୍କୃତିକ ଉଦାର ପରିବେଶ ମଧ୍ୟରେ ହଜି ଯାଇଛି ।

**ଭାରତୀୟ ସଂସ୍କୃତିର ପ୍ରାଚୁର୍ଯ୍ୟ**

ପ୍ରାଚୁର୍ଯ୍ୟ ଓ ବ୍ୟାପକତା ହେଉଛି ଭାରତୀୟ ସଂସ୍କୃତିର ଅନ୍ୟ ଏକ ବିଶେଷତ୍ୱ । ଏପରି ଏକ ମହତ୍ତ୍ୱ ଅନ୍ୟ ସଂସ୍କୃତିରେ କ୍ୱଚିତ୍ ଦେଖାଯାଏ । ଉଦାହରଣସ୍ୱରୂପ, ପ୍ରାଚୀନ ଗ୍ରୀସ୍ ଦେଶର ସଂସ୍କୃତି ଥିଲା ଇଉରୋପୀୟ ସଭ୍ୟତାର ଜନନୀ । କିନ୍ତୁ ସେହି ସଂସ୍କୃତି ଗୋଟିଏ ଜାତି, ଗୋଟିଏ ଭାଷା ଓ ଗୋଟିଏ ଧର୍ମକୁ କେନ୍ଦ୍ର କରି ଗଢ଼ି ଉଠିଥିଲା । ଅପରପକ୍ଷରେ, ଭାରତୀୟ ସଂସ୍କୃତି ବହୁ ଜାତି, ବିବିଧ ଧର୍ମ ଓ ଅନେକ ଭାଷାକୁ କେନ୍ଦ୍ର କରି ବିକାଶଲାଭ କରିଥିଲା । ଗ୍ରୀସ୍ ଦେଶ ଥିଲା ଏକ କ୍ଷୁଦ୍ର ଦେଶ । ଭାରତ ହେଉଛି ଗୋଟିଏ ଉପମହାଦେଶ । ଏପରି ଏକ ସୁବିସ୍ତୃତ ଆଞ୍ଚଳିକ ସୀମା ମଧ୍ୟରେ ଅନେକ ପ୍ରକାରର ମନୁଷ୍ୟ ଗୋଷ୍ଠୀର ଉଦ୍ୟମ ଫଳରେ ଭାରତୀୟ ସଂସ୍କୃତି ବ୍ୟାପକତା ଧାରଣ କରିପାରିଲା ।

ଭାରତ ଇତିହାସର ବିଭବ-ରାଜି ଭାରତୀୟ ସଂସ୍କୃତିକୁ ପ୍ରାଚୁର୍ଯ୍ୟ ପ୍ରଦାନ କରିଛି । ଭାରତ ହେଉଛି ବହୁ ମହାପୁରୁଷଙ୍କ ଜନ୍ମଭୂମି । କାର୍ଲାଇଲ (Carlyle)ଙ୍କ ଭାଷାରେ, "ଯିଏ କେହି ଇତିହାସର ଅର୍ଥ ଜାଣିବା ପାଇଁ ଇଚ୍ଛା କରନ୍ତି, ସେ ମହାପୁରୁଷମାନଙ୍କର ଜୀବନୀ ଅନୁଧ୍ୟାନ କରିବା ଉଚିତ ।" ପ୍ରାଚୀନକାଳରେ ଭାରତରେ ଜନ୍ମିଥିବା ବାଲ୍ମୀକି, ବ୍ୟାସ, ବୁଦ୍ଧ, ଜିନ୍, କୌଟିଲ୍ୟ, ଅଶୋକ, କନିଷ୍କ, ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ, ବିକ୍ରମାଦିତ୍ୟ, କାଳିଦାସ, ଆର୍ଯ୍ୟଭଟ୍ଟ, ହର୍ଷ ଏବଂ ଶଙ୍କର ପ୍ରଭୃତି ମହାପୁରୁଷମାନେ, ତଥା ମଧ୍ୟଯୁଗ ଓ ଆଧୁନିକ ଯୁଗରେ ଜନ୍ମିଥିବା ମନୀଷୀମାନେ ସାଂସ୍କୃତିକ ପ୍ରେରଣାର ଉତ୍ସ ରୂପେ କାର୍ଯ୍ୟ କରିଥିଲେ । ଜଣେ ବୁଦ୍ଧ ହେଉଛନ୍ତି 'ଏସିଆର ଆଲୋକ' ଏବଂ ବିଶ୍ୱର ସଂଖ୍ୟାଧିକ ନରନାରୀଙ୍କ ଦ୍ୱାରା ଭଗବାନ ରୂପେ ପୂଜିତ ପୁରୁଷ । ଅଶୋକ ହେଉଛନ୍ତି ବିଶ୍ୱ ଇତିହାସର ସର୍ବଶ୍ରେଷ୍ଠ ନରପତି । ଧର୍ମ ପ୍ରବର୍ତ୍ତକ, ପ୍ରଚାରକ, କବି, ଦାର୍ଶନିକ, ଚିତ୍ରକର, ଶିଳ୍ପୀ, ସ୍ଥପତି ଓ ବୈଜ୍ଞାନିକମାନେ ଏ ଦେଶର ଇତିହାସ ପୃଷ୍ଠା ପରିପୂର୍ଣ୍ଣ କରିଛନ୍ତି । ସେମାନଙ୍କ ଦାନ ଫଳରେ ଭାରତୀୟ ସଂସ୍କୃତି ବିଭବଶାଳୀ ହୋଇଛି ।

ଭାରତର ଶାଶ୍ୱତ ସାହିତ୍ୟ, ଦେଶର ଚତୁର୍ଦିଗରେ ଥିବା ଅକଳନ୍ତି ସ୍ଥାପତ୍ୟ କୀର୍ତ୍ତି, କାଳଗର୍ଭରୁ ରକ୍ଷା ପାଇଯାଇଥିବା ଉତ୍କୃଷ୍ଟ ଚିତ୍ରକଳା, ବିଭିନ୍ନ ବୈଜ୍ଞାନିକ ଉଦ୍ଭାବନ, ଓ ଆଶ୍ଚର୍ଯ୍ୟଜନକ ଶିଳ୍ପଚାତୁରୀ ମଧ୍ୟରେ ସଂସ୍କୃତିର ପରିଚୟ ନିହିତ ରହିଛି । ଏ ଦେଶର ସମୃଦ୍ଧ ସଂସ୍କୃତି ହେଉଛି ଦେଶବାସୀଙ୍କର ଗର୍ବ ଓ ଗୌରବର ବିଷୟ ।

## ଭାରତୀୟ ସଂସ୍କୃତିର ସାର୍ବଲୌକିକତା

ଦେଶର ଭୌଗୋଳିକ ସୀମା ମଧ୍ୟରେ ଭାରତୀୟ ସଂସ୍କୃତି ଆବଦ୍ଧ ନ ଥିଲା । ହିମାଳୟ ପର୍ବତମାଳା ତଥା ଭାରତ ମହାସାଗର ଲଙ୍ଘନ କରି ସେହି ସଂସ୍କୃତିର ପ୍ରଭାବ ବହିର୍ଦେଶମାନଙ୍କରେ ପ୍ରସାରଲାଭ କରିଥିଲା ।

ଅତି ପ୍ରାଚୀନକାଳରେ ଇରାନ, ମିଶର, ମେସୋପୋଟେମିଆ ଓ ଗ୍ରୀକ୍ ଭୂଖଣ୍ଡ ସହିତ ଭାରତର ବାଣିଜ୍ୟିକ ସମ୍ପର୍କ ସ୍ଥାପିତ ହୋଇଥିଲା । ସିନ୍ଧୁ ସଭ୍ୟତାର କେତେକ ନିଦର୍ଶନ ମେସୋପୋଟେମିଆର ଧ୍ୱଂସାବଶେଷ ମଧ୍ୟରେ ଦେଖିବାକୁ ମିଳିଛି । ଐତିହାସିକ ଯୁଗର ଆରମ୍ଭକାଳରେ ଭାରତ ଓ ପାଶ୍ଚାତ୍ୟ

ଜଗତ ମଧ୍ୟରେ ବାଣିଜ୍ୟିକ ଯୋଗାଯୋଗ ଦୃଢ଼ତର ହୋଇଥିଲା । ସେଥିସଙ୍ଗେ, ସାଂସ୍କୃତିକ ଭାବ ବିନିମୟ ପାଇଁ ସୁଯୋଗ ମିଳିଥିଲା । ଗ୍ରୀସ୍‌ଦେଶର ପ୍ରାଚୀନ ପ୍ରବାଦ ଅନୁଯାୟୀ, ଭାରତର କେତେଜଣ ଜ୍ଞାନୀବ୍ୟକ୍ତି ପ୍ରଖ୍ୟାତ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍‌ଙ୍କ ସହିତ ସାକ୍ଷାତ କରି ଭାବ ଆଦାନପ୍ରଦାନ କରିଥିଲେ । ପିଥା-ଗୋରସ୍‌ଙ୍କ ପରି ଗ୍ରୀକ୍ ଦାର୍ଶନିକମାନେ ଭାରତୀୟ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲେ । ଐତିହାସିକ ଏଇଚ୍. ଜି. ରଓଲିନ୍‌ସନ୍ (H. G. Rawlinson) କହିଛନ୍ତି, "ପିଥାଗୋରୀୟମାନଙ୍କ ଦ୍ୱାରା ଶିକ୍ଷା ଦିଆଯାଉଥିବା ପ୍ରାୟ ସବୁ ପ୍ରକାର ଧର୍ମୀୟ, ଦାର୍ଶନିକ ଓ ଗାଣିତିକ ତତ୍ତ୍ୱମାନ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଭାରତରେ ଜଣାଥିଲା ।"

ଭାରତର ବୌଦ୍ଧଧର୍ମ କେବଳ ଧର୍ମ ଆକାରରେ ନୁହେଁ, ଏକ ସଭ୍ୟତାର ଆଲୋକ ରୂପେ ବହିର୍ଦେଶମାନଙ୍କରେ ପ୍ରବେଶ କରିଥିଲା । କାରଣ, ଧର୍ମ ସହିତ ଏ ଦେଶର ନୀତିଶାସ୍ତ୍ର, ସାହିତ୍ୟ, ଦର୍ଶନ, ଓ କଳା ପ୍ରଭୃତି ବିଷୟମାନ ବିଦେଶକୁ ଯାଇଥିଲା । ସିଂହଳ, ବ୍ରହ୍ମଦେଶ ଓ ଶ୍ୟାମ ଦେଶରେ ହୀନଯାନ ବୌଦ୍ଧଧର୍ମ ବ୍ୟାପି ଯାଇଥିଲାବେଳେ, ମହାଯାନ ବୌଦ୍ଧଧର୍ମ ଚୀନ, ଜାପାନ, ତିବ୍ବତ ଓ ମଧ୍ୟ ଏସିଆର ଦେଶମାନଙ୍କରେ ପରିବ୍ୟାପ୍ତ ହୋଇଥିଲା । ଫଳତଃ, ସମଗ୍ର ଏସିଆ ମହାଦେଶ ଭାରତୀୟ ସଂସ୍କୃତି ଦ୍ୱାରା ପ୍ରଭାବିତ ହେଲା । ଜଳ ଓ ସ୍ଥଳପଥରେ ଅସଂଖ୍ୟ ଭାରତୀୟ ବୌଦ୍ଧ ପ୍ରଚାରକ, ସନ୍ନ୍ୟାସୀ, ପଣ୍ଡିତ ଓ ଯାତ୍ରୀମାନେ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ସମୟ ମଧ୍ୟରେ ବିଦେଶ ଯାତ୍ରା କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ଅନ୍ୟ ଦେଶମାନଙ୍କରେ ସ୍ଥାୟୀଭାବେ ରହିଯାଇ-ଥିଲେ । ଜଣାଯାଏ ଯେ, ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଚୀନ୍ ଦେଶର କେବଳ ଲୋ ୟାଂ ପ୍ରଦେଶରେ ଭାରତରୁ ଯାଇଥିବା ତିନିସହସ୍ରରୁ ଅଧିକସଂଖ୍ୟକ ବୌଦ୍ଧ ସନ୍ନ୍ୟାସୀ ଏବଂ ଦଶସହସ୍ର ଭାରତୀୟ ପରିବାର ବସବାସ କରୁଥିଲେ ।

ଭାରତୀୟ ବୌଦ୍ଧମାନେ ଏ ଦେଶର ମହାର୍ଘ ଗ୍ରନ୍ଥମାନ ଅନ୍ୟ ଦେଶର ଭାଷାଗୁଡ଼ିକରେ ଅନୁବାଦ କରିଥିଲେ । ତଦ୍ଦ୍ୱାରା ଭାରତୀୟ ସଂସ୍କୃତିର ଦାର୍ଶନିକ ତତ୍ତ୍ୱମାନ ଅନ୍ୟ ଦେଶର ଜ୍ଞାନୀ ବ୍ୟକ୍ତିମାନେ ହୃଦୟଙ୍ଗମ କଲେ । ତେଣେ, ବୌଦ୍ଧଧର୍ମର ପ୍ରଚାର ସଙ୍ଗେ ଭାରତୀୟ କଳା ଓ ଭାସ୍କର୍ଯ୍ୟର ପ୍ରଭାବ ବହିର୍ଦେଶ-ମାନଙ୍କରେ ପ୍ରତିଫଳିତ ହେଲା ।

ପ୍ରାଚୀନକାଳରେ, ଦକ୍ଷିଣ-ପୂର୍ବ ଏସିଆର ଅନେକ ଅଞ୍ଚଳରେ ଭାରତୀୟମାନେ ଉପନିବେଶ ସ୍ଥାପନ କରିଥିଲେ । ସେମାନେ କ୍ରମାଗତଭାବେ ବ୍ରହ୍ମଦେଶ, ମାଳୟ, ଜବ ଦ୍ୱୀପ, ସୁମାତ୍ରା, ବୋର୍ଣ୍ଣିଓ, ଶ୍ୟାମ ଓ କାମ୍ବୋଡ଼ିଆ ପ୍ରଭୃତି ଦେଶରେ ଥିବା ସେମାନଙ୍କ ଉପନିବେଶଗୁଡ଼ିକୁ ଯଥାରୀତି ଯାତ୍ରା କରୁଥିଲେ । ଖ୍ରୀଷ୍ଟଯୁଗର ଆରମ୍ଭକାଳରୁ ପ୍ରାୟ ଏକସହସ୍ର ବର୍ଷ ପାଇଁ ସାଗର ସେପାରି ଦେଶମାନଙ୍କରେ ଭାରତୀୟ ଉପନିବେଶମାନ ସୃଷ୍ଟି ହୋଇଥିଲା । ଫଳରେ, ସେସବୁ ଦେଶରେ ଭାରତୀୟ ଧର୍ମ, ଦର୍ଶନ, ସ୍ଥାପତ୍ୟ ଓ କଳା ପ୍ରଭୃତିର ଗଭୀର ପ୍ରଭାବ ସ୍ଥାୟୀ ରୂପ ଧାରଣ କଲା । ଭାରତୀୟ ସଂସ୍କୃତି ଦ୍ୱାରା ସମଗ୍ର ଦକ୍ଷିଣ-ପୂର୍ବ ଏସିଆ ଉପକୃତ ହୋଇଥିଲା ।

ସଂକ୍ଷେପରେ, ଭାରତୀୟ ସଂସ୍କୃତି କେବଳ ଭାରତବାସୀଙ୍କ ମଧ୍ୟରେ ଆବଦ୍ଧ ନ ରହି ବୃହତ୍ତର ମାନବ ସମାଜ ପ୍ରତି ଉଦ୍ଦିଷ୍ଟ ହୋଇଥିଲା । ବୌଦ୍ଧଧର୍ମ ଆଜି ପର୍ଯ୍ୟନ୍ତ ଏସିଆ ମହାଦେଶର ଅନେକ ଦେଶରେ ମୁଖ୍ୟ ଧର୍ମବିଶ୍ୱାସ ରୂପେ ବିଦ୍ୟମାନ ରହିଛି । ସେଥିସଙ୍ଗେ ଏ ଦେଶର ଆଧ୍ୟାତ୍ମିକ ବିଶ୍ୱାସ ତଥା କଳା ଓ ସ୍ଥାପତ୍ୟର ନିଦର୍ଶନମାନ ସେସବୁ ଦେଶରେ ଦେଖିବାକୁ ମିଳୁଛି । ସାର୍ ଜନ୍ ମାର୍ଶାଲ (Sir John Marshall)ଙ୍କ ମତରେ ମଧ୍ୟ ଏସିଆ, ଚୀନ୍, ଜାପାନ, ତିବ୍ବତ, ବ୍ରହ୍ମଦେଶ, ଶ୍ୟାମ, କାମ୍ବୋଡ଼ିଆ ଓ ଜାଭା ପ୍ରଭୃତି ସ୍ଥାନ ଭାରତୀୟ କଳାର ପ୍ରତିବିମ୍ବ ବହନ କରି ଆସିଛି ।

ଏହିପରି ଭାବରେ, ଭାରତୀୟ ସଂସ୍କୃତି ତାହାର ସାର୍ବଜନୀନ ପ୍ରଭାବ ପାଇଁ ମହତ୍ତ୍ୱପୂର୍ଣ୍ଣ ରହିଛି । ଉପରବର୍ଣ୍ଣିତ ବୈଶିଷ୍ଟ୍ୟ ସହ ଭାରତୀୟ ସଂସ୍କୃତିର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ, ଏକ ଉପମହାଦେଶୀୟ ପରିସର ମଧ୍ୟରେ ସମସ୍ତ ପ୍ରକାର ବୈଚିତ୍ର୍ୟ ଓ ପାର୍ଥକ୍ୟସତ୍ତ୍ୱେ ଭାରତୀୟ ଐକ୍ୟର ପ୍ରାଣଶକ୍ତି ରୂପେ ତାହା କାର୍ଯ୍ୟ କରି ଆସିଛି ।

## ପାର୍ଥକ୍ୟ ମଧ୍ୟରେ ଐକ୍ୟ (Unity in Diversity)

ଭାରତୀୟ ଉପମହାଦେଶ ମଧ୍ୟରେ ଭୌଗୋଳିକ ବିଭାଗମାନ ରହିଛି । ଜଳବାୟୁ ଦୃଷ୍ଟିରୁ ସେହିସବୁ ବିଭାଗ ମଧ୍ୟରେ ପାର୍ଥକ୍ୟ ରହିଆସିଛି । ଦେଶର ଆକାର ସୁବିଶାଳ ଥିବାରୁ ଦେଶରେ ଅନେକ ରାଜନୈତିକ ବିଭାଗ ଦେଖାଯାଇଛି । ସେସବୁ ବିଭାଗ ରାଜନୈତିକ ଅନୈକ୍ୟର ପ୍ରମାଣ ଦେଇଛି । ତେଣେ, ଭାରତ ହେଉଛି ବହୁ ଜାତି, ବହୁ ଧର୍ମ, ବହୁ ମତ ଓ ବହୁ ଭାଷାର ଦେଶ । ଏ

ଦେଶର ଇତିହାସ ମଧ୍ଯ ଜଟିଳଭାବରେ ଗଢି କରିଛି । ସର୍ବୋପରି, ଭାରତୀୟ ଜନଗଣି ମଧ୍ୟରେ ବହୁପ୍ରକାର ସାମାଜିକ ରୀତି, ଅର୍ଥନୈତିକ ବ୍ୟବସ୍ଥା, ବିଭିନ୍ନ ପ୍ରକାରର ଆଚାର ବ୍ୟବହାର, ପୋଷାକ ପରିଚ୍ଛଦ ଓ ଖାଦ୍ୟପେୟ ଇତ୍ୟାଦି ପ୍ରଚଳିତ ରହିଛି । ଫଳତଃ, ବୈଷମ୍ୟ, ପ୍ରଭେଦ, ପାର୍ଥକ୍ୟ ଓ ଅନୈକ୍ୟ ହେଉଛି ଭାରତୀୟ ଜୀବନଧାରାର ଗୋଟିଏ ଅବଶ୍ୟମ୍ଭାବୀ ଲକ୍ଷଣ ।

କିନ୍ତୁ, ସମସ୍ତ ପ୍ରକାର ପ୍ରଭେଦ ଓ ପାର୍ଥକ୍ୟସତ୍ତ୍ୱେ ଭାରତୀୟ ଜୀବନରେ ଏକ ମୌଳିକ ଐକ୍ୟ ରହି ଆସିଛି । ଏହି ଐକ୍ୟ ହେଉଛି ଭାରତ ଇତିହାସର ସର୍ବାଧିକ ଆଶ୍ଚର୍ଯ୍ୟଜନକ ବିଶେଷତ୍ୱ । ଅଧ୍ୟାପକ ଇ. ଜେ. ର୍ୟାପ୍‌ସନ୍ (E. J. Rapson) ଲେଖିଛନ୍ତି, "ଭାରତ ଇତିହାସର ଆକର୍ଷଣ ହେଉଛି ସେଥିରେ ବିଭିନ୍ନ ଗୋଷ୍ଠୀରୁ ଉଦ୍ଭବ ହୋଇଥିବା ମନୁଷ୍ୟମାନେ ସେମାନଙ୍କ ନିଜ ନିଜ ଭୂମିକା ଗ୍ରହଣ କରି ଯାଇଛନ୍ତି ।" ସାର୍ ଆଲ୍‌ଫ୍ରେଡ୍ ରିସ୍‌ଲେ (Sir Alfred Risley)ଙ୍କ ଭାଷାରେ "ଶାରୀରିକ ଓ ସାମାଜିକ ପ୍ରକାର, ଭାଷା, ଦେଶାଚାର ଓ ଧର୍ମ ପ୍ରଭୃତିରେ ଯେଉଁ ସମସ୍ତ ବହୁଧା ପାର୍ଥକ୍ୟ ଭାରତରେ ଦେଖିବାକୁ ମିଳେ, ସେସବୁର ଅନ୍ତରାଳରେ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ରହିଛି ଜୀବନର ଏକ ଅନ୍ତର୍ନିହିତ ଅଭିନ୍ନତା ।"

ନିମ୍ନଲିଖିତ କାରଣଗୁଡ଼ିକ ପାଇଁ ପାର୍ଥକ୍ୟମଧ୍ୟରେ ଭାରତୀୟ ଜୀବନ-ଧାରାରେ ଐକ୍ୟ ପ୍ରତିଷ୍ଠା ସମ୍ଭବପର ହୋଇଛି ।

### ଭୌଗୋଳିକ ପ୍ରଭେଦ ମଧ୍ୟରେ ଭାରତୀୟ ଐକ୍ୟଭାବ

ଭାରତର ଭୂଗୋଳ ବୈଚିତ୍ର୍ୟମୟ । ତୁଷାରାବୃତ ପର୍ବତରାଜି, ଶୁଷ୍କ ମରୁଭୂମି, ଗହନ ଅରଣ୍ୟାନୀ, ନଦନଦୀର ଉପତ୍ୟକା, ପ୍ରଶସ୍ତ ମାଳଭୂମି ଓ ସମୁଦ୍ରକୂଳବର୍ତ୍ତୀ ସମତଳ ଭୂମି ଇତ୍ୟାଦିରେ ଭାରତ ଭୂମି ଆଚ୍ଛାଦିତ । ହିମାଳୟର ପାର୍ବତ୍ୟାଞ୍ଚଳ, ସୈନ୍ଧବ-ଗାଙ୍ଗେୟ ଉପତ୍ୟକା, ଦାକ୍ଷିଣାତ୍ୟର ମାଳଭୂମି ଓ ଦକ୍ଷିଣରେ ସାମୁଦ୍ରିକ ତଟଭୂମି ଦ୍ୱାରା ଦେଶର ଭୌଗୋଳିକ ବିଭାଗମାନ ଗଠିତ । ଏହିସବୁ ପ୍ରାକୃତିକ ବିଭିନ୍ନତା ମଧ୍ୟରେ ଦେଶର ବିଭିନ୍ନ ସ୍ଥାନ ମଧ୍ୟରେ ପ୍ରଭେଦ ରହିବା ସ୍ୱାଭାବିକ ।

କିନ୍ତୁ ଭୌଗୋଳିକ ବିଭାଗସତ୍ତ୍ୱେ, ଏ ଦେଶର ସାମୂହିକ ଭୂଗୋଳ ଭାରତୀୟ ଏକତାର ପ୍ରାଣପିଣ୍ଡ ରୂପେ କାର୍ଯ୍ୟ କରିଛି । ଉତ୍ତୁଙ୍ଗ ପର୍ବତମାଳା ଓ ସାଗର ଦ୍ୱାରା ପରିବେଷ୍ଟିତ ଥିବା ଯୋଗୁଁ ଭାରତବର୍ଷ ଏସିଆ ମହାଦେଶର

ଅନ୍ୟ ଦେଶମାନଙ୍କ ପାଖରୁ ବିଚ୍ଛିନ୍ନ ରହିଛି । ଭାରତୀୟ ଭୂଭାଗର ସୀମା ୭ ହଜାର ମାଇଲ ବ୍ୟାପୀ ପର୍ବତ ଦ୍ୱାରା ଓ ୫ ହଜାର ମାଇଲ ସମୁଦ୍ର ଦ୍ୱାରା ପରିବେଷ୍ଟିତ ରହିଛି । ସେହି ଭୌଗୋଳିକ ସ୍ୱାତନ୍ତ୍ର୍ୟ ଫଳରେ ଏ ଦେଶ ବିଶ୍ୱ ମାନଚିତ୍ରରେ ଏକ ପୃଥକ୍ ଦେଶ ରୂପେ ସ୍ଥିତି ରକ୍ଷା କରିଛି । ହିମାଳୟ ପର୍ବତମାଳା ଉତ୍ତର ଦିଗରେ ଭାରତର ସୀମା ସୁରକ୍ଷିତ ରଖିଛି । ସେଥିସଙ୍ଗେ ସେହି ପର୍ବତରାଜ ପାଇଁ ବୃଷ୍ଟିପାତ ଓ ନଦନଦୀର ବହୁ ପରିପୁଷ୍ଟି ହେବାଦ୍ୱାରା ଏକ ବିସ୍ତାରିତ ଅଞ୍ଚଳ ଶସ୍ୟଶ୍ୟାମଳ ହୋଇପାରିଛି ।

ଭୌଗୋଳିକ ସ୍ୱାତନ୍ତ୍ର୍ୟ ପାଇଁ ପ୍ରାଚୀନ ଋଷିମାନେ ଏ ଦେଶକୁ ଗୋଟିଏ ନାମରେ ନାମିତ କରିଥିଲେ, ଯଥା: ଭାରତବର୍ଷ । ଦେଶର ଅଧିବାସୀମାନଙ୍କୁ ମଧ୍ୟ ଗୋଟିଏ ନାମରେ ନାମିତ କରାଯାଇଥିଲା, ଯଥା: ଭାରତୀ-ସନ୍ତତି । ସେହି ମହାନ୍ କଳ୍ପନା ମଧ୍ୟରେ ଦେଶବାସୀଙ୍କ ଭାବଗତ ଓ ମାନସିକ ଐକ୍ୟର ମୂଳଭିତ୍ତି ରହିଥିଲା । ଦେଶର ସମଗ୍ର ଭୂଗୋଳ ପ୍ରତି ଭକ୍ତି ଉଦ୍ରେକ କରିବା ପାଇଁ ପ୍ରାଚୀନ ମନୀଷୀମାନେ ହିମାଳୟକୁ ଦେବସ୍ଥାନ ରୂପେ ବର୍ଣ୍ଣନା କରିଥିଲେ ଏବଂ ଗଙ୍ଗା ପ୍ରଭୃତି ନଦୀକୁ ଦେବୀ-ସ୍ୱରୂପିଣୀ ଭାବେ ଦର୍ଶାଇଥିଲେ । ଭାରତର ଆପାଦ-ମସ୍ତକରେ ପବିତ୍ର ଗଙ୍ଗାଜଳ ବିନା କୌଣସି ପୁଣ୍ୟକାର୍ଯ୍ୟ ସମ୍ପାଦିତ ହେଉ ନ ଥିଲା । ପବିତ୍ର ସାମାଜିକ କାର୍ଯ୍ୟମାନଙ୍କରେ ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ ଓ କାବେରୀ ନଦୀମାନଙ୍କୁ ସ୍ମରଣ କରାଯାଉଥିଲା । ଦେଶର ପୁଣ୍ୟପୀଠଗୁଡ଼ିକୁ ଭାରତର ସର୍ବଶେଷ ସୀମା ସ୍ଥାନମାନଙ୍କରେ ସ୍ଥାପନ କରାଯାଇଥିଲା, ଯଥା: ହିମାଳୟଠାରେ ବଦ୍ରିନାଥ, ସୁଦୂର ଦକ୍ଷିଣସୀମାରେ କୁମାରିକା, ପଶ୍ଚିମ ସାଗରକୂଳରେ ଦ୍ୱାରକା ଏବଂ ପୂର୍ବ ଉପକୂଳରେ ପୁରୀଧାମ । ସଂକୀର୍ଣ୍ଣ ରାଜନୈତିକ ସୀମା ଅତିକ୍ରମ କରି ଦେଶବାସୀମାନେ ସେହିସବୁ ଦୂର-ଦୂରାନ୍ତ ସ୍ଥାନକୁ ପୁଣ୍ୟ ଅର୍ଜନ ପାଇଁ ଯାତ୍ରା କରୁଥିଲେ ।

ସଂକ୍ଷେପରେ, ଭାରତୀୟମାନେ ସମଗ୍ର ଭୌଗୋଳିକ ଭାରତ ପ୍ରତି ଦେଶ-ଭକ୍ତି ଜ୍ଞାପନ ପାଇଁ ଅତୀତ ଯୁଗରୁ ଶିକ୍ଷାଲାଭ କରିଥିଲେ । ଏହି ଦେଶ-ଭକ୍ତି ପ୍ରଗାଢ଼ କରିବା ପାଇଁ ଭାରତଭୂମିକୁ ଆଧ୍ୟାତ୍ମିକ ମହତ୍ତ୍ୱ ଦିଆଯାଇଥିଲା । କୁହା ଯାଇଥିଲା,

"ଗାୟନ୍ତି ଦେବାଃ କିଲ, ଗୀତକାନି ଧନ୍ୟାସ୍ତୁତେ ଭାରତ-ଭୂମିଭାଗେ,
ସ୍ୱର୍ଗାପବର୍ଗାସ୍ପଦ-ମାର୍ଗ-ଭୂତେ, ଭବନ୍ତି ଭୂୟଃ ପୁରୁଷାଃ ସୁରତ୍ୱାତ୍ ।"

ଦେଶମାତୃକା ସହିତ ଧର୍ମବିଶ୍ୱାସ ସଂଯୋଗ ଫଳରେ ଭାରତବାସୀଙ୍କ ଭାବଗତ ଐକ୍ୟ ଦୃଢ଼ୀଭୂତ ହୋଇଥିଲା ।

**ରାଜନୈତିକ ଅନୈକ୍ୟ ମଧ୍ୟରେ ଐକ୍ୟ ପ୍ରତିଷ୍ଠା**

ଭାରତର ସୁବିସ୍ତୃତ ଆକାର ଦୃଷ୍ଟିରୁ ପ୍ରାଚୀନ ଓ ମଧ୍ୟଯୁଗରେ ଏ ଦେଶ ଅନେକାନେକ ରାଜ୍ୟରେ ବିଭକ୍ତ ରହିବା ସ୍ୱାଭାବିକ ଥିଲା । ବିଭିନ୍ନ ସ୍ଥାନ ମଧ୍ୟରେ ଦୂରତ୍ୱ ଥିଲା ଗୋଟିଏ ପ୍ରଧାନ ସମସ୍ୟା । ଯାତାୟାତ କଷ୍ଟକର ଥିଲା । ପାହାଡ଼, ପର୍ବତ, ନଦନଦୀ ଓ ଗହନ ଅରଣ୍ୟ ଦ୍ୱାରା ଦେଶ ପରିପୂର୍ଣ୍ଣ ଥାଏ । ଏସବୁ ଦୃଷ୍ଟିରୁ ଗୋଟିଏ ରାଜଧାନୀରୁ ଭାରତୀୟ ଉପମହାଦେଶ ଶାସନ କରିବା ସମ୍ଭବ ନ ଥାଏ ।

କିନ୍ତୁ ଏସବୁ ସତ୍ତ୍ୱେ, ଆବହମାନକାଳରୁ ସମଗ୍ର ଭାରତର ରାଜନୈତିକ ଏକତା ପାଇଁ କଳ୍ପନା କରାଯାଇଥିଲା । ପ୍ରାଚୀନଯୁଗର ମନୀଷୀମାନେ ଭାରତର ଶକ୍ତିଶାଳୀ ରାଜାମାନଙ୍କ ପାଇଁ ଗୋଟିଏ ରାଜନୈତିକ ଆଦର୍ଶ ରଖିଯାଇଥିଲେ । ସେହି ଆଦର୍ଶ ଥିଲା "ହିମାଳୟଠାରୁ ଦକ୍ଷିଣ ସମୁଦ୍ର ପର୍ଯ୍ୟନ୍ତ ସହସ୍ର ଯୋଜନ ବ୍ୟାପୀ ସ୍ଥାନ ହେଉଛି ଏକକ ସାର୍ବଭୌମ ସମ୍ରାଟଙ୍କର ଯଥାର୍ଥ ରାଜ୍ୟ ।" 'ଚକ୍ରବର୍ତ୍ତୀ' ସମ୍ରାଟ ରୂପେ ଶାସନ କରିବା ପାଇଁ ଏହା ଥିଲା ଏକ ଆହ୍ୱାନ ।

ଭାରତର ବିଖ୍ୟାତ ବୀର ପୁରୁଷମାନେ ଉପରିକଥିତ ଆଦର୍ଶ ଅନୁଯାୟୀ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର କରିଥିଲେ । ପ୍ରାଚୀନ ଯୁଗରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ଅଶୋକ, ସମୁଦ୍ରଗୁପ୍ତ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଓ ହର୍ଷବର୍ଦ୍ଧନ ପ୍ରଭୃତି ରାଜାମାନେ ଭାରତର ରାଜନୈତିକ ଏକତା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ସେହି ପରମ୍ପରା ଅନୁଯାୟୀ ମଧ୍ୟଯୁଗରେ ଆଲାଉଦ୍ଦୀନ୍ ଖିଲ୍‌ଜୀ, ଆକବର, ଆଉରଙ୍ଗଜେବ, ଓ ପେଶବା ବାଜିରାଓ ଦେଶକୁ ଏକତ୍ରିତ କରିବାକୁ ଚେଷ୍ଟାକରିଥିଲେ । ଶେଷରେ, ଆଧୁନିକ ଯୁଗରେ, ଇଂରେଜମାନେ ସମଗ୍ର ଭାରତବର୍ଷ ଉପରେ ଆଧିପତ୍ୟ ବିସ୍ତାର କରି ଦେଶର ରାଜନୈତିକ ଏକତା ସ୍ଥାପନ କରିଥିଲେ ।

ଏହିପରି ଭାବରେ ଭାରତର ରାଜନୈତିକ ଏକତା ପାଇଁ ଇତିହାସର ବିଭିନ୍ନ ସମୟରେ ଉଦ୍ୟମ କରାଯାଇଛି ।

**ଜାତିଗତ ପାର୍ଥକ୍ୟ ମଧ୍ୟରେ ଐକ୍ୟ**

ଭାରତୀୟ ଜନରାଶି ମଧ୍ୟରେ ଅନେକ ଜାତିର ମନୁଷ୍ୟ ବସବାସ କରି ଆସିଛନ୍ତି । ଏହିସବୁ ଜାତି ଓ ଉପଜାତି ନିଜ ନିଜର ସ୍ୱାତନ୍ତ୍ର୍ୟ [illegible]

ସକ୍ଷମ ହୋଇଛନ୍ତି । ତଥାପି, ଦୁଇଟି ମୁଖ୍ୟ କାରଣ ପାଇଁ ସମସ୍ତଙ୍କ ମଧ୍ୟରେ ଐକ୍ୟ ସ୍ଥାପନ ସମ୍ଭବପର ହୋଇଛି । ପ୍ରଥମ କାରଣ ହେଲା, ଜାତି ଜାତି ମଧ୍ୟରେ ସମ୍ମିଶ୍ରଣ ଏବଂ ଦ୍ୱିତୀୟ କାରଣ ହେଉଛି, ଗୋଟିଏ ପ୍ରକାର ସାର୍ବଜନୀନ ଜୀବନଯାତ୍ରା ପାଇଁ ଐତିହାସିକ ବିବର୍ତ୍ତନ ।

ସହସ୍ର ସହସ୍ର ବର୍ଷ ସମୟ ମଧ୍ୟରେ ଜାତିଗତ ସମ୍ମିଶ୍ରଣ ସଙ୍ଘଟିତ ହୋଇପାରିଛି । ନୃତତ୍ତ୍ୱବିତ୍‌ମାନଙ୍କ ମତରେ, ଉତ୍ତର-ଭାରତର ନଦୀ ଉପତ୍ୟକା ଅଞ୍ଚଳର ଓ ମଧ୍ୟ ପ୍ରଦେଶର କୋହ୍ଲ ଓ ମୁଣ୍ଡା ଜାତୀୟ ତଥା ଅନ୍ୟ ଜାତୀୟ ମନୁଷ୍ୟ ମଧ୍ୟରେ ଅନେକାଂଶରେ ମିଶ୍ରଣ ଘଟିଛି । ସେହିପରି, ଦ୍ରାବିଡ଼ ଓ ଆର୍ଯ୍ୟ ଗୋଷ୍ଠୀର ମନୁଷ୍ୟମାନଙ୍କ ମଧ୍ୟରେ ବ୍ୟାପକ ସମ୍ମିଶ୍ରଣ ସଙ୍ଘଟିତ ହୋଇଛି । ସେଥିପାଇଁ, ଭାରତର କେତେକ ଅଞ୍ଚଳର ଲୋକଙ୍କୁ ଆର୍ଯ୍ୟ-ଦ୍ରାବିଡ଼ୀୟ ଓ ମୋଙ୍ଗଲ-ଦ୍ରାବିଡ଼ୀୟ ଇତ୍ୟାଦି ନାମରେ ବର୍ଣ୍ଣନା କରାଯାଇଛି ।

ଭାରତର ଧର୍ମବିଶ୍ୱାସ, ଦେଶାଚାର ଓ ଲୋକାଚାର ଇତ୍ୟାଦିର ବିବର୍ତ୍ତନ ମଧ୍ୟରେ ବିଭିନ୍ନ ଜାତି ଉପଜାତିର ମନୁଷ୍ୟମାନେ ଏକତ୍ରିତ ହୋଇପାରିଛନ୍ତି । ପ୍ରତ୍ୟେକ ଜାତିର ପ୍ରଭାବ ଅନ୍ୟ ଜାତିଗୁଡ଼ିକ ଉପରେ ପଡ଼ିଛି ଓ ତଦ୍ଦ୍ୱାରା ଗୋଟିଏ ପ୍ରକାର ସର୍ବସାଧାରଣ ଜୀବନଯାତ୍ରାର ଅଭ୍ୟୁଦୟ ଘଟିଛି । ପାହାଡ଼ ପର୍ବତର ଉପଜାତିମାନଙ୍କର ଦେବଦେବୀ ବିଶ୍ୱାସ ଓ ପୂଜା ପଦ୍ଧତିର ପ୍ରଭାବ ଆର୍ଯ୍ୟମାନଙ୍କ ଧର୍ମ ଉପରେ ପ୍ରତିଫଳିତ ହୋଇଛି । ଆର୍ଯ୍ୟମାନଙ୍କର ଧର୍ମବିଶ୍ୱାସ ଉପଜାତି-ମାନଙ୍କୁ ପ୍ରଭାବିତ କରିଛି । ତେଣେ, ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଧର୍ମ ଗୋଟିଏ ଧର୍ମରେ ପରିଣତ ହୋଇଛି । ଜାତି ଓ ଉପଜାତିର ପାର୍ଥକ୍ୟ ଭେଦ କରି ଧର୍ମୀୟ ଓ ସାମାଜିକ ରୀତିନୀତିମାନ ଏକାକାର ହୋଇଯାଇଛି ।

ବିଦେଶାଗତ ଜାତି, ଯଥା: ଶକ, କୁଶାଣ ଓ ହୂଣମାନେ ଭାରତୀୟ ସମାଜ ମଧ୍ୟରେ ସଂପୂର୍ଣ୍ଣଭାବେ ବିଲୀନ ହୋଇ ଯାଇଛନ୍ତି । ପରବର୍ତ୍ତୀକାଳରେ ଆସିଥିବା ଆରବ, ତୁର୍କ, ଆଫଗାନ ଓ ମୋଗଲମାନେ ଏ ଦେଶର ସ୍ଥାୟୀ ଅଧିବାସୀ ରୂପେ ଭାରତୀୟ ଜୀବନଧାରା ସହିତ ନିଜ ନିଜକୁ ସାମିଲ କରିଛନ୍ତି । ସବୁ ଜାତିର ଅଧିବାସୀମାନେ ଭାରତୀୟ ନାମରେ ହିଁ ପୃଥିବୀରେ ପରିଚିତ ଅଛନ୍ତି ।

**ଧର୍ମଗତ ପାର୍ଥକ୍ୟ ମଧ୍ୟରେ ଐକ୍ୟ**

ଭାରତଭୂମିରେ ପ୍ରାଚୀନ ବିଶ୍ୱର ତିନିଗୋଟି ପ୍ରଧାନ ଧର୍ମର ଅଭ୍ୟୁଦୟ ଘଟିଥିଲା । ସେଗୁଡ଼ିକ ହେଲା—ବ୍ରାହ୍ମଣ୍ୟ ହିନ୍ଦୁ ଧର୍ମ, ବୌଦ୍ଧ ଧର୍ମ ଓ ଜୈନ

ଧର୍ମ । ମଧ୍ୟଯୁଗର ଶେଷକାଳରେ ଶିଖ୍ ଧର୍ମର ଉତ୍ଥାନ ହେଲା । ବହିର୍ଦେଶରୁ ତିନୋଟି ଧର୍ମ ଭାରତରେ ପ୍ରବେଶ କରିଥିଲା । ସେଗୁଡ଼ିକ ହେଲା, ଜୋରୋ-ଆଷ୍ଟରଙ୍କ ପ୍ରବର୍ତ୍ତିତ ପାରସିକ ଧର୍ମ, ଇସ୍‌ଲାମ ଧର୍ମ ଏବଂ ଖ୍ରୀଷ୍ଟ ଧର୍ମ । ଫଳତଃ, ଭାରତ ହେଉଛି ସାତଗୋଟି ପ୍ରସିଦ୍ଧ ଧର୍ମର ଗୃହ । ଏତଦ୍‌ବ୍ୟତୀତ, ଏ ଦେଶରେ ଅନେକ ପ୍ରକାର ଧର୍ମ ବିଶ୍ୱାସ ଓ ମତବାଦ ମନୁଷ୍ୟ ମନରେ ସ୍ଥାନ ପାଇଛି ।

ଏହି ପ୍ରକାର ବିଭିନ୍ନତା ମଧ୍ୟରେ ସବୁ ସମୟରେ ଗୋଟିଏ ପ୍ରକାର ଧର୍ମ ସମନ୍ୱୟ ମଧ୍ୟ ପ୍ରକାଶ ପାଇଛି । ବ୍ରାହ୍ମଣ୍ୟ ହିନ୍ଦୁ ଧର୍ମ, ଜୈନ ଓ ବୌଦ୍ଧ ଧର୍ମ, ଏଗୁଡ଼ିକ ଗୋଟିଏ ଆଧ୍ୟାତ୍ମିକ ଉତ୍ସ ମଧ୍ୟରୁ ବିକାଶଲାଭ କରିଥିଲା । ଶିଖ୍ ଧର୍ମ ମଧ୍ୟ ଏକ ସଂସ୍କାରମୂଳକ ଧର୍ମ ରୂପେ ଆତ୍ମପ୍ରକାଶ କରିଥିଲା । ଫଳରେ ଏହିସବୁ ଭାରତୀୟ ଧର୍ମ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ରହିଥିଲା ।

ପାର୍ସି ଧର୍ମ ଇରାନ୍ ଦେଶରେ ଜନ୍ମିଥିଲେ ମଧ୍ୟ ଭାରତରେ ସ୍ଥାନ ପାଇଥିଲା । ଅଧୁନା ଭାରତରେ ସେହି ଧର୍ମାବଲମ୍ବୀମାନଙ୍କ ସଂଖ୍ୟା ଇରାନ୍ ଦେଶର ପାର୍ସୀ ଧର୍ମାବଲମ୍ବୀମାନଙ୍କ ସଂଖ୍ୟା ଅପେକ୍ଷା ଅଧିକ । ସେମାନେ ପାର୍ସୀ ନାମରେ ପ୍ରସିଦ୍ଧ । ସେମାନଙ୍କ ପ୍ରାଚୀନତମ ଧର୍ମଶାସ୍ତ୍ରର ନାମ ହେଉଛି 'ଜେନ୍ଦ ଆଭେସ୍ତା' । ସେଥିରେ କେତେକ ଭାରତୀୟ ବୈଦିକ ଦେବତାମାନଙ୍କ ଉପାସନା ବର୍ଣ୍ଣିତ ଅଛି । ସେମାନଙ୍କ ମଧ୍ୟରେ ପ୍ରଧାନ ହେଉଛନ୍ତି ଅଗ୍ନି ଦେବତା । ଆଲୋକ ଓ ଅନ୍ଧକାର, ଅର୍ଥାତ୍ ପୁଣ୍ୟ ଓ ପାପ ମଧ୍ୟରେ ରହିଥିବା ଚିରନ୍ତନ ସଂଘର୍ଷରେ ପୁଣ୍ୟର ବିଜୟ ହିଁ ସୁନିଶ୍ଚିତ, ଏହା ହେଉଛି ପାର୍ସୀ ଧର୍ମର ମୂଳ ବିଶ୍ୱାସ । ଏହି ବିଷୟରେ, ପାର୍ସୀ ଧର୍ମ ଓ ବୈଦିକ ଆର୍ଯ୍ୟ ବିଶ୍ୱାସ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ରହିଛି ।

ଇସ୍‌ଲାମ ଧର୍ମର ପ୍ରବର୍ତ୍ତକ ହଜରତ୍ ମହମ୍ମଦ ଆରବ ଦେଶରେ ୫୭୦ ଖ୍ରୀଷ୍ଟାବ୍ଦରେ ଜନ୍ମଲାଭ କରିଥିଲେ ଏବଂ ୬୩୨ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କରିଥିଲେ । ତାହାଙ୍କ ଧର୍ମାବଲମ୍ବୀମାନେ ମୁସଲମାନ ବା ମୁସଲିମ୍ ନାମରେ ପରିଚିତ । ପ୍ରଥମେ ମୁସଲମାନ ବଣିକମାନେ ସମୁଦ୍ରପଥରେ ଆଗମନ ଦ୍ୱାରା ଭାରତର ମାଲାବାର ଉପକୂଳରେ ବାଣିଜ୍ୟ ବ୍ୟବସାୟ କରୁଥିଲେ । ସେମାନେ ଇସଲାମ୍ ଧର୍ମ ପ୍ରଚାର ପାଇଁ ଉଦ୍ୟମ କରିଥିଲେ । ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କରିବା ହେଉଛି ଇସଲାମ୍ ଧର୍ମର ମୂଳମନ୍ତ୍ର । ତେଣୁ ମାଲାବାର୍ ଅଞ୍ଚଳର କୌଣସି କୌଣସି ହିନ୍ଦୁ ସେହି ନୂତନ ଧର୍ମ ପ୍ରତି ଆକୃଷ୍ଟ ହୋଇ-

ଥିଲେ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ଆରମ୍ଭକାଳରେ ଆରବ ମୁସଲମାନ ଆକ୍ରମଣକାରୀ ମହମ୍ମଦ ବିନ୍ କାସିମ୍ ଭାରତର ସିନ୍ଧୁ ଅଞ୍ଚଳ ଆକ୍ରମଣ କରିଥିଲେ । ସେ ଏ ଦେଶର ମନ୍ଦିର ଦେଖି ସେଗୁଡ଼ିକୁ ଖ୍ରୀଷ୍ଟିଆନ୍‌ମାନଙ୍କର ଗୀର୍ଜା, ଇହୁଦୀମାନଙ୍କର ସିନାଗଗ୍ ଓ ପାର୍ସୀମାନଙ୍କର ଅଗ୍ନି-ଉପାସନା ଗୃହ ସହିତ ତୁଳନା କରିଥିଲେ । ଆରବ ମୁସଲମାନମାନେ ଭାରତୀୟ ସଂସ୍କୃତି ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇଥିଲେ । ସେମାନେ ଏକଥା ମଧ୍ୟ ଜାଣିଥିଲେ ଯେ ଇସଲାମ୍ ଧର୍ମର ମୂଳମନ୍ତ୍ର 'ଏକେଶ୍ୱରବାଦ୍' ଅତି ପୁରାତନ କାଳରୁ ହିନ୍ଦୁ ଧର୍ମବିଶ୍ୱାସ ମଧ୍ୟରେ ବଦ୍ଧମୂଳ ହୋଇ ରହିଛି ।

ଦିଲ୍ଲୀଠାରେ ମୁସଲମାନ ସାମ୍ରାଜ୍ୟ ସ୍ଥାପିତ ହେଲାପରେ କ୍ରମେ କ୍ରମେ ଏ ଦେଶରେ ଇସଲାମ୍ ଧର୍ମ ପ୍ରସାରଲାଭ କଲା । ପ୍ରଥମେ ପ୍ରଥମେ ହିନ୍ଦୁମାନେ ଇସଲାମ୍ ଧର୍ମ ପ୍ରତି ଓ ମୁସଲମାନମାନେ ହିନ୍ଦୁଧର୍ମ ପ୍ରତି ବିଦ୍ୱେଷ ପୋଷଣ କରିଥିଲେ । ମୁସଲମାନମାନେ ହିନ୍ଦୁମାନଙ୍କର ବହୁ ଦେବଦେବୀରେ ବିଶ୍ୱାସଥିବା ଦେଖି ଅସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ଯଥା ସମୟରେ ସେମାନେ ହିନ୍ଦୁଧର୍ମର ସାରତତ୍ତ୍ୱ ମଧ୍ୟରୁ ଜାଣିପାରିଲେ ଯେ "ଏକମ୍ ସଦ୍ ବିପ୍ରା ବହୁଧା ବଦନ୍ତି", ଅର୍ଥାତ୍, ଯାହା ଏକ ତାହା ଋଷିମାନଙ୍କ ଦ୍ୱାରା ବହୁ ନାମରେ ନାମିତ ହୋଇଛି । ସତ୍ୟ ହେଉଛି ଏକ ଓ ଶାଶ୍ୱତ । ସେହି ଶାଶ୍ୱତ ସତ୍ୟ ବହୁ ରୂପରେ ପ୍ରକାଶିତ ହୋଇଥାଏ । ସମ୍ରାଟ୍ ଆକବରଙ୍କ ରାଜତ୍ୱକାଳରେ ମୁସଲମାନ ଐତିହାସିକ ଆବୁଲ ଫାଜଲ ହିନ୍ଦୁମାନଙ୍କ ମୂର୍ତ୍ତିପୂଜା ସମ୍ପର୍କରେ ଲେଖିଥିଲେ, "ସେମାନେ, ପ୍ରତ୍ୟେକେ ଏବଂ ସମସ୍ତେ, ଈଶ୍ୱରଙ୍କ ଏକତ୍ୱ ଉପରେ ବିଶ୍ୱାସ ରଖନ୍ତି ଏବଂ ପ୍ରସ୍ତର ବା କାଷ୍ଠ ନିର୍ମିତ ମୂର୍ତ୍ତି ପ୍ରତି ସେମାନଙ୍କର ଯେଉଁ ଭକ୍ତି, ତାହାକୁ ଅଜ୍ଞମାନେ ପୌତ୍ତଳିକତା ବୋଲି କହିଲେ ମଧ୍ୟ, ଯଥାର୍ଥଭାବେ ତାହା ଠିକ୍ ନୁହେଁ । ···ମୂର୍ତ୍ତି ମଧ୍ୟରେ ମନ ଓ ଚିନ୍ତା ନିବେଶ ପୂର୍ବକ ସେମାନେ ସେହି ଏକମାତ୍ର ପରମେଶ୍ୱରଙ୍କୁ ଅପରିହାର୍ଯ୍ୟ ବୋଲି ପ୍ରୟୋଜନ କରିଥାନ୍ତି ।"

ମଧ୍ୟଯୁଗର ଭକ୍ତି ଆନ୍ଦୋଳନବେଳେ ହିନ୍ଦୁ ଓ ମୁସଲମାନମାନେ ଉଭୟ ଧର୍ମର ମହତ୍ତ୍ୱ ପ୍ରତି ଆକୃଷ୍ଟ ହୋଇଥିଲେ । ମୁସଲମାନ ପଣ୍ଡିତମାନେ ହିନ୍ଦୁ-ମାନଙ୍କର ମୂର୍ତ୍ତିପୂଜା ମଧ୍ୟରେ ଗଭୀର ଈଶ୍ୱର ଭକ୍ତି ଓ ମାନବୀୟ ପ୍ରେମର ଆଭାସ ପାଇଥିଲେ । ସୁଫୀ ସାଧୁମାନେ ହିନ୍ଦୁମାନଙ୍କର 'ଅହଂ ବ୍ରହ୍ମାସ୍ମି' ଦର୍ଶନରେ ମୁଗ୍ଧ ହୋଇ ପ୍ରତ୍ୟେକ ମନୁଷ୍ୟ ପ୍ରାଣରେ ଈଶ୍ୱରଙ୍କ ସତ୍ତା ପ୍ରତି ଗୁରୁତ୍ୱ

ଦେଇଥିଲେ । ହିନ୍ଦୁଧର୍ମର ପାରମ୍ପର୍ଯ୍ୟକୁ ବୋଲି ବୁଝିପାରି ସମ୍ରାଟ୍ ଆକବର ସର୍ବଧର୍ମ ସମନ୍ୱୟ ପ୍ରତି ଧ୍ୟାନ ଦେଇଥିଲେ । ତାହାଙ୍କ ରାଜତ୍ୱକାଳରେ ଧର୍ମଗତ ବିଦ୍ୱେଷ ପରିବର୍ତ୍ତେ ଧର୍ମୀୟ ସହନଶୀଳତା ସମାଜକୁ ପ୍ରଭାବିତ କରିଥିଲା । ଶେଷରେ, ହିନ୍ଦୁ ସମ୍ପ୍ରଦାୟ ମଧ୍ୟରେ କେତେକ ସ୍ଥାନରେ 'ସତ୍ୟପୀର' ପୂଜା ପ୍ରଚଳିତ ହେଲା ।

ମଧ୍ୟଯୁଗ ପରେ ଯେତେବେଳେ ଇଉରୋପୀୟମାନେ ଆଧୁନିକ ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାକୁ ଲାଗିଲେ, ସେତେବେଳେ ସେହି ନୂତନ ଧର୍ମର ମହତ୍ତ୍ୱ ପ୍ରତି ଆଗ୍ରହ ପ୍ରକାଶ ପାଇଥିଲା । ଖ୍ରୀଷ୍ଟ ଓ ହିନ୍ଦୁଧର୍ମର ନୈତିକ ଆଦର୍ଶ ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ଦେଖିବାକୁ ମିଳିଲା । ଏପରିକି, ହିନ୍ଦୁ ଚିନ୍ତାଶୀଳ ବ୍ୟକ୍ତିମାନେ ଯୀଶୁଙ୍କର ପବିତ୍ର ବାଣୀ ମଧ୍ୟରେ ଉପନିଷଦ ଓ ବୌଦ୍ଧ ଧର୍ମର ମତିମାନ ପ୍ରତିଧ୍ୱନିତ ହୋଇପାରିଛି ବୋଲି ସନ୍ତୋଷଲାଭ କରିଥିଲେ ।

ଏହିପରି ଭାବରେ, ଭାରତୀୟ ସଂସ୍କୃତି ମଧ୍ୟରେ ସର୍ବଧର୍ମ ପ୍ରୀତି ଆତ୍ମପ୍ରକାଶ କରିଥିଲା । ବ୍ରିଟିଶ୍‌ଯୁଗର ଅନ୍ତିମକାଳରେ, ଇଂରେଜମାନେ ରାଜନୀତି କ୍ଷେତ୍ରରେ ଧର୍ମବିଦ୍ୱେଷ ଓ ଭେଦନୀତି ପ୍ରୟୋଗ ଦ୍ୱାରା ଭାରତକୁ ବିଖଣ୍ଡିତ କରିଦେଲେ । ଧର୍ମ ନାମରେ ପାକିସ୍ତାନ ନାମକ ଏକ ମୁସଲମାନ ରାଷ୍ଟ୍ର ଗଠିତ ହେଲା । ତଥାପି, ଅଗଣିତ ମୁସଲମାନ ଭାରତ ମାଟିରେ ରହିଲେ । ଆଜି ଭାରତୀୟ ମୁସଲମାନମାନଙ୍କ ସଂଖ୍ୟା ପାକିସ୍ତାନର ମୁସଲମାନ ସଂଖ୍ୟା ଅପେକ୍ଷା ଅନେକ ବେଶି । ଯଥାର୍ଥଭାବେ ମହାତ୍ମା ଗାନ୍ଧି କହିଥିଲେ, "ହିନ୍ଦୁ, ମୁସଲମାନ, ପାର୍ସୀ, ଖ୍ରୀଷ୍ଟିଆନ୍, ଜୈନ ଅଥବା ଶିଖ୍, ଯେଉଁ ସମସ୍ତେ ଏ ଦେଶରେ ଜନ୍ମଲାଭ କରିଛନ୍ତି ଏବଂ ଏ ଦେଶକୁ ମାତୃଭୂମି ରୂପେ ଭାବିଛନ୍ତି, ସେମାନେ ସମସ୍ତେ ହେଉଛନ୍ତି ସମାନ ଭାବରେ ଭାରତର ସନ୍ତତି ଏବଂ ସେଥିପାଇଁ ରକ୍ତଗତ ସମ୍ପର୍କଠାରୁ ଅଧିକତର ସୁଦୃଢ଼ ବନ୍ଧନ ଦ୍ୱାରା ପରସ୍ପରର ଭ୍ରାତା ରୂପେ ଆବଦ୍ଧ ।"

**ଭାଷାଗତ ପାର୍ଥକ୍ୟ ମଧ୍ୟରେ ଐକ୍ୟ**

ଭାରତ ହେଉଛି ଅନେକ ଭାଷାର ଦେଶ । ତାହାସତ୍ତ୍ୱେ, ଇତିହାସର ସବୁ ଯୁଗରେ ଦେଶବାସୀଙ୍କ ମଧ୍ୟରେ ଭାବ ଆଦାନପ୍ରଦାନ ପାଇଁ ଗୋଟିଏ ପ୍ରକାର ଭାଷାଗତ ଏକତା ଦେଖିବାକୁ ମିଳୁଛି ।

ଭାରତର ପ୍ରଧାନ ଭାଷାମାନ ଚାରିଗୋଟି ମୁଖ୍ୟ ଭାଷା-ଉତ୍ସରୁ ଉତ୍ପତ୍ତି ଲାଭ କରିଛି । ସେଗୁଡ଼ିକ ହେଲା; ଆର୍ଯ୍ୟ, ଦ୍ରାବିଡ଼ୀୟ, ମଙ୍ଗୋଲୀୟ ଏବଂ ଅଷ୍ଟ୍ରିକ୍ ।

ଆଦିମକାଳରେ ଭାରତୀୟ ଆଦିବାସୀମାନେ ମୂଳଆଡ଼େ ଅଷ୍ଟ୍ରିକ୍ ଭାଷା ବ୍ୟବହାର କରୁଥିଲେ । ଅଧୁନା, ଶତକଡ଼ା ମାତ୍ର ଦୁଇଜଣ ବ୍ୟକ୍ତି ସେହି ଭାଷାରେ କଥାବାର୍ତ୍ତା କରନ୍ତି । କାରଣ, କାଳକ୍ରମେ ସେମାନେ ନିଜ ଭାଷା ତ୍ୟାଗ କରି ଆର୍ଯ୍ୟ ଓ ଦ୍ରାବିଡ଼ ଭାଷାମାନ ଗ୍ରହଣ କରି ନେଇଥିଲେ । ତେଣେ, ଆର୍ଯ୍ୟଭାଷା ସଂସ୍କୃତ ମଧ୍ୟରେ ଅନେକ ଅଷ୍ଟ୍ରିକ୍ ଶବ୍ଦ ସ୍ଥାନ ପାଇଥିଲା । ମଙ୍ଗୋଲୀୟ ଭାଷା-ଭାଷୀମାନେ ମଧ୍ୟ ନିଜ ଭାଷା ତ୍ୟାଗ କରି ଆସାମୀୟ ଓ ହିନ୍ଦୁସ୍ଥାନୀ ଭାଷା ଗ୍ରହଣ କରି ନେଇଥିଲେ ।

ହିନ୍ଦୁ ସଭ୍ୟତାର ବିସ୍ତାରଲାଭ ସଙ୍ଗେ ଏବଂ ବ୍ରାହ୍ମଣ୍ୟ, ବୌଦ୍ଧ ଓ ଜୈନ ଧର୍ମର ପ୍ରସାରଲାଭ ଫଳରେ ଉଭୟ ଆର୍ଯ୍ୟ ଭାଷା ଓ ଦ୍ରାବିଡ଼ ଭାଷା ମାଧ୍ୟମରେ ଜନସାଧାରଣ ନିଜ ଦେଶର ସଂସ୍କୃତି ଓ ଧର୍ମ ଉପଭୋଗ କରିଥିଲେ । ଧର୍ମଗତ କାରଣ ପାଇଁ ଭାରତର ସବୁ ସ୍ଥାନର ଶିକ୍ଷିତ ବ୍ୟକ୍ତିମାନେ ସଂସ୍କୃତ ଭାଷା ଶିକ୍ଷା କରିଥିଲେ । କୁହାଯାଏ ଯେ, ଧର୍ମ ହିଁ ଥିଲା ଆର୍ଯ୍ୟ ଭାଷା ପ୍ରସାରର ପ୍ରଧାନ କାରଣ । ଭାଷାତତ୍ତ୍ୱବିଦ୍ ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ ମତରେ "ସଂସ୍କୃତ ଭାଷା ଭାରତୀୟ ସଭ୍ୟତାର ମହାନ୍ ମାଧ୍ୟମ ରୂପେ ପ୍ରକାଶଲାଭ କରିଥିଲା । ...ଆର୍ଯ୍ୟ ବା ଦ୍ରାବିଡ଼ୀୟ ବା ଅଷ୍ଟ୍ରିକ୍ ବା ମଙ୍ଗୋଲୀୟ ଭାଷାଭାଷୀ ମନୁଷ୍ୟଗଣି ଯେଉଁମାନେ ଯେତେବେଳେ ସୁମହାନ୍ ଭାରତୀୟ ହିନ୍ଦୁ ସଭ୍ୟତାର ପରିସରଭୁକ୍ତ ହୋଇଥିଲେ, ସେତେବେଳେ ସେହି ସମସ୍ତ ମନୁଷ୍ୟଗୋଷ୍ଠୀ ନିକଟରୁ ସଂସ୍କୃତ ଭାଷା ପ୍ରଭୂତ ସମ୍ମାନଲାଭ କରିଥିଲା ।"

ଜନସାଧାରଣଙ୍କ ବ୍ୟବହାର ପାଇଁ ସଂସ୍କୃତ ଭାଷା ସରଳ ରୂପ ଧାରଣ କରି 'ପ୍ରାକୃତ' ଭାଷା ରୂପେ ପ୍ରଚଳିତ ହୋଇଥିଲା । ପ୍ରାକୃତ ଭାଷା ମଧ୍ୟରୁ ଅଧିକତର ସରଳ ଆକାରରେ 'ପାଲି' ଭାଷାର ଉତ୍ପତ୍ତି ଘଟିଥିଲା । କାଳକ୍ରମେ, ଆଧୁନିକ ଭାଷାଗୁଡ଼ିକର ଉତ୍ପତ୍ତି ହେଲା । ଏସବୁ ମଧ୍ୟରେ ହିନ୍ଦୀ, ବଙ୍ଗଳା, ମାରାଠୀ, ଗୁଜରାଟୀ, ଓଡ଼ିଆ, ଆସାମୀୟ, ରାଜସ୍ଥାନୀ, ପଞ୍ଜାବୀ, ସିନ୍ଧୀ, ପାସ୍ତୋ ଏବଂ କାଶ୍ମୀରୀ ଭାଷା ପ୍ରଧାନ । ଏହି ସମସ୍ତ ଭାରତୀୟ ଭାଷା ସଂସ୍କୃତ ଭାଷାର ଦୁହିତା ରୂପେ ପରିଚିତ । ତେଣୁ, ସଂସ୍କୃତ ଭାଷା ଆଧୁନିକ ଭାରତୀୟ ଭାଷା-ମାନଙ୍କର ଜନନୀଭାବେ ସମ୍ମାନଲାଭ କରିଛି ।

ମୁସଲମାନ ରାଜତ୍ୱକାଳରେ ପାର୍ସୀଭାଷା ରାଜକୀୟ ଭାଷା ରୂପେ ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହୋଇଥିଲା । ଶେଷରେ, ବ୍ରିଟିଶ୍ ଯୁଗରେ,

ଇଂରାଜୀ ଭାଷା ରାଜଭାଷା ତଥା ଶିକ୍ଷିତ ସଂପ୍ରଦାୟର ଭାଷା ରୂପେ ସାରା ଭାରତରେ ପ୍ରସାରଲାଭ କଲା ।

ଏହିପରି ଭାବରେ ବହୁ ଭାଷାର ଦେଶ ହେଲେମଧ୍ୟ ଭାରତବର୍ଷ ସବୁକାଳରେ ଭାଷାଗତ ଏକତା ରକ୍ଷା ପାଇଁ ସମର୍ଥ ହୋଇଆସିଛି ।

**ସାମାଜିକ ପାର୍ଥକ୍ୟ ମଧ୍ୟରେ ଐକ୍ୟ**

ଭାରତୀୟ ସମାଜ ଜାତି ଉପଜାତି ଦ୍ୱାରା ବହୁଧାବିଭକ୍ତ । ଜାତିପ୍ରଥା ଗୋଟିଏ ଅସ୍ୱାଭାବିକ ରୀତି ଭାବେ ପରିଗଣିତ ହୋଇଆସିଛି । ଏହି ପ୍ରଥା ସାମାଜିକ ଐକ୍ୟ ମୂଳରେ କୁଠାରାଘାତ କରିଥିଲା ।

ସର୍ବପ୍ରଥମେ ସମାଜରେ ଚାରିଗୋଟି ମୁଖ୍ୟ କର୍ମକୁ କେନ୍ଦ୍ର କରି ଜାତି-ପ୍ରଥାର ଉତ୍ପତ୍ତି ଘଟିଥିଲା । ଯେଉଁମାନେ ପୂଜା ଆରାଧନା ପାଇଁ ଜ୍ଞାନ ଓ ଅଭିଜ୍ଞତା ଲାଭ କଲେ ସେମାନେ ହେଲେ ବ୍ରାହ୍ମଣ । ଯୁଦ୍ଧ ଓ ଶାସନ କାର୍ଯ୍ୟ ପାଇଁ ସୁନିପୁଣ ବ୍ୟକ୍ତିମାନେ କ୍ଷତ୍ରିୟ ରୂପେ ବିବେଚିତ ହେଲେ । କୃଷି ଓ ବାଣିଜ୍ୟ ବ୍ୟବସାୟରେ ଲିପ୍ତ ବ୍ୟକ୍ତିମାନଙ୍କୁ ବୈଶ୍ୟ ବୋଲି କୁହାଗଲା । ଅନ୍ୟ ଯେଉଁମାନେ ବିଭିନ୍ନ ପ୍ରକାର ସେବାକାର୍ଯ୍ୟରେ ନିଜ ନିଜକୁ ନିୟୋଗ କଲେ ସେମାନେ ଶୂଦ୍ର ନାମରେ କଥିତ ହେଲେ । ପ୍ରାଚୀନକାଳରେ ଏହି ଚାରି ବିଭାଗ କଠୋର ଆକାର ଧାରଣ କରି ନ ଥିଲା । ଇଚ୍ଛା ଅନୁସାରେ ଲୋକେ ନିଜ ନିଜ କର୍ମ ବାଛି ନେଉଥିଲେ । କର୍ମବିଭାଗ ସତ୍ତ୍ୱେ ଜାତି ଜାତି ମଧ୍ୟରେ ବୈବାହିକ ସମ୍ପର୍କ ରହିଥାଏ । କିନ୍ତୁ ପରବର୍ତ୍ତୀକାଳରେ, ଜାତିପ୍ରଥା ଜନ୍ମଗତ ହୋଇଗଲା । ପୁଣି ପ୍ରତ୍ୟେକ ମୁଖ୍ୟ ଜାତି ମଧ୍ୟରେ ଉପଜାତିଗୁଡ଼ିକର ସୃଷ୍ଟି ଘଟିଲା । ପରିଶେଷରେ, ଜାତି ବିଭାଗର କୁଫଳସ୍ୱରୂପ ଅସ୍ପୃଶ୍ୟତାରୂପକ କଳଙ୍କିତ ପ୍ରଥା ପ୍ରଚଳିତ ହେଲା ।

ଏହି ପ୍ରକାର କୁପ୍ରଥା ସତ୍ତ୍ୱେ, ହିନ୍ଦୁମାନଙ୍କର ସାମାଜିକ ଐକ୍ୟ ଓ ସଦ୍‌ଭାବ ପାଇଁ ମୌଳିକ କାରଣମାନ ରହିଥାଏ । ପ୍ରଥମତଃ, ଗୌତମ ବୁଦ୍ଧଙ୍କ ପାଖରୁ ଆରମ୍ଭ କରି ମହାତ୍ମା ଗାନ୍ଧିଙ୍କ ପର୍ଯ୍ୟନ୍ତ ଭାରତର ଅଧିକାଂଶ ମହାପୁରୁଷ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଇତିହାସର ପ୍ରାୟ ପ୍ରତ୍ୟେକ ବିଶିଷ୍ଟ ଯୁଗରେ ସଂସ୍କାରମୂଳକ ଆନ୍ଦୋଳନ ଦ୍ୱାରା ଜାତିପ୍ରଥାର କଠୋରତା ହ୍ରାସ ପାଇଥିଲା । ଦ୍ୱିତୀୟତଃ, ସାମୂହିକଭାବେ ଭାରତୀୟମାନେ ବିଭିନ୍ନ ଜାତି ଉପଜାତିର କର୍ମଗତ ଉପକାରିତା ଉପଭୋଗ କରିବା ଦ୍ୱାରା ପରସ୍ପର ମଧ୍ୟରେ

ସଦ୍‌ଭାବ ଆଦାନପ୍ରଦାନ ଲାଗି ରହିଥିଲା । ତଥାକଥିତ ଅସ୍ପୃଶ୍ୟମାନଙ୍କର ମଧ୍ୟ ସାମାଜିକ ଆବଶ୍ୟକତା ରହିଥାଏ । ଅର୍ଥନୈତିକ ଦୃଷ୍ଟିରୁ ପ୍ରତ୍ୟେକ ଜାତି ଅନ୍ୟ ଜାତିଗୁଡ଼ିକ ଉପରେ ନିର୍ଭର କରିବାକୁ ବାଧ୍ୟ ଥିଲେ । ତଦ୍ୱାରା, ଧନୀ ନିର୍ଦ୍ଧନ କିମ୍ବା ଉଚ୍ଚ ନୀଚ ନିର୍ବିଶେଷରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଚିରସ୍ଥାୟୀ ସହଯୋଗ ଦେଖିବାକୁ ମିଳିଥିଲା । ସାମାଜିକ ସହନଶୀଳତା ବିନା ଅର୍ଥନୈତିକ ଜୀବନଯାପନ ପ୍ରାୟତଃ ଅସମ୍ଭବ ଥିଲା । ତେଣୁ ଜାତିପ୍ରଥା ସତ୍ତ୍ୱେ ଭାରତବାସୀମାନେ ମାନବିକ ସୌହାର୍ଦ୍ଦ୍ୟ ଉପରେ ଗୁରୁତ୍ୱ ଦେଇଥିଲେ । ତୃତୀୟତଃ, ପ୍ରତ୍ୟେକ ସାର୍ବଜନୀନ ପୂଜାପଦ୍ଧତି ଓ ପର୍ବପର୍ବାଣିରେ ବ୍ରାହ୍ମଣ ତଥା ଶୂଦ୍ର ସମସ୍ତଙ୍କର ସମାନ ଆବଶ୍ୟକତା ରହିଥାଏ । ଧର୍ମ ଉତ୍ସବମାନ ସମାଜର ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ତଦ୍ୱାରା ବିଭିନ୍ନ ଜାତି ମଧ୍ୟରେ ଧର୍ମୀୟ ସହଯୋଗ ଓ ସାମାଜିକ ଭ୍ରାତୃଭାବ ବିକଶିତ ହେଉଥାଏ । ଚତୁର୍ଥତଃ, ଶୂଦ୍ର ଜାତିରେ ଜନ୍ମିଥିବା ସାଧୁ-ପୁରୁଷମାନେ ଉଚ୍ଚଜାତିର ନରନାରୀଙ୍କ ନିକଟରୁ ଯଥାଯୋଗ୍ୟ ଭକ୍ତି ପାଉଥିଲେ । ସେମାନେ ସବୁ ଜାତିର ଲୋକଙ୍କୁ ଶିଷ୍ୟ ରୂପେ ଗ୍ରହଣ କରୁଥିଲେ । ପଞ୍ଚମତଃ, ଆଧୁନିକ ଯୁଗରେ ନୂତନ ଶିକ୍ଷା ଓ ଜ୍ଞାନବିଜ୍ଞାନ ପ୍ରସାରିତ ହେବା ସଙ୍ଗେ ଯେଉଁ ଜାତୀୟ ଜାଗରଣ ଦେଖାଦେଲା ତଦ୍ୱାରା ଜାତିପ୍ରଥା ଶିଥିଳ ହୋଇ ଆସିଲା । ସମାଜ ସଂସ୍କାରକମାନେ ଜାତିପ୍ରଥା ମୂଳରେ କୁଠାରାଘାତ ପୂର୍ବକ ଜାତୀୟ ଐକ୍ୟ ସପକ୍ଷରେ ସଚେତନତା ସୃଷ୍ଟି କରିଥିଲେ ।

### ସାଂସ୍କୃତିକ ପାର୍ଥକ୍ୟ ମଧ୍ୟରେ ଐକ୍ୟ

ବିଭିନ୍ନ ଅଞ୍ଚଳର ପୃଥକ୍ ପୃଥକ୍ ସାଂସ୍କୃତିକ ବୈଶିଷ୍ଟ୍ୟ ପାଇଁ ଭାରତୀୟ ସଂସ୍କୃତି ବିଳକ୍ଷଣ ହୋଇଛି । ସୁବିଶାଳ ଭାରତର ପ୍ରାୟ ପ୍ରତ୍ୟେକ ଅଞ୍ଚଳର ନିଜସ୍ୱ ସଂସ୍କୃତି ରହିଛି । କଳା, ସ୍ଥାପତ୍ୟ, ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ ଇତ୍ୟାଦି କ୍ଷେତ୍ରରେ ପ୍ରତ୍ୟେକ ଅଞ୍ଚଳର କୃତିତ୍ୱ ଦେଖିବାକୁ ମିଳେ । ସେହି ସବୁର ସମାବେଶ ପାଇଁ ଭାରତୀୟ ସଂସ୍କୃତି ବହୁମୁଖୀ, ବିବିଧରୂପୀ ଓ ବୈଚିତ୍ର୍ୟମୟ ଆକାର ଧାରଣ କରିଛି ।

ଯେକୌଣସି ସ୍ଥାନର ଆଞ୍ଚଳିକ ସଂସ୍କୃତି ସୀମାବଦ୍ଧ ନ ରହି ଅନ୍ୟ ସ୍ଥାନମାନଙ୍କୁ ପ୍ରବାହିତ ହୋଇ ଆସିଛି । କଳା, ସାହିତ୍ୟ ଓ ସଙ୍ଗୀତର ପ୍ରଭାବ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବ୍ୟାପି ଯାଇଛି । ଯେକୌଣସି ସ୍ଥାନର ସଙ୍ଗୀତ ଓ

ନୃତ୍ୟ ଦେଶର ସବୁ ସ୍ଥାନରେ ଆଦରଲାଭ କରିଛି । ମଣିପୁରୀ, ଓଡ଼ିଶୀ, ଭରତନାଟ୍ୟମ୍, କଥକ ଓ କଥାକାଳି ପ୍ରଭୃତି ନୃତ୍ୟଶୈଳୀ ଆଞ୍ଚଳିକ ହୋଇଥିଲେ ମଧ୍ଯ ଦେଶର ଗୁଣିବୃନ୍ଦଙ୍କରେ ସେସବୁ ସମାନଭାବେ ଆଦୃତ ହୋଇଛି । ସେହିପରି, ଅଜନ୍ତା ପ୍ରଭୃତି ସ୍ଥାନର ଚିତ୍ରକଳା ସର୍ବଭାରତୀୟ କଳାର ନିଦର୍ଶନ ରୂପେ ପରିଗଣିତ ହୋଇଛି ।

ସ୍ଥାପତ୍ୟ ହେଉଛି ଭାରତୀୟ ସଂସ୍କୃତିର ଏକ ପ୍ରଧାନ ଅଂଶ । ବିଭିନ୍ନ ଅଞ୍ଚଳର ସ୍ଥାପତ୍ୟ ଶୈଳୀ ନିଜସ୍ୱ ଭାବରେ ଆତ୍ମପ୍ରକାଶ କରିଥିଲା । ଦେଶର ଅଗଣିତ ମନ୍ଦିରରାଜି ସ୍ଥାନୀୟ ଶୈଳୀ ଦୃଷ୍ଟିରୁ ନାମିତ ହୋଇଥିଲା, ଯଥା: କଳିଙ୍ଗ, ଚାଲୁକ୍ୟ, ପଲ୍ଲବ, ଚୋଳ, ରାଷ୍ଟ୍ରକୂଟ ଓ କଳଚୁରି ମନ୍ଦିର ଗୋଷ୍ଠୀ, ଇତ୍ୟାଦି । ପ୍ରତ୍ୟେକ ଶୈଳୀ ଅନ୍ୟ ଶୈଳୀଠାରୁ ପୃଥକ୍ ହେଲେମଧ୍ଯ, ସବୁ ଶୈଳୀର ମନ୍ଦିରରାଜି ଏକକ ଉଦ୍ଦେଶ୍ୟ ପାଇଁ ନିର୍ମିତ ହୋଇଥିଲା । ଅର୍ଥାତ୍, ସବୁ ମନ୍ଦିର ହେଉଛି ଦେବଦେବୀଙ୍କ ଆରାଧନା ସ୍ଥଳ । ଗଠନ ଢଙ୍ଗର ପାର୍ଥକ୍ୟ ସତ୍ତ୍ୱେ ଧର୍ମୀୟ ଦୃଷ୍ଟିରୁ ସମସ୍ତ ମନ୍ଦିର ସାଂସ୍କୃତିକ ଐକ୍ୟ ପ୍ରତିପାଦନ କରିଥାଏ । ମଧ୍ୟଯୁଗୀୟ ମୁସଲମାନ ରାଜତ୍ୱକାଳରେ ହିନ୍ଦୁ ଓ ମୁସଲମାନ ଶିଳ୍ପୀ ଓ ସ୍ଥପତିମାନେ ମିଳିତଭାବରେ ନାନାବିଧ ସୌଧ, ମସଜିଦ୍, ମିନାର ଓ ସମାଧିସ୍ତମ୍ଭ ନିର୍ମାଣ କରିଥିଲେ । ସେହି ମିଳିତ ଉଦ୍ୟମ ମଧ୍ୟରୁ ଭାରତ-ଇସଲାମୀୟ ବା Indo-Islamic ସ୍ଥାପତ୍ୟ କଳା ଆତ୍ମପ୍ରକାଶ କରିଥିଲା ।

ଦେଶର ସବୁ ସ୍ଥାନର ସୃଜନୀଶକ୍ତି ଦ୍ୱାରା ଭାରତୀୟ ସଂସ୍କୃତି ପରିପୁଷ୍ଟ ହୋଇଛି । ବୈଚିତ୍ର୍ୟ ମଧ୍ୟରେ ସେହି ସଂସ୍କୃତି ବିଶେଷତ୍ୱ ଲାଭ କରିଛି । ବିଭିନ୍ନତା ଓ ବିବିଧତା ଦ୍ୱାରା ଏହାର ବିପୁଳତା ପ୍ରକାଶ ପାଇଛି । ପାର୍ଥକ୍ୟ ସତ୍ତ୍ୱେ ଭାବଗତ ସମନ୍ୱୟ ଭାରତୀୟ ସଂସ୍କୃତିକୁ ଏକତା ପ୍ରଦାନ କରିଛି । ଯଥାର୍ଥଭାବେ କୁହାଯାଏ ଯେ, ଭାରତବର୍ଷ ହେଉଛି ପାର୍ଥକ୍ୟ ମଧ୍ୟରେ ଐକ୍ୟର ଦେଶ ଏବଂ ଐକ୍ୟ ମଧ୍ୟରେ ପାର୍ଥକ୍ୟର ଦେଶ । ଭିନ୍ନତା ସତ୍ତ୍ୱେ ଅଭିନ୍ନତା ଏବଂ ପାର୍ଥକ୍ୟ ସତ୍ତ୍ୱେ ଏକତ୍ୱ ଓ ଅଭେଦତ୍ୱ ହେଉଛି ଶାଶ୍ୱତ ଭାରତର ଚିରନ୍ତନ ପରିଚିତି-ପତ୍ର ।

ଭାରତୀୟ ସଂସ୍କୃତିର ମହତ୍ତ୍ୱ ବିଷୟରେ ଏ ଯୁଗର ପ୍ରଖ୍ୟାତ ଦାର୍ଶନିକ ଋଷି ଶ୍ରୀ ଅରବିନ୍ଦ ଲେଖିଛନ୍ତି, "ଯେତେବେଳେ ଆମେ ଭାରତର ଅତୀତ ଉପରେ ଦୃଷ୍ଟିପାତ କରୁ, ଆମ ମନକୁ ଆସିଥାଏ ଭାରତର ବିସ୍ମୟଜନକ ଜୀବନୀଶକ୍ତି,

ପ୍ରାଣର ଅକ୍ଷୟ ପରାକ୍ରମ ଓ ଆନନ୍ଦ, କଳ୍ପନାତୀତ ବହୁ ପ୍ରସୂ ସୃଜନକ୍ଷମତା । ଅନ୍ତତଃପକ୍ଷେ ତିନିସହସ୍ର ବର୍ଷ ଯାବତ୍—ବାସ୍ତବପକ୍ଷେ ଏହାଠାରୁ ଅଧିକତର ଦୀର୍ଘକାଳ ପାଇଁ—ଭାରତ ସୃଜନ କରି ଚାଲିଛି ପ୍ରଚୁରଭାବେ ଓ ଅବିରାମ ଭାବେ, ଅପର୍ଯ୍ୟାପ୍ତ ଭାବେ, ଅସରନ୍ତି ବହୁବିଧ ଭାବେ, ଗଣରାଜ୍ୟ ଏବଂ ରାଜ୍ୟ ଓ ସାମ୍ରାଜ୍ୟ, ଦର୍ଶନ ଓ ବିଶ୍ୱର ଉତ୍ପତ୍ତି ତତ୍ତ୍ୱ; ବିଜ୍ଞାନ ଏବଂ ଧର୍ମ ମତ, କଳା ଓ କବିତା, ଏବଂ ସମସ୍ତ ପ୍ରକାରର ସ୍ଥାପତ୍ୟ କୀର୍ତ୍ତି, ପ୍ରାସାଦ ଓ ମନ୍ଦିର ଓ ସାଧାରଣ ପୂର୍ତ୍ତ କାର୍ଯ୍ୟ, ସଂପ୍ରଦାୟ, ସମାଜ ଓ ଧର୍ମୀୟ ସଂଘ, ଆଇନ୍ ବ୍ୟବସ୍ଥା ଓ ଆଚାର ବିଧି; ପ୍ରକୃତି ବିଜ୍ଞାନ, ମନୋବିଜ୍ଞାନ, ଯୋଗ ପଦ୍ଧତି, ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥା, ଆଧ୍ୟାତ୍ମିକ ଜ୍ଞାନ ଓ ପାର୍ଥିବ ବିଦ୍ୟା, ବାଣିଜ୍ୟ, ଶ୍ରମ ଶିଳ୍ପ, ସୂକ୍ଷ୍ମ କାରିଗରୀ—ସୀମାହୀନ ଏହି ତାଲିକା ଏବଂ ପ୍ରତ୍ୟେକ ବିଷୟରେ ରହିଛି ଅତ୍ୟଧିକ କର୍ମ ତତ୍ପରତା । ଭାରତ ସୃଜନ କରି ଚାଲିଛି ଏବଂ ତୃପ୍ତ ହେଉ ନାହିଁ କିମ୍ବା କ୍ଲାନ୍ତ ହେଉ ନାହିଁ; ସୃଜନର ଶେଷ ହେବ ନାହିଁ, ବିଶ୍ରାମ ପାଇଁ ତାହାର ହୁଏତ ଆବଶ୍ୟକତା ନାହିଁ, ନିଶ୍ଚେଷ୍ଟ ଓ ଅନୁତପ୍ତ ହେବା ପାଇଁ ସମୟ ନାହିଁ । ନିଜର ସୀମା ବାହାରେ ମଧ୍ୟ ଭାରତ ପ୍ରସାର ଲାଭ କରିଛି; ତାହାର ତରୀ ମହାସାଗର ଅତିକ୍ରମ କରିଛି ଏବଂ ତାହାର ପ୍ରୟୋଜନାତିରିକ୍ତ ସୁନ୍ଦର ସମ୍ପଦ ଜୁଡ଼ା ଓ ମିଶର ଓ ରୋମ ପର୍ଯ୍ୟନ୍ତ ବହି ଯାଇଛି; ତାହାର ଉପନିବେଶମାନଙ୍କରୁ ଜ୍ଞାନଶାସ୍ତ୍ର ଓ ମହାକାବ୍ୟ ଓ ଧର୍ମମତ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରସାରିତ ହୋଇଛି; ଭାରତର ପଦଚିହ୍ନ ମେସୋପଟେମିଆ ବାଲୁକାରାଶି ଉପରେ ଦେଖାଯାଇଛି; ତାହାର ଧର୍ମ ଚୀନ୍ ଓ ଜାପାନ ଅଧିକାରପୂର୍ବକ ପଶ୍ଚିମରେ ପାଲେଷ୍ଟାଇନ୍ ଓ ଆଲେକ୍‌ଜାଣ୍ଡ୍ରିୟା ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଛି, ଏବଂ ଉପନିଷଦର ଭାଷା ତଥା ବୌଦ୍ଧମାନଙ୍କର ପ୍ରବଚନ ଖ୍ରୀଷ୍ଟଙ୍କ ଅଧରରେ ପ୍ରତିଧ୍ୱନିତ ହୋଇଛି ।

## ଦ୍ୱିତୀୟ ଅଧ୍ୟାୟ

# ଭାରତୀୟ ସଂସ୍କୃତିର ମୂଳଭିତ୍ତି : ହରପ୍ପା ସଂସ୍କୃତି ଓ ବୈଦିକ ସଂସ୍କୃତି

**( Foundations of Indian Culture : Harappa Culture, Vedic Culture )**

**ଭାରତୀୟ ସଂସ୍କୃତିର ଅରୁଣୋଦୟ : ସିନ୍ଧୁ ସଭ୍ୟତା ବା ହରପ୍ପା ସଂସ୍କୃତି**

ବିଶ୍ୱର ପ୍ରାଚୀନତମ ସଭ୍ୟତାମାନଙ୍କ ମଧ୍ୟରେ ଭାରତୀୟ ସଭ୍ୟତା ଅନ୍ୟତମ ଅଟେ । ବିଂଶ ଶତାବ୍ଦୀର ଆରମ୍ଭକାଳ ପର୍ଯ୍ୟନ୍ତ ବିଶ୍ୱାସ କରାଯାଉଥିଲା ଯେ ସର୍ବପ୍ରଥମେ ଭାରତରେ ଆଦିମ ମନୁଷ୍ୟମାନେ ବାସ କରୁଥିଲେ । ତାପରେ ଆର୍ଯ୍ୟମାନେ ଭାରତରେ ପ୍ରବେଶ କଲେ ଓ ଏକ ଉନ୍ନତ ସଭ୍ୟତାର ମୂଳଭିତ୍ତି ସ୍ଥାପନ କଲେ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଭାରତରେ ଅନ୍ୟ କୌଣସି ପ୍ରାଚୀନ ସଭ୍ୟତା ନ ଥିଲା ବୋଲି କୁହାଯାଉଥିଲା ।

କିନ୍ତୁ, ୧୯୨୨ ମସିହାରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଭାରତର ପଞ୍ଜାବ ଓ ସିନ୍ଧୁ ଅଞ୍ଚଳରେ ଖନନ କାର୍ଯ୍ୟ ଦ୍ୱାରା ଦୁଇଟି ପ୍ରାଚୀନ ନଗରର ଧ୍ୱଂସାବଶେଷ ଆବିଷ୍କାର କଲେ । ତଦ୍ଦ୍ୱାରା ପ୍ରମାଣିତ ହେଲା ଯେ, ଏ ଦେଶର ପ୍ରାଚୀନ ସଭ୍ୟତା ପୃଥିବୀର ଅନ୍ୟ ଦୁଇଗୋଟି ସୁପ୍ରାଚୀନ ସଭ୍ୟତାର ସମସାମୟିକ ଥିଲା । ସେ ଦୁଇ ସଭ୍ୟତା ଥିଲା ନୀଳନଦୀ ଉପତ୍ୟକାର ମିଶରୀୟ ସଭ୍ୟତା ଓ ଇଉଫ୍ରେଟିସ୍-ଟାଇଗ୍ରିସ୍ ନଦୀ ଉପତ୍ୟକାର ମେସୋପଟେମୀୟ ସଭ୍ୟତା । ଆର୍ଯ୍ୟ ସଭ୍ୟତାର ଅନେକ ପୂର୍ବରୁ ଭାରତରେ ମଧ୍ୟ ସେହିପରି ଗୋଟିଏ ମହାନ୍ ସଭ୍ୟତା ବିକାଶଲାଭ କରିଥିଲା ।

ଆବିଷ୍କୃତ ନଗର ଦୁଇଟିର ନାମ ହେଉଛି ହରପ୍ପା ଓ ମହେଞ୍ଜୋ-ଦାରୋ । ପଞ୍ଜାବର ମଣ୍ଟଗୋମାରୀ ଜିଲ୍ଲାରେ ରାବୀ ବା ଇରାବତୀ ନଦୀ କୂଳରେ ହରପ୍ପା ନଗରୀ ଅବସ୍ଥିତ ଥିଲା । ମହେଞ୍ଜୋଦାରୋ ନଗରୀ ସିନ୍ଧୁ ପ୍ରଦେଶର

ଲର୍କାନା ଜିଲ୍ଲାରେ ସିନ୍ଧୁନଦୀ କୂଳରେ ଅବସ୍ଥିତ ଥାଏ । 'ମହେଞ୍ଜୋଦାରୋ' ଶବ୍ଦର ଅର୍ଥ ହେଉଛି 'ମୃତର ପାହାଡ଼' (Mound of the Dead) ।

ହରପ୍ପା ଓ ମହେଞ୍ଜୋଦାରୋ ସିନ୍ଧୁ ଉପତ୍ୟକାରେ ଅବସ୍ଥିତ ଥିବାରୁ ସାଧାରଣତଃ ସେହି ସଭ୍ୟତାକୁ ସିନ୍ଧୁ-ସଭ୍ୟତା ବା ସିନ୍ଧୁ ଉପତ୍ୟକାର ସଭ୍ୟତା ବୋଲି କୁହାଯାଏ । କିନ୍ତୁ ସେହି ସଭ୍ୟତା ସିନ୍ଧୁ ଉପତ୍ୟକା ବାହାରେ ବହୁଦୂର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ତେଣୁ ତାହାକୁ ସିନ୍ଧୁ-ସଭ୍ୟତା କହିବା ଠିକ୍ ହେବ ନାହିଁ ବୋଲି କେହି କେହି ମତ ଦେଲେ । ସେଥିପାଇଁ, ଯେହେତୁ ସେହି ପ୍ରାଚୀନ ସଭ୍ୟତାର ନିଦର୍ଶନମାନ ପ୍ରଥମେ ହରପ୍ପାଠାରେ ଆବିଷ୍କୃତ ହୋଇଥିଲା, ତାହାର ନାମ ହରପ୍ପା ସଭ୍ୟତା ବା ହରପ୍ପା ସଂସ୍କୃତି ବୋଲି କେହି କେହି କହିଥାନ୍ତି । ନାମ ଯାହାହେଲେ ମଧ୍ୟ ସେହି ପ୍ରାଗୈତିହାସିକ ମହାନ୍ ସଭ୍ୟତା ଥିଲା ଭାରତୀୟ ସଂସ୍କୃତିର ମୂଳଭିତ୍ତି ସ୍ୱରୂପ ।

ହରପ୍ପା-ମହେଞ୍ଜୋଦାରୋ ନିର୍ମାଣବେଳକୁ ସିନ୍ଧୁ ସଭ୍ୟତା ଉନ୍ନତ ଆକାର ଧାରଣ କରି ସାରିଥିଲା । ଖ୍ରୀଷ୍ଟପୂର୍ବ ୩୦୦୦ ବେଳକୁ ସେହି ସଭ୍ୟତା ପୂର୍ଣ୍ଣତାଲାଭ କରି ସାରିଥିଲା ବୋଲି ପ୍ରତ୍ନତତ୍ତ୍ୱବିଦ୍‌ମାନେ ମତ ଦିଅନ୍ତି ।

**ହରପ୍ପା ସଂସ୍କୃତିର ନିର୍ମାତା**

ଆର୍ଯ୍ୟମାନଙ୍କ ଭାରତ ଆଗମନ ପୂର୍ବରୁ ହରପ୍ପା ସଂସ୍କୃତିର ବିସ୍ତାର ଲାଭ ଘଟିଥିଲା । ତେଣୁ ସେହି ସଭ୍ୟତା ଥିଲା ପ୍ରାଗ୍-ଆର୍ଯ୍ୟ ଓ ପ୍ରାଗ୍-ବୈଦିକ ସଭ୍ୟତା । ସୁସଭ୍ୟ ଦ୍ରାବିଡ଼ ଜାତି ସେହି ସଂସ୍କୃତିର ନିର୍ମାତା ଥିଲେ ବୋଲି ବିଶ୍ୱାସ କରାଯାଏ । ଆର୍ଯ୍ୟ ସଂସ୍କୃତି ସହିତ ସେହି ପ୍ରାଚୀନ ସଂସ୍କୃତିର କେତେ-ଗୁଡ଼ିଏ ମୌଳିକ ପାର୍ଥକ୍ୟ ଥିବାର ଦେଖାଯାଏ । ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ମୁଖ୍ୟ ରୂପେ କାର୍ଯ୍ୟ କରିଥିବା ସାର୍ ଜନ୍ ମାର୍ଶାଲ* ସେହି ପାର୍ଥକ୍ୟ ବିଷୟ ପ୍ରମାଣ କରିବାକୁ ଯାଇ ନିମ୍ନ ପ୍ରକାର ମତ ଦେଇଥିଲେ ।

ବୈଦିକ ଆର୍ଯ୍ୟମାନେ ଗାଈ ପୂଜା କରୁଥିଲେ, ଅଥଚ ସିନ୍ଧୁ ଅଧିବାସୀ ବା ଦ୍ରାବିଡ଼ମାନେ ବୃଷ ପୂଜା କରୁଥିଲେ । ଆର୍ଯ୍ୟମାନେ ପ୍ରକୃତି ଉପାସକ ଥିଲେ, ଯାଗଯଜ୍ଞ କରୁଥିଲେ ଓ ମୁଖ୍ୟତଃ ଦେବ-ଉପାସକ ଥିଲେ । କିନ୍ତୁ,

* Sir John Marshall, Director General of Archaeology from 1902 to 1928.

ସିନ୍ଧୁ ସଭ୍ୟତାର ମନୁଷ୍ୟମାନେ ମାତୃଶକ୍ତିର ଆରାଧନା କରୁଥିଲେ ଓ ବୃକ୍ଷ, ଜୀବଜନ୍ତୁ ଓ ସର୍ପ ପୂଜା କରୁଥିଲେ । ଆର୍ଯ୍ୟମାନେ ପ୍ରାକୃତିକ ପରିବେଶ ମଧ୍ୟରେ ସରଳ ଗ୍ରାମ୍ୟଜୀବନ ଯାପନ କରୁଥିଲେ । ଅଥଚ, ହରପ୍ପା-ମହେଞ୍ଜୋଦାରୋର ଅଧିବାସୀମାନେ ବଡ଼ ବଡ଼ ନଗର ନିର୍ମାଣ କରିଥିଲେ ଓ ଉନ୍ନତ ନାଗରିକ ଜୀବନ ଭୋଗ କରିଥିଲେ । ଆର୍ଯ୍ୟମାନେ ବାଣିଜ୍ୟ ବ୍ୟବସାୟ ପ୍ରତି ବିଶେଷ ଆଗ୍ରହୀ ନ ଥିଲେ ଏବଂ ସମୁଦ୍ରଯାତ୍ରାର ପକ୍ଷପାତୀ ନ ଥିଲେ । କିନ୍ତୁ ହରପ୍ପା-ମହେଞ୍ଜୋଦାରୋର ଲୋକମାନେ ପ୍ରାଚୀନ ସୁମେର ଓ ବ୍ୟାବିଲୋନ୍ ପ୍ରଭୃତି ବିଦେଶ ସହିତ ବାଣିଜ୍ୟରତ ଥିଲେ ଏବଂ ସମୁଦ୍ରଯାତ୍ରା ଭଲ ପାଉଥିଲେ । ଆର୍ଯ୍ୟମାନଙ୍କର ପ୍ରାଚୀନ ଲିଖନ ପଦ୍ଧତି ଦେଖିବାକୁ ମିଳେ ନାହିଁ । କିନ୍ତୁ ସିନ୍ଧୁ ଉପତ୍ୟକାରୁ ଆବିଷ୍କୃତ ସିଲ୍ ମୋହରଗୁଡ଼ିକରେ ପ୍ରାକ୍-ଆର୍ଯ୍ୟ ଲିଖନ ପ୍ରଣାଳୀର ପରିଚୟ ମିଳେ । ଆର୍ଯ୍ୟମାନେ ଅଶ୍ୱ ବ୍ୟବହାର କରୁଥିଲେ । କିନ୍ତୁ ସିନ୍ଧୁ ଉପତ୍ୟକାର ଲୋକେ ଅଶ୍ୱ ବ୍ୟବହାର କରୁଥିବାର ପ୍ରମାଣ ମିଳି ନାହିଁ ।

ଏହି ପ୍ରକାର ପାର୍ଥକ୍ୟ ଦୃଷ୍ଟିରୁ ହରପ୍ପା ସଂସ୍କୃତି ଆର୍ଯ୍ୟମାନଙ୍କର ନ ହୋଇ ଦ୍ରାବିଡ଼ମାନଙ୍କର ସଂସ୍କୃତି ବୋଲି ବିଶ୍ୱାସ କରାଯାଇଛି । କାଳକ୍ରମେ ଦ୍ରାବିଡ଼ ଓ ଆର୍ଯ୍ୟ ସଂସ୍କୃତିର ମିଶ୍ରଣ ଘଟିଥିଲା । ତଥାପି, ସେ ଦୁଇ ଜାତି ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟମାନ ସେମାନଙ୍କ ଆଦି ସଂସ୍କୃତିରୁ ଜଣା ପଡ଼ିଥାଏ ।

**ହରପ୍ପା ସଂସ୍କୃତିର ବିଶେଷତ୍ୱ : ନଗର ନିର୍ମାଣ, ଉନ୍ନତ ନାଗରିକ ଜୀବନ**

ହରପ୍ପା ଓ ମହେଞ୍ଜୋଦାରୋର ଧ୍ୱଂସାବଶେଷ ପ୍ରମାଣ କରିଛି ଯେ ଭାରତର ସର୍ବପ୍ରାଚୀନ ସଭ୍ୟତା ଅତ୍ୟନ୍ତ ଉନ୍ନତ ଥିଲା । ଖ୍ରୀଷ୍ଟଜନ୍ମର ତିନିହଜାର ବର୍ଷ ପୂର୍ବେ ସେହି ସଭ୍ୟତାର ଅଧିବାସୀମାନେ ଯେପରି ସୁନ୍ଦର ସୁନ୍ଦର ନଗରମାନ ନିର୍ମାଣ କରିଥିଲେ ତାହାଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ । ନିର୍ମାଣ କାର୍ଯ୍ୟ ଦୃଷ୍ଟିରୁ ପ୍ରାଚୀନ ମିଶର ଓ ମେସୋପଟେମିଆର ଅଧିବାସୀମାନେ ଯେପରି କୃତିତ୍ୱ ହାସଲ କରିଥିଲେ, ସିନ୍ଧୁ ସଭ୍ୟତାର ଅଧିବାସୀମାନେ ମଧ୍ୟ ସେହିପରି କୃତିତ୍ୱ ଦେଖାଇଥିଲେ । ବିଶେଷଜ୍ଞମାନେ କହନ୍ତି, ନାଗରିକ ଜୀବନ-ଯାପନ ଦୃଷ୍ଟିରୁ ସିନ୍ଧୁ ଅଧିବାସୀମାନେ ବରଂ ଅଧିକତର ଉନ୍ନତ ଥିଲେ । କାରଣ, ମିଶର ଓ ମେସୋପଟେମିଆରେ ରାଜାମାନଙ୍କ ପାଇଁ ସୁବିଶାଳ ସମାଧି,

ପ୍ରାସାଦ ଓ ଦେବଦେବୀଙ୍କ ପାଇଁ ବିଶାଳ ମନ୍ଦିର ନିର୍ମିତ ହୋଇଥିଲବେଳେ, ହରପ୍ପା ଓ ମହେଞ୍ଜୋଦାରୋ ନଗର ଦ୍ୱୟରେ ସେଠାକାର ନାଗରିକମାନଙ୍କର ବସବାସ ଓ ସମବେତ ଆନନ୍ଦ ପାଇଁ ଉତ୍ତମ ବାସଗୃହମାନ ଓ ସର୍ବସାଧାରଣ ଲୋକଙ୍କ ଆନନ୍ଦ ପାଇଁ ପ୍ରକାଣ୍ଡ ସ୍ନାନାଗାର ଇତ୍ୟାଦି ନିର୍ମାଣ କରାଯାଇଥିଲା ।

**ନଗର ଯୋଜନା : ଗୃହ, ରାସ୍ତାଘାଟ ଓ ପୟଃ ପ୍ରଣାଳୀ**

ସିନ୍ଧୁବାସୀମାନେ ସୁଚିନ୍ତିତ ପରିକଳ୍ପନା ଦ୍ୱାରା ନଗର ନିର୍ମାଣ କରିଥିଲେ । ଗଠନଶୈଳୀ ଦୃଷ୍ଟିରୁ ହରପ୍ପା ଓ ମହେଞ୍ଜୋଦାରୋ ନଗର ଦୁଇଟି ଅନେକାଂଶରେ ସମାନ । ଚାରିପାଖରେ ସୁଦୃଢ଼ ଓ ଉଚ୍ଚ ପ୍ରାଚୀର ଦ୍ୱାରା ନଗର ଦୁଇଟିକୁ ସୁରକ୍ଷିତ ଆକାର ଦିଆଯାଇଥିଲା । ପ୍ରାଚୀର ଦେହରେ ଉଚ୍ଚ ଗୁମ୍ବଜମାନ ରହିଥିଲା । ଗଠନ ଯୋଜନା ଦୃଷ୍ଟିରୁ ନଗର ଦୁଇଟି ଆଧୁନିକ ନଗର ପରି ଜଣାଯାଏ । କାରଣ, ଦୀର୍ଘ ଓ ପ୍ରଶସ୍ତ ରାଜପଥ, ସାଧାରଣ ରାସ୍ତା ଏବଂ ସଂକୀର୍ଣ୍ଣ ଗଳି ପ୍ରଗଳିଗୁଡ଼ିକ ସରଳରେଖା ଭାବରେ ପୂର୍ବରୁ ପଶ୍ଚିମ ଓ ଉତ୍ତରରୁ ଦକ୍ଷିଣ ଦିଗକୁ ନିର୍ମାଣ କରାଯାଇଥିଲା । ରାସ୍ତାଗୁଡ଼ିକ ପୁଣି ପରସ୍ପରକୁ ସିଧା ଭାବରେ ଅତିକ୍ରମ କରିଥାଏ । ରାସ୍ତାର ଦୁଇପାଖରେ ପାଣି ଓ ଆବର୍ଜନା ନିଷ୍କାସନ ପାଇଁ ନର୍ଦ୍ଦମା ବା ଜଳ ନିର୍ଗମନ ନାଳୀ ରହିଥିଲା । କୌଣସି କୌଣସି ରାସ୍ତାର ଓସାର ୩୪ ଫୁଟ ବା ୧୦ ମିଟର ଥିଲା ।

ରାସ୍ତାଗୁଡ଼ିକର ଉଭୟପାର୍ଶ୍ୱରେ ବାସଗୃହମାନ ଦଣ୍ଡାୟମାନ ଥାଏ । ହରପ୍ପା ନଗରର ବାସଗୃହଗୁଡ଼ିକ ବିଶେଷଭାବେ କ୍ଷୟପ୍ରାପ୍ତ ହୋଇଯାଇଛି । ମହେଞ୍ଜୋଦାରୋର ଘରଗୁଡ଼ିକ ଈଷତ୍ ଭଲ ଅବସ୍ଥାରେ ରହିଛି । ଦୁଇ ନଗରର ଗୃହଗୁଡ଼ିକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ, ଯଥା: ବାସଗୃହ ଓ ସାଧାରଣ ଅନୁଷ୍ଠାନ । ଏହାଛଡ଼ା, ମହେଞ୍ଜୋଦାରୋ ନଗରରେ ଥିବା ଗୋଟିଏ 'ବୃହତ୍ ସ୍ନାନାଗାର' ସର୍ବସାଧାରଣଙ୍କ ବ୍ୟବହାର ପାଇଁ ନିର୍ମିତ ହୋଇଥିଲା ବୋଲି କୁହାଯାଏ ।

ଶକ୍ତ ପୋଡ଼ାଇଟାରେ ଘରଗୁଡ଼ିକ ତିଆରି ହୋଇଥିଲା । କାରୁକାର୍ଯ୍ୟ ପରିବର୍ତ୍ତେ ଗୃହଗୁଡ଼ିକୁ ସୁଖପ୍ରଦ କରାଯାଇଥିଲା । ପ୍ରତ୍ୟେକ ଗୃହ ମଧ୍ୟରେ ଆଲୋକ ଓ ପବନ ସଞ୍ଚାଳନ ପାଇଁ ଦ୍ୱାରପଥମାନ ପ୍ରଶସ୍ତ ଥିଲା । ପ୍ରାୟ ପ୍ରତ୍ୟେକ ଗୃହରେ ଗୋଟିଏ ସ୍ନାନଘର ଓ ତାହା ନିକଟରେ ଗୋଟିଏ କୂପ ରହିଥିବା

ଦେଖାଯାଏ । ଘରଗୁଡ଼ିକ ପ୍ରାୟତଃ ଦୁଇତାଲି ବିଶିଷ୍ଟ ଥିଲି ଓ ତଳ ତାଲିରୁ ଉପର ତାଲିକୁ ଯିବା ପାଇଁ ପାହାଚମାନ ରହିଥାଏ । ପ୍ରତ୍ୟେକ ଗୃହ ମଧ୍ୟରେ ମୁକ୍ତ ଅଗଣା ଥିଲା । ପ୍ରତ୍ୟେକ ଗୃହରୁ ଜଳ ନିଷ୍କାସନ ପାଇଁ ସଂକୀର୍ଣ୍ଣ ନାଳ ଥାଏ । ସେହି ନାଳକୁ ରାସ୍ତାପାଖର ନାଳ ସହିତ ଯୋଗ କରାଯାଇଥାଏ । ରାସ୍ତା ପାର୍ଶ୍ୱବର୍ତ୍ତୀ ନାଳ ପୁଣି ମୁଖ୍ୟ ନିଷ୍କାସନ ନାଳ ସହିତ ଲାଗିଥାଏ । ସବୁ ପ୍ରକାର ଜଳ ନିଷ୍କାସନ ନାଳଗୁଡ଼ିକ ଖୋଲାଭାବରେ ନ ରଖି ଆବୃତ ରଖା-ଯାଇଥିଲା । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ମହେଞ୍ଜୋଦାରୋର ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା ପୃଥିବୀର ଅନ୍ୟ କୌଣସି ପ୍ରାଗୈତିହାସିକ ନଗରୀରେ ଦେଖିବାକୁ ମିଳି ନାହିଁ । ଏପରକି, ଆଧୁନିକ ଯୁଗରେ ମଧ୍ୟ ବହୁଜାଗାରେ ସେପରି ବ୍ୟବସ୍ଥା ଦେଖାଯାଏ ନାହିଁ ।

**ସାଧାରଣ ଅନୁଷ୍ଠାନ : ଶସ୍ୟାଗାର ଓ ସ୍ନାନାଗାର**

ମହେଞ୍ଜୋଦାରୋ ନଗରର କେତେଗୋଟି ବୃହଦାକାର ଗୃହ ସର୍ବ-ସାଧାରଣ ଅନୁଷ୍ଠାନ ଥିଲା ବୋଲି ବିଶ୍ୱାସ କରାଯାଇଛି । ସେହିପରି ହରପ୍ପାରେ ଥିବା କେତେଗୁଡ଼ିଏ ବଡ଼ ବଡ଼ ଘରକୁ ନଗରର ଶସ୍ୟଭଣ୍ଡାର ବା ଶସ୍ୟାଗାର ବୋଲି ଅନୁମାନ କରା ହୋଇଛି । ପ୍ରତ୍ୟେକଟି ଶସ୍ୟାଗାର ୫୦ ଫୁଟ ବା ୧୫ ମିଟର ଲମ୍ବ ଓ ୨୦ ଫୁଟ ବା ୬ ମିଟର ଓସାର ବିଶିଷ୍ଟ ଥିଲା । ଦୁଇଟି ଧାଡ଼ିରେ ସମାନ୍ତରାଳ ଭାବରେ ଛଅଟି ଲେଖାଏଁ ସେହିପରି ଘର ଦଣ୍ଡାୟମାନ ରହିଥାଏ । ମହେଞ୍ଜୋଦାରୋରେ ମଧ୍ୟ ସେହିପରି ଶସ୍ୟାଗାର ଦେଖିବାକୁ ମିଳିଛି । ଏହି ଶସ୍ୟଭଣ୍ଡାରଗୁଡ଼ିକ ସେ କାଳର ଆର୍ଥିକ ସମୃଦ୍ଧିର ପରିଚୟ ଦିଏ ।

ମହେଞ୍ଜୋଦାରୋର 'ସୁବୃହତ୍ ସ୍ନାନାଗାର' ସେହି ପ୍ରାଚୀନଯୁଗୀୟ ନାଗରିକ ଜୀବନର ଏକ ବିଶିଷ୍ଟ ନିଦର୍ଶନ ରୂପେ ବିବେଚିତ ହୋଇଛି । ସେହି ସ୍ନାନାଗାରଟିକୁ ଧାରଣ କରିଥିବା ସମଗ୍ର ଗୃହଟିର ଆୟତନ ହେଉଛି ଦୈର୍ଘ୍ୟରେ ୧୮୦ ଫୁଟ ବା ୫୫ ମିଟର ଏବଂ ପ୍ରସ୍ଥରେ ୧୦୮ ଫୁଟ ବା ୩୩ ମିଟର । କେବଳ ସ୍ନାନାଗାରଟିର ଦୈର୍ଘ୍ୟ ଉତ୍ତରରୁ ଦକ୍ଷିଣକୁ ୩୯ ଫୁଟ ବା ୧୨ ମିଟର ଓ ପ୍ରସ୍ଥ ୨୩ ଫୁଟ ବା ୭ ମିଟର ଅଟେ । ଗଭୀରତାରେ ତାହା ୮ ଫୁଟ ବା ୨୪ ମିଟର । ସ୍ନାନାଗାର ଭିତରକୁ ଯିବା ପାଇଁ ଉଭୟ ଦିଗରୁ ପାହାଚମାନ ରହିଥାଏ । ଗୃହଟିର କାନ୍ଥ ଓ ତଳ ଭୂମି ଅତି ସୁଦୃଢ଼ ଥିଲା । ସେଥିରୁ ପାଣି

ବାହାର କରିଦେବା ପାଇଁ ବ୍ୟବସ୍ଥା ଥିଲା । ନିକଟରେ ଥିବା ଗୋଟିଏ ପ୍ରକାଣ୍ଡ କୂପ ମଧ୍ୟରୁ ସ୍ନାନାଗାର ମଧ୍ୟକୁ ପାଣି ଅଣାଯାଉଥାଏ । ସ୍ନାନାଗାର ଚାରିପାଖରେ କୋଠରିମାନ ଦେଖିବାକୁ ମିଳେ । ଗୋଟିଏ ପାଖରେ ଆଠଗୋଟି ଛୋଟ ଛୋଟ ସ୍ନାନଗୃହ ରହିଛି । ସ୍ନାନାଗାରର ଚାରିପାଖରେ ବାରଣ୍ଡା ଓ ବାରଣ୍ଡା ପଛକୁ ତିନିପାଖରେ ବସିବା ପାଇଁ ଗ୍ୟାଲେରୀ ବା ଉନ୍ମୋଚ ଉପବେଶନ ମଞ୍ଚ ରହିଥାଏ । ମହେଞ୍ଜୋଦାରୋରୁ ଆବିଷ୍କୃତ ହୋଇଥିବା ସମସ୍ତ ଗୃହ ମଧ୍ୟରେ ସେଠାକାର 'ସୁବୃହତ୍ ସ୍ନାନାଗାର'ଟି ସର୍ବାଧିକ ଆକର୍ଷଣୀୟ ବୋଲି ପ୍ରତ୍ନତତ୍ତ୍ୱବିତ୍ ସାର୍ ଜନ୍ ମାର୍ଶାଲ ମତ ଦେଇଥିଲେ ।



ମହେଞ୍ଜୋଦାରୋର ସୁବୃହତ୍ ସ୍ନାନାଗାର

ହରପ୍ପା-ମହେଞ୍ଜୋଦାରୋର ସୁଉଚ୍ଚ ପ୍ରାଚୀର, ସୁଦୀର୍ଘ ରାଜପଥ, ସୁନ୍ଦର ବାସଗୃହ, ଆବୃତ ପୟଃ-ପ୍ରଣାଳୀ, ବୃହଦାକାର ଶସ୍ୟଭଣ୍ଡାର, ସର୍ବସାଧାରଣ ଅନୁଷ୍ଠାନ ଓ ସର୍ବୋପରି 'ସୁବୃହତ୍ ସ୍ନାନାଗାର' ଇତ୍ୟାଦି ସେ ସମୟର ନାଗରିକ ସଂସ୍କୃତିର ପରିଚୟ ଦିଏ । ବିଶେଷଜ୍ଞମାନେ ମତ ଦେଇଛନ୍ତି ଯେ, ନୀଳ ଉପତ୍ୟକାରେ ସୁବିଶାଳ ପିରାମିଡ୍ ନିର୍ମାଣ ପାଇଁ କିମ୍ବା ବ୍ୟାବିଲୋନ୍ ଓ ନିନେଭ ପ୍ରଭୃତି ନଗରୀରେ ରାଜପ୍ରାସାଦ ଓ ମନ୍ଦିର ନିର୍ମାଣ ପାଇଁ ସେଠାକାର ମନୁଷ୍ୟମାନଙ୍କର ଯେଉଁ ଶକ୍ତି ବ୍ୟୟ ହୋଇଥିଲା ତଦ୍ଦ୍ୱାରା ସାଧାରଣ ନାଗରିକ-

ମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧି ପାଇ ନ ଥିଲା । ଅଧିକନ୍ତୁ ସେସବୁ ସ୍ଥାନର ସାଧାରଣ ଲୋକେ ମାଟିକୁଡ଼ିଆ ମଧ୍ୟରେ ଜୀବନଯାପନ କରୁଥିଲେ । ଅପର



ମହେଞ୍ଜୋଦାରୋର ପୟଃପ୍ରଣାଳୀ

ପକ୍ଷରେ, ସିନ୍ଧୁ ଉପତ୍ୟକାର ଅଧିବାସୀମାନେ ନିଜର ସୁଖମୟ ଜୀବନଯାପନ ପାଇଁ ସେମାନଙ୍କ ନିର୍ମାଣ ଶକ୍ତି ପ୍ରୟୋଗ କରିଥିଲେ । ଏହା ଥିଲା ହରପ୍ପା ସଂସ୍କୃତିର ବିଶେଷତ୍ୱ ।

## ହରପ୍ପା ସଂସ୍କୃତି : ସାମାଜିକ ଜୀବନ

ଶିକ୍ଷା—ହରପ୍ପା ଓ ମହେଞ୍ଜୋଦାରୋରୁ ଆବିଷ୍କୃତ ହୋଇଥିବା ନାନା ପ୍ରକାର ପଦାର୍ଥ ମଧ୍ୟରୁ ସେ କାଳର ସାମାଜିକ ଅବସ୍ଥାର ଆଭାସ ମିଳେ । ଶିକ୍ଷାଦୃଷ୍ଟିରୁ, ସେଠାକାର ଅଧିବାସୀମାନେ ଉନ୍ନତ ଥିଲେ । ପ୍ରାଚୀନ ମିଶରୀୟ ଓ ସୁମେରୀୟମାନଙ୍କ ପରି ସେମାନେ ଗୋଟିଏ ପ୍ରକାର ଲିଖନ ପ୍ରଣାଳୀ ଜାଣିଥିଲେ । ସେ ଦୁଇ ନଗରୀରୁ ମିଳିଥିବା ବହୁସଂଖ୍ୟକ ସୀଲ୍ ମୋହର ଉପରେ ସେକାଳର ଲିପିମାନ ଦେଖିବାକୁ ମିଳେ । ଦୁଃଖର ବିଷୟ, ସେହି ଲିପିର ପାଠୋଦ୍ଧାର ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ । ଅନୁମାନ କରାଯାଏ ଯେ ପ୍ରତ୍ୟେକଟି ଲିପି ଗୋଟିଏ ଶବ୍ଦ ବା କୌଣସି ବସ୍ତୁର ଅର୍ଥ ବହନ କରୁଥାଏ । ପ୍ରାୟ

୩୯୬ ଗୋଟି ସେହିପରି ସଂକେତର ଚାଲନା କରାଯାଇଛି । ଲିପିଗୁଡ଼ିକର ପାଠୋଦ୍ଧାର ହୋଇପାରିଲେ ହରପ୍ପା ସଂସ୍କୃତିର ପ୍ରକୃତ ପରିଚୟ ମିଳିପାରିବ ।



ସିନ୍ଧୁ ସଭ୍ୟତାର ସୀଲ୍ ମୋହର ମନୁଷ୍ୟ ମୂର୍ତ୍ତି

ସେ ଯାହାହେଉ, ଲିପିଗୁଡ଼ିକ ପ୍ରମାଣ କରିଥାଏ ଯେ, ସେହି ସୁଦୂର ଅତୀତରେ ଶିକ୍ଷା ପ୍ରତି ସମାଜରେ ଯଥେଷ୍ଟ ଆଦର ଥିଲା ।

ବିଳାସ-ବ୍ୟସନ—ଧ୍ୱଂସାବଶେଷ ମଧ୍ୟରୁ ଅନେକ ପ୍ରକାର ଅଳଙ୍କାର ମିଳିଛି । ସେଥିରୁ ଜଣାଯାଏ ଯେ, ସେକାଳର ନରନାରୀମାନେ ବିଳାସପ୍ରିୟ ଥିଲେ । ଧନୀ ଗରିବ ନିର୍ବିଶେଷରେ ସେମାନେ ଅଳଙ୍କାର ବ୍ୟବହାର କରୁଥିଲେ । ଧନୀମାନେ ସୁନା, ରୁପା, ହାତୀଦାନ୍ତ ଓ ମୂଲ୍ୟବାନ ପଥରରେ ତିଆରି ହୋଇଥିବା ଅଳଙ୍କାର ପିନ୍ଧୁଥିଲେ । ଦରିଦ୍ର ଲୋକେ ତମ୍ବା, ଅସ୍ଥି, ଶଙ୍ଖ ଓ ମୃତ୍ତିକା ନିର୍ମିତ

ଗହଣା ଦ୍ୱାରା ନିଜ ନିଜ ଦେହର ଶୋଭାବର୍ଦ୍ଧନ କରୁଥିଲେ । କଣ୍ଠହାର, ବାଜୁବନ୍ଧ, କାନ ଓ ନାକଫୁଲ ପ୍ରଭୃତି ଅଳଙ୍କାର. ନାରୀମାନେ ବ୍ୟବହାର



ସିନ୍ଧୁ ସଭ୍ୟତାର ଅଳଙ୍କାର

କରୁଥିଲେ । ପୁରୁଷମାନେ ମଧ୍ୟ କେତେ ପ୍ରକାର ଅଳଙ୍କାର ଭଲ ପାଉଥିଲେ । କାରୁକାର୍ଯ୍ୟ ଦୃଷ୍ଟିରୁ ଅଳଙ୍କାରଗୁଡ଼ିକ ଆକର୍ଷଣୀୟ ଥିଲା ।

ସିନ୍ଧୁ ଅଧିବାସୀମାନେ ମାର୍ଜିତ ରୁଚିସମ୍ପନ୍ନ ପୋଷାକ ପରିଚ୍ଛଦ ପରିଧାନ କରୁଥିଲେ । ବସ୍ତ୍ରବୟନ କାର୍ଯ୍ୟରେ ସେମାନେ ସୁନିପୁଣ ଥିଲେ । ତୂଳା ଓ ପଶମ, ଉଭୟରେ ସେମାନେ ସୁନ୍ଦର ସୁନ୍ଦର ପୋଷାକ ପ୍ରସ୍ତୁତ କରୁଥିଲେ । ସାଧାରଣତଃ, କଟିବନ୍ଧର ତଳ ଦେଶ ପାଇଁ ଖଣ୍ଡିଏ ବସ୍ତ୍ର ଓ ଉପରଭାଗ ପାଇଁ ଆଉ ଖଣ୍ଡିଏ ବସ୍ତ୍ର ବ୍ୟବହାର କରାଯାଉଥିଲା ।

**ବ୍ୟବହାର୍ଯ୍ୟ ସାମଗ୍ରୀ** — ହରପ୍ପା ଓ ମହେଞ୍ଜୋଦାରୋର ଅଧିବାସୀମାନେ ନାନା ପ୍ରକାର ଧାତୁଦ୍ରବ୍ୟର ବ୍ୟବହାର ଉତ୍ତମ ରୂପେ ଜାଣିଥିଲେ । ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥମାନ ବିବିଧ ଧାତୁରେ ନିର୍ମିତ ହେଉଥିଲା । ସୁନା, ରୁପା, ତମ୍ବା, ଟିଣ, ବ୍ରୋଞ୍ଜ ଓ ସୀସାର ବିଶେଷ ପ୍ରଚଳନ ଥିଲା । ଖାଦ୍ୟପେୟ ପାଇଁ ବାସନକୁସନ ତମ୍ବା ଓ ବ୍ରୋଞ୍ଜରେ ତିଆରି ହେଉଥାଏ । ତାହାଛଡ଼ା, ମାଟି ଓ ପଥରର ପାତ୍ର ବ୍ୟବହାର କରାଯାଉଥାଏ । ମାଟିପାତ୍ରଗୁଡ଼ିକ ସୁନ୍ଦର ରଙ୍ଗ ଦ୍ୱାରା ରଞ୍ଜିତ ଥାଏ । ଆଶ୍ଚର୍ଯ୍ୟର ବିଷୟ, ଧ୍ୱଂସାବଶେଷ ମଧ୍ୟରୁ କୌଣସି ପ୍ରକାର ଲୌହ ପଦାର୍ଥ ଆବିଷ୍କାର କରାଯାଇ ନାହିଁ ।

ନଗର ଦୁଇଟିର ବାସଗୃହଗୁଡ଼ିକ ଭିତରୁ ନାନା ପ୍ରକାର ଖେଳନା ମିଳିଛି । ପଶୁ ପକ୍ଷୀ ଓ ନର ନାରୀ ପ୍ରଭୃତିର କ୍ଷୁଦ୍ର କ୍ଷୁଦ୍ର ପ୍ରତିକୃତି ମାଟିରେ ତିଆରି କରି ସେଗୁଡ଼ିକ ଖେଳନା ରୂପେ ବ୍ୟବହାର କରାଯାଉଥିଲା ।

**କଳାପ୍ରିୟତା**—କଳାପ୍ରିୟତା ଥିଲା ହରପ୍ପା ସଂସ୍କୃତିର ଏକ ବିଶେଷତ୍ୱ । ବାହାରିଥିବା ମୂର୍ତ୍ତିଗୁଡ଼ିକରୁ ଜଣାଯାଏ ଯେ, ନୃତ୍ୟ ଥିଲା ସମାଜର ଏକ ପ୍ରିୟ ଆମୋଦ । ଲୋକଙ୍କ ପୋଷାକ ପରିଚ୍ଛଦରୁ ଜଣାଯାଏ ଯେ, ସେମାନେ ନିଜର ବେଶଭୂଷା ଆକର୍ଷଣୀୟ କରିବାକୁ ଭଲ ପାଉଥିଲେ । ସ୍ତ୍ରୀ ଓ ପୁରୁଷ ଉଭୟେ ପାନିଆ ବ୍ୟବହାର କରୁଥିଲେ ଓ ବିଭିନ୍ନ ଭାବରେ କେଶବିନ୍ୟାସ ଦ୍ୱାରା ସୌନ୍ଦର୍ଯ୍ୟ ବୃଦ୍ଧି କରିବା ଜାଣିଥିଲେ । ନାନାବିଧ କାରୁକାର୍ଯ୍ୟପୂର୍ଣ୍ଣ ଅଳଙ୍କାର, ଚିତ୍ରିତ ମୃତ୍ତିକା ପାତ୍ର, ବ୍ରୋଞ୍ଜରେ ନିର୍ମିତ ହୋଇଥିବା ନର୍ତ୍ତକୀ ମୂର୍ତ୍ତି ଓ ପ୍ରସ୍ତର ମୂର୍ତ୍ତି ଇତ୍ୟାଦିରୁ ଲୋକଙ୍କର କଳା କୌଶଳର ପ୍ରମାଣ ମିଳେ । ସୀଲ୍ ମୋହରଗୁଡ଼ିକ ଉପରେ ଖୋଦିତ ହୋଇଥିବା ଚିତ୍ର ଏବଂ ଜୀବଜନ୍ତୁମାନଙ୍କର ଆକୃତି ଅଙ୍କନ ମଧ୍ୟରେ ଶିଳ୍ପୀମାନେ ସେମାନଙ୍କ ବାସ୍ତବ ଦୃଷ୍ଟିଭଙ୍ଗିର ପରିଚୟ ଦେଉଥିଲେ ।

**ଅସ୍ତ୍ରଶସ୍ତ୍ର**—ଧ୍ୱଂସାବଶେଷ ମଧ୍ୟରୁ ତମ୍ବା ଓ ବ୍ରୋଞ୍ଜ ନିର୍ମିତ ଅସ୍ତ୍ରଶସ୍ତ୍ର ଓ ଯୁଦ୍ଧ ସାମଗ୍ରୀମାନ ମିଳିଛି । ଛୁରିକା, ବର୍ଚ୍ଛା, କୁଠାର ଓ ଧନୁଶର ବ୍ୟବହାର ସେ କାଳର ଲୋକମାନଙ୍କୁ ଜଣାଥିଲା । କିନ୍ତୁ, ତରବାରି ଓ ସାଞ୍ଜୁ ବ୍ୟବହାର ସେମାନଙ୍କୁ ଜଣା ଥିଲା କି ନାହିଁ, ତାହା କହିବା କଷ୍ଟକର ।

**ପରିଚ୍ଛନ୍ନତା**—ପରିଷ୍କାର ପରିଚ୍ଛନ୍ନତା ଥିଲା ସିନ୍ଧୁ ସମାଜର ଅନ୍ୟ ଏକ ଉଲ୍ଲେଖନୀୟ କୃତିତ୍ୱ । ବାସଗୃହ ଓ ରାସ୍ତାଘାଟ ଇତ୍ୟାଦିର ନିର୍ମାଣ କୌଶଳରୁ ତାହା ପ୍ରମାଣିତ ହୁଏ । ସ୍ନାନାଗାରଗୁଡ଼ିକରୁ ଜଣାଯାଏ ଯେ, ବ୍ୟକ୍ତିଗତ ଭାବରେ ଲୋକେ ନିଜ ନିଜ ଦେହକୁ ପରିଷ୍କାର ରଖିବା ପାଇଁ ବିଶେଷ ସଜାଗ ଥିଲେ ।

ସିନ୍ଧୁବାସୀମାନେ ସେମାନଙ୍କ ମୃତ ବ୍ୟକ୍ତିମାନଙ୍କୁ ଅଗ୍ନିରେ ଦାହ କରୁଥିଲେ ଏବଂ ସମାଧି ମଧ୍ୟ ଦେଉଥିଲେ ।

## ହରପ୍ପା ମହେଞ୍ଜୋଦାରୋ : ଅର୍ଥନୈତିକ ଜୀବନ

ସିନ୍ଧୁ ସଭ୍ୟତାର ଅଧିବାସୀମାନେ ଆର୍ଥିକ ଦୃଷ୍ଟିରୁ ସମୃଦ୍ଧ ଥିଲେ । କୌଣସି ଦରିଦ୍ର ସମାଜ ପକ୍ଷରେ ସେପରି ଉନ୍ନତ ନାଗରିକ ଜୀବନଯାପନ

ସମ୍ଭବ ହୋଇ ନ ଥାନ୍ତା । ସେ ଯୁଗରେ ସିନ୍ଧୁ ଓ ପଞ୍ଜାବ ଅଞ୍ଚଳରେ ଯଥେଷ୍ଟ ବୃଷ୍ଟିପାତ ହେଉଥିଲା । ନଦନଦୀର ଅବବାହିକା ଶସ୍ୟଶ୍ୟାମଳା ଥିଲା । ଗହମ ଓ ବାର୍ଲି ପ୍ରଭୃତି ଖାଦ୍ୟଶସ୍ୟ ପ୍ରଚୁରଭାବେ ଉତ୍ପାଦିତ ହେଉଥିଲା । କୁହାଯାଏ ଯେ, ସେକାଳର ସିନ୍ଧୁବାସୀମାନେ ସମସାମୟିକ ମିଶର ଓ ମେସୋପଟେମିଆର ସାଧାରଣ ଅଧିବାସୀଙ୍କ ଅପେକ୍ଷା ଅଧିକତର ଧନଶାଳୀ ଓ ସୁଖୀ ଥିଲେ ।

କୃଷକଭାବେ ପ୍ରଚୁର ଶସ୍ୟ ଉତ୍ପାଦନ କରିବା ସଙ୍ଗେ ସେମାନେ ଶିଳ୍ପୀ ଭାବରେ ମଧ୍ୟ ସୁଦକ୍ଷ ଥିଲେ । ସେମାନଙ୍କ ନିର୍ମିତ ଅଳଙ୍କାର, ଅସ୍ତ୍ରଶସ୍ତ୍ର, ବାସନ-ପତ୍ର, କ୍ରୀଡ଼ାଦ୍ରବ୍ୟ ଓ ବିଳାସସାମଗ୍ରୀ ପ୍ରଭୃତିରୁ ସେମାନଙ୍କ କାରିଗରୀ ଦକ୍ଷତାର ପରିଚୟ ମିଳେ । ସୂତା ଓ ପଶମବସ୍ତ୍ର ତିଆରି ପାଇଁ ସେମାନେ ଧୂରନ୍ଧର ଥିଲେ ।

ସିନ୍ଧୁ ଅଧିବାସୀମାନେ ବାଣିଜ୍ୟ ବ୍ୟବସାୟରେ ସୁନିପୁଣ ଥିଲେ । ଭାରତ ଭିତରେ ସେମାନେ କାଶ୍ମୀର ଉପତ୍ୟକାରୁ ଦକ୍ଷିଣ ଭାରତ ପର୍ଯ୍ୟନ୍ତ ବାଣିଜ୍ୟରତ ଥିଲେ ବୋଲି କୁହାଯାଏ । ଭାରତ ବାହାରେ ଥିବା କେତେକ ସ୍ଥାନ ସହିତ ସେମାନେ ଜଳ ଓ ସ୍ଥଳପଥରେ ବାଣିଜ୍ୟିକ ସମ୍ପର୍କ ରଖିଥିଲେ । ସେହିସବୁ ସ୍ଥାନ ମଧ୍ୟରେ ସୁମେର, ମିଶର ଓ କ୍ରୀଟ୍ ହେଉଛି ପ୍ରଧାନ । ଏହି ବହିର୍ବାଣିଜ୍ୟର ଉପଯୁକ୍ତ ପ୍ରମାଣମାନ ମିଳିଛି । ଉଦାହରଣସ୍ୱରୂପ, ମହେଞ୍ଜୋ-ଦାରୋର ସୀଲ୍ ମୋହର ମେସୋପଟେମିଆରୁ ବାହାରିଛି । ସେହିପରି ମେସୋପଟେମିଆର କୀଳକଲିପି ମହେଞ୍ଜୋଦାରୋରୁ ବାହାରିଛି । ଏଥିରୁ ଜଣାଯାଏ ଯେ ଉଭୟ ସ୍ଥାନ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ରହିଥିଲା ।

କୃଷି, ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟରେ ସଫଳତା ଲାଭ ଦ୍ୱାରା ପ୍ରାଚୀନ ସିନ୍ଧୁବାସୀମାନେ ଅର୍ଥନୈତିକ ଦୃଷ୍ଟିରୁ ଉନ୍ନତ ଥିଲେ ।

### ହରପ୍ପା ସଂସ୍କୃତି : ଧର୍ମବିଶ୍ୱାସ

**ଦେବୀମୂର୍ତ୍ତି**—ହରପ୍ପା ଯୁଗର ଧର୍ମକୁ ଭାରତର ପ୍ରାଚୀନତମ ସଂଗଠିତ ଧର୍ମ ବୋଲି କୁହାଯାଇପାରେ । ସେହି ଧର୍ମ ବିଷୟରେ ଅନେକ କଥା ଆବିଷ୍କୃତ ପଦାର୍ଥଗୁଡ଼ିକରୁ ଜଣାଯାଏ । ଗୋଟିଏ ସୀଲ୍ ମୋହର ଉପରେ ଅଙ୍କିତ ହୋଇଥିବା ଏକ ନାରୀମୂର୍ତ୍ତିକୁ ଦେଖି ବିଶ୍ୱାସ କରାଯାଏ ଯେ, ସେତେବେଳେ ଦେବୀପୂଜା ବା ମାତୃଶକ୍ତିର ଆରାଧନା ପ୍ରଚଳିତ ଥିଲା । କେହି କେହି ବିଶ୍ୱାସ

କରନ୍ତି ଯେ, ସେହି ମୂର୍ତ୍ତି ହେଉଛି ଧରଣୀ ଦେବୀ କିମ୍ବା ପ୍ରକୃତିଦେବୀଙ୍କ ମୂର୍ତ୍ତି । ବିଶ୍ୱର ଅନେକ ପ୍ରାଚୀନ ସମାଜରେ ଦେବୀପୂଜା ପ୍ରତି ବିଶ୍ୱାସ ଥାଏ । ତେଣୁ ସିନ୍ଧୁ ସମାଜରେ ମଧ୍ୟ ସେପରି ପୂଜା ରହିବା ସ୍ୱାଭାବିକ । ଅନ୍ୟ ଗୋଟିଏ ସୀଲ୍ ଉପରେ ଚିତ୍ରିତ ଏକ ବ୍ୟାଘ୍ରର ଛବିକୁ ଦେବୀଙ୍କର ବାହନ ରୂପେ ଅନୁମାନ କରାଯାଏ । କେହି କେହି ବିଶ୍ୱାସ କରନ୍ତି ଯେ, ସେକାଳର ସେହି ଦେବୀଶକ୍ତି ଭବିଷ୍ୟତ କାଳରେ ଦୁର୍ଗା ବା କାଳୀ ରୂପେ ଭାରତୀୟ ଧର୍ମ ବିଶ୍ୱାସରେ ସ୍ଥାନ ପାଇଥିଲେ । ମୃତ୍ତିକା ନିର୍ମିତ କ୍ଷୁଦ୍ର କ୍ଷୁଦ୍ର ନାରୀମୂର୍ତ୍ତିମାନ ପ୍ରମାଣ କରେ ଯେ, ଦେବୀପୂଜା ପ୍ରତି ସିନ୍ଧୁବାସୀଙ୍କର ଯଥେଷ୍ଟ ଆଗ୍ରହ ଥିଲା ।

**ଶିବ ପଶୁପତି** -- ଦେବୀପୂଜା ବ୍ୟତୀତ ଅନ୍ୟ ଏକ ଦେବତାଙ୍କର ପୂଜା ମଧ୍ୟ ପ୍ରଚଳିତ ଥିଲା ବୋଲି ଅନୁମାନ କରାଯାଏ । ଗୋଟିଏ ସୀଲ୍ ଉପରେ ଏକ ସୁନ୍ଦର ଦେବମୂର୍ତ୍ତିର ପ୍ରତିକୃତି ଦେଖିବାକୁ ମିଳେ । ସେହି ମୂର୍ତ୍ତିର ତିନୋଟି ମୁଖ ଏବଂ ମସ୍ତକ ଉପରେ ଶୃଙ୍ଗ ବିରାଜମାନ । ଯୋଗାସୀନ ଅବସ୍ଥାରେ ଉପବିଷ୍ଟ ମୂର୍ତ୍ତିଟିକୁ ଦେଖିଲେ ତାହା ଏକ ଆରାଧ୍ୟ ଦେବତା ବୋଲି ଧାରଣା ହୁଏ । ମୂର୍ତ୍ତିର ଚତୁଃପାର୍ଶ୍ୱରେ ଚାରୋଟି ପଶୁ ମୂର୍ତ୍ତି ରହିଛି । ସେହି ପଶୁଗୁଡ଼ିକ ହେଲେ ହସ୍ତୀ, ବ୍ୟାଘ୍ର, ଗଣ୍ଡାର ଓ ମହିଷ । ଦେବମୂର୍ତ୍ତିର ପାଦ-



ଯୋଗାସୀନ ମୂର୍ତ୍ତି

ଦେଶରେ ରହିଛି ଗୋଟିଏ ମୃଗର ଚିତ୍ର । ବିଶେଷଜ୍ଞମାନେ ଅନୁମାନ କରନ୍ତି ଯେ, ସେହି ତ୍ରିମୁଖ ବିଶିଷ୍ଟ, ଯୋଗାସନ ଉପବିଷ୍ଟ, ପଶୁ ପରିବେଷ୍ଟିତ ଦେବମୂର୍ତ୍ତି ହେଉଛନ୍ତି ଭାରତୀୟ ଧର୍ମର ସର୍ବପ୍ରଥମ ଶିବ ପଶୁପତି । ସେହି ମୂର୍ତ୍ତି ଅବଲୋକନ-ପୂର୍ବକ ପ୍ରତ୍ନତତ୍ତ୍ୱବିତ୍ ସାର୍ ଜନ୍ ମାର୍ଶାଲ ଅନୁମାନ କରିଥିଲେ ଯେ, ଶୈବଧର୍ମ ହେଉଛି ଭାରତର ପ୍ରାଚୀନତମ ଧର୍ମ ।




ପ୍ରାଚୀନ ସିନ୍ଧୁସଭ୍ୟତାର ସ୍ଥାନ

ଆଶ୍ଚର୍ଯ୍ୟର ବିଷୟ, ମହେଞ୍ଜୋଦାରୋ ଓ ହରପ୍ପାର ଧ୍ୱଂସସ୍ତୂପ ମଧ୍ୟରୁ କୌଣସି ମନ୍ଦିର ବା ଦେବାଳୟର ଧ୍ୱଂସାବଶେଷ ବାହାରି ନାହିଁ । ଏହାମଧ୍ୟ ହୋଇପାରେ ଯେ, ସେକାଳର ମନ୍ଦିରମାନ ସଂପୂର୍ଣ୍ଣରୂପେ ମାଟି ଭିତରେ ଲୀନ ହୋଇଯାଇଛି । ମୂର୍ତ୍ତିଗୁଡ଼ିକ ପ୍ରାୟତଃ ସାଧାରଣ ଲୋକଙ୍କର ବାସଗୃହ ମଧ୍ୟରୁ ବାହାରିଛି । ସେଥିରୁ ଅନୁମିତ ହୁଏ ଯେ, ସିନ୍ଧୁ ଅଧିବାସୀମାନେ ନିଜ ନିଜ ଗୃହ ମଧ୍ୟରେ ପୂଜା ଆରାଧନା କରୁଥିଲେ ।

**ସନ୍ତକ ପୂଜା**—ଦେବୀ ଓ ଦେବ ମୂର୍ତ୍ତିର ପୂଜାବ୍ୟତୀତ ସେକାଳରେ ସନ୍ତକ ପୂଜା ପ୍ରଚଳିତ ଥିଲା ବୋଲି ପ୍ରମାଣ ମିଳେ । ଶିବଙ୍କ ବାହନ ରୂପେ ବୃଷ ଓ ଅନ୍ୟ କେତେକ ପଶୁ, ଯଥା: ବ୍ୟାଘ୍ର, ହସ୍ତୀ ଓ ଗଣ୍ଡାର ପ୍ରଭୃତି ମଧ୍ୟ ପୂଜା ପାଉଥିଲେ । ସେହି ପଶୁଗୁଡ଼ିକ ଦେବ ଦେବୀଙ୍କର ବାହନ ଅଥବା ସନ୍ତକ ଭାବରେ ପୂଜା ପାଉଥିବା ସମ୍ଭବ । ସର୍ପ ଓ ବୃକ୍ଷ ପୂଜା ମଧ୍ୟ ପ୍ରଚଳିତ ଥିଲା ବୋଲି ଜଣାଯାଏ ।

**ଭବିଷ୍ୟତ ଉପରେ ପ୍ରଭାବ**—ପଣ୍ଡିତମାନଙ୍କ ମତରେ ହରପ୍ପାଯୁଗର ସେହି ପ୍ରାଚୀନ ଧର୍ମ ପରବର୍ତ୍ତୀକାଳର ଭାରତୀୟ ଧର୍ମ ଉପରେ ପ୍ରଭାବ ବିସ୍ତାର କରିପାରିଥିଲା । ସାର୍ ମର୍ଟିମାର ହୁଇଲର ଅନୁମାନ କରିଥିଲେ ଯେ, ହିନ୍ଦୁମାନଙ୍କର ଶିବପୂଜା ହେଉଛି ସିନ୍ଧୁ ସଭ୍ୟତାର ଶିବପୂଜାର ଏକ ରୂପାନ୍ତର । ଶିବଙ୍କର ବୃଷ ପ୍ରତି ସେକାଳରେ ଯେଉଁ ସମ୍ମାନ ଥିଲା, ପରବର୍ତ୍ତୀକାଳରେ ହିନ୍ଦୁମାନେ ମଧ୍ୟ ସେହିପରି ସମ୍ମାନ ଦେଇଥିଲେ । ସଂକ୍ଷେପରେ, ପ୍ରାଗୈତିହାସିକ ସିନ୍ଧୁ ସଭ୍ୟତା ସମୟର ଧର୍ମବିଶ୍ୱାସ ପ୍ରକାରାନ୍ତରେ ଭବିଷ୍ୟତ ଯୁଗର ବୈଦିକ ଆର୍ଯ୍ୟଧର୍ମ ଉପରେ ନିଜର ଛାୟାପାତ କରିଥିଲା ।

**ହରପ୍ପା ସଂସ୍କୃତିର ବିଳୟ**

ସିନ୍ଧୁ ସଭ୍ୟତାର ନିଦର୍ଶନମାନ ପ୍ରଥମେ ହରପ୍ପା ଓ ମହେଞ୍ଜୋଦାରୋ ଠାରେ ଆବିଷ୍କୃତ ହୋଇଥିଲା । ପରେ ପରେ ତାହା ଅନ୍ୟ ସ୍ଥାନମାନଙ୍କରେ ଆବିଷ୍କୃତ ହେଲା । ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ନର୍ମଦା ଉପତ୍ୟକା ପର୍ଯ୍ୟନ୍ତ ସେହି ସଭ୍ୟତାର ବିସ୍ତାରଲାଭ ଘଟିଥିଲା ବୋଲି ନିଶ୍ଚିତ ପ୍ରମାଣ ମିଳିଛି । ରୂପାର, କାଳିବଙ୍ଗନ, ଗୁନ୍‌ହୁଦାରୋ, ସୁତ୍‌କାଜେନ୍-ଦୋରୋ ଓ ଲୋଥାଲ ପ୍ରଭୃତି କେତେକ ସ୍ଥାନରୁ ସେହି ପ୍ରାଗୈତିହାସିକ ସଂସ୍କୃତିର ନାନା

ପ୍ରକାର ଚିହ୍ନ ବାହାରିଥିବାରୁ ଏହା ବିଶ୍ୱାସ କରାଯାଇଛି ଯେ, ଭାରତର ସେହି ପ୍ରାଚୀନ ସଭ୍ୟତା ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ଉପରେ ବିସ୍ତୃତ ଥିଲା ।

କିନ୍ତୁ ସମୟର ଗତିପଥରେ ସେହି ସଭ୍ୟତାର କେନ୍ଦ୍ରସ୍ଥଳମାନ ଧ୍ୱଂସପ୍ରାପ୍ତ ହୋଇ ଯାଇଥିଲା । ସେଥିପାଇଁ କ୍ରମେ କ୍ରମେ ସେହି ସଭ୍ୟତାର ବାହ୍ୟରୂପ ଲୋପ ପାଇଗଲା । କିପରି ଅବସ୍ଥାରେ ଓ କେଉଁ କେଉଁ କାରଣ ପାଇଁ ହରପ୍ପା ସଂସ୍କୃତିର ବିଲୟ ଘଟିଲା ତାହା ଜାଣିବା ଅସମ୍ଭବ । କେହି କେହି କହନ୍ତି, ଆର୍ଯ୍ୟମାନଙ୍କ ଆକ୍ରମଣ ଯୋଗୁଁ ପ୍ରାକ୍-ଆର୍ଯ୍ୟ ନଗରଗୁଡ଼ିକ ଧ୍ୱଂସ ପାଇଥିଲା । ଅନ୍ୟ ଏକ ମତରେ, ସିନ୍ଧୁ ଓ ପଞ୍ଜାବ ଅଞ୍ଚଳରେ ଜଳବାୟୁ ପରିବର୍ତ୍ତନ ଘଟିବା ଦ୍ୱାରା ମହେଞ୍ଜୋଦାରୋ ଓ ହରପ୍ପାର ଅଧିବାସୀମାନେ ସେସବୁ ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ଚାଲି ଯାଇଥିଲେ । ତୃତୀୟ ମତରେ, ସିନ୍ଧୁ ଓ ରାଭୀ ନଦୀର ଗତି ପରିବର୍ତ୍ତନ କିମ୍ବା ବାରମ୍ବାର ଘଟିଥିବା ପ୍ରବଳ ବନ୍ୟା ଫଳରେ ହରପ୍ପା ଓ ମହେଞ୍ଜୋଦାରୋ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହି ଶେଷରେ ଭୂଗର୍ଭରେ ପୋତିହୋଇ ପଡ଼ିଥିଲା । ସମ୍ଭବତଃ, ଖ୍ରୀଷ୍ଟଜନ୍ମର ୧୫୦୦ ବର୍ଷ କିମ୍ବା ତା ଆଗରୁ ସେହି ନଗରଦ୍ୱୟ ଧ୍ୱଂସମୁଖରେ ପତିତ ହୋଇଥିଲା ।

ହରପ୍ପା ସଂସ୍କୃତିର ସମୃଦ୍ଧ ନଗରଗୁଡ଼ିକ ଧ୍ୱଂସ ପାଇଗଲେ ମଧ୍ୟ ସେହି ସଂସ୍କୃତିର କେତେକ ଭାବଧାରା ଭବିଷ୍ୟତ ସଂସ୍କୃତି ମଧ୍ୟରେ ସ୍ଥାନ ପାଇଲା । ଏହି ଦୃଷ୍ଟିରୁ ପ୍ରତ୍ନତତ୍ତ୍ୱବିତ୍ ମାର୍ଟିମାର ହୁଇଲର୍ କହିଛନ୍ତି : "ଏହା ଆଶ୍ଚର୍ଯ୍ୟଜନକ ବୋଧହୁଏ ଯେ, ସିନ୍ଧୁ ସଭ୍ୟତା ତାହାର ପରବର୍ତ୍ତୀ ସଭ୍ୟତାକୁ ଯେଉଁ ଧର୍ମ-ବିଶ୍ୱାସ ଦାନ କରି ଯାଇଥିଲା, ତାହା ଦୀର୍ଘକାଳ ସ୍ଥାୟୀ ହେଲା, ଅଥଚ ସିନ୍ଧୁ ସଭ୍ୟତା ତାହାର ବସ୍ତୁବାଦୀ ସଭ୍ୟତାକୁ ପରବର୍ତ୍ତୀ ଯୁଗ ପାଇଁ ଦାନ କରି ଯାଇପାରିଲା ନାହିଁ ।" କାଳଗର୍ଭରେ ନଗର, ନଗରୀ ଓ ସ୍ଥାପତ୍ୟ କୀର୍ତ୍ତିମାନ ଲୋପ ପାଇବା ସ୍ୱାଭାବିକ । କାରଣ, ମନୁଷ୍ୟର ସେସବୁ କୀର୍ତ୍ତି ଚିରସ୍ଥାୟୀ ହୋଇପାରେ ନାହିଁ । ଅନ୍ୟ ପକ୍ଷରେ, ସେହି ସୁଦୂର ଅତୀତର ଧର୍ମୀୟ ବିଶ୍ୱାସ ଭବିଷ୍ୟତ ପାଇଁ ସ୍ଥାୟୀ ଭାବରେ ରହିଗଲା । ତାହା ହିଁ ହେଉଛି ଭାରତୀୟ ସଂସ୍କୃତିର ବିଶେଷତ୍ୱ ।

ହରପ୍ପା ସଂସ୍କୃତିର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ଜନ୍ ମାର୍ଶାଲ ଲେଖିଥିଲେ ଯେ, "ସିନ୍ଧୁ ଉପତ୍ୟକାରେ ଘଟିତ ଆବିଷ୍କାର ଫଳରେ ଭାରତୀୟ ସଭ୍ୟତାର ପ୍ରାଚୀନତ୍ୱ ସମ୍ବନ୍ଧରେ ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ ଯେ,

ଖ୍ରୀଷ୍ଟଜନ୍ମର ତିନିସହସ୍ର ବର୍ଷ ପୂର୍ବେ ଭାରତ ଥିଲା ମେସୋପଟେମିଆ ଓ ମିଶରର ସମକକ୍ଷ ଏବଂ ନଗର ସଂଗଠନ ଦୃଷ୍ଟିରୁ ପାଶ୍ଚାତ୍ୟ ସଭ୍ୟତାଠାରୁ ଯଥେଷ୍ଟ ଉନ୍ନତ । ଶିଳ୍ପକଳା ଦୃଷ୍ଟିରୁ ସେଠାକାର ଚମତ୍କାର ମୂର୍ତ୍ତି, ସୀଲ୍ ଏବଂ ଅଳଙ୍କାର ଇତ୍ୟାଦି ଗ୍ରୀସ୍ ଦେଶର ପେରିକ୍ଲିୟ ଯୁଗର ଆଗମନ ପର୍ଯ୍ୟନ୍ତ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ଦେଖିବାକୁ ମିଳେ ନାହିଁ । ଭାରତ ସମ୍ପୂର୍ଣ୍ଣ ରୂପେ ତାହାର ଏକ ନିଜସ୍ୱ ସଭ୍ୟତା ସୃଜନ କରିଥିଲା,—ଯାହାର ପ୍ରଭାବ ପରବର୍ତ୍ତୀ ହିନ୍ଦୁଧର୍ମ ଉପରେ ସ୍ଥାୟୀ ରେଖାପାତ କରିଥିଲା ।"

**ବୈଦିକ ସଂସ୍କୃତି**

ଆର୍ଯ୍ୟଜାତି—ବିଶ୍ୱର ବିଭିନ୍ନ ପ୍ରାଚୀନ ଜାତି ମଧ୍ୟରେ ଆର୍ଯ୍ୟଜାତି ହେଉଛନ୍ତି ସର୍ବାଧିକ ପ୍ରସିଦ୍ଧ ଜାତି । ପ୍ରାଚୀନ ଆର୍ଯ୍ୟମାନଙ୍କର ଆଦି ବାସସ୍ଥାନ କେଉଁଠାରେ ଥିଲା ସେ ବିଷୟରେ ନାନା ମତ ଦେଖାଯାଏ । ମଧ୍ୟ-ଏସିଆ, ଦକ୍ଷିଣ-ରୁଷିଆ, କୃଷ୍ଣସାଗରର ଉତ୍ତରତଟ, ପାମିର, ପୂର୍ବ-ଇଉରୋପ ଏବଂ ସୁମେରୁ ମଣ୍ଡଳୀୟ ଅଞ୍ଚଳ ଇତ୍ୟାଦିର ଯେକୌଣସି ସ୍ଥାନରେ ଆର୍ଯ୍ୟଜାତିର ସର୍ବପ୍ରଥମ ବାସସ୍ଥଳୀ ଥିଲା ବୋଲି ଯୁକ୍ତିମାନ ଦର୍ଶାଯାଇଛି । କୌଣସି କୌଣସି ଭାରତୀୟ ପଣ୍ଡିତଙ୍କ ମତରେ, ଆର୍ଯ୍ୟଜାତିର ଆଦିସ୍ଥାନ ହେଉଛି ଭାରତବର୍ଷ । କାରଣ, ଆର୍ଯ୍ୟମାନଙ୍କର ପ୍ରାଚୀନତମ ସାହିତ୍ୟ 'ବେଦ' ଭାରତଭୂମିରେ ରଚିତ ହୋଇଥିଲା ।

କାଳକ୍ରମେ ପ୍ରାଚୀନ ଆର୍ଯ୍ୟମାନେ ଦୁଇଗୋଟି ମୁଖ୍ୟ ଶାଖାରେ ବିଭକ୍ତ ହୋଇ ଯାଇଥିଲେ । ସେଥିରୁ ଗୋଟିଏ ଶାଖା ପାରସ୍ୟ ଓ ଭାରତ ଦିଗକୁ ଗତି କରିଥିଲା । ଅନ୍ୟ ଶାଖାଟି ଇଉରୋପ ମହାଦେଶର ବିଭିନ୍ନ ଅଞ୍ଚଳକୁ ଯାତ୍ରା କରିଥିଲା । ସେମାନଙ୍କର ଆଦି ଭାଷା ଏକ ହୋଇଥିବାରୁ, ପରବର୍ତ୍ତୀ ସମୟର ପ୍ରାଚୀନ ଭାରତୀୟ ସଂସ୍କୃତ ଭାଷା, ପ୍ରାଚୀନ ପାରସିକ ଭାଷା ଓ ପ୍ରାଚୀନ ଇଉରୋପୀୟ ଭାଷାଗୁଡ଼ିକର ଅନେକଗୁଡ଼ିଏ ଶବ୍ଦ ମଧ୍ୟରେ ସାମଞ୍ଜସ୍ୟ ରହି ଆସିଛି ବୋଲି ବିଶେଷଜ୍ଞମାନଙ୍କର ବିଶ୍ୱାସ । ଉଦାହରଣସ୍ୱରୂପ,—ସଂସ୍କୃତ ଭାଷାର ପିତର୍ ବା ପିତା, ଲାଟିନ୍ ଭାଷାର ପାଟେର୍, ଗ୍ରୀକ୍ ଭାଷାର ପଟେର୍, ଜାର୍ମାନ୍ ଭାଷାର ଫାଟେର ଓ ଇଂରେଜୀ ଭାଷାର ଫାଦାର ଶବ୍ଦର ଉତ୍ପତ୍ତି ହୋଇଛି ଗୋଟିଏ ମୂଳ ଶବ୍ଦରୁ । ସେହିପରି, ସଂସ୍କୃତ ଭାଷାର ମାତର ବା ମାତା, ଲାଟିନ୍

ଭାଷାର ମାତେର, ଗ୍ରୀକ୍ ଭାଷାର ମେତେର; ଜାର୍ମାନ୍ ଭାଷାର ମୁତେର ଓ ଇଂରାଜୀ ଭାଷାର ମଦର ଶବ୍ଦ ଗୋଟିଏ ମୂଳ ଶବ୍ଦରୁ ଉତ୍ପନ୍ନ ହୋଇଛି ।*

କେତେକ ମୌଳିକ ଶବ୍ଦ ମଧ୍ୟରେ ଏପରି ସାମଞ୍ଜସ୍ୟ ଦେଖି ପ୍ରାଚ୍ୟ-ବିଦ୍ୟାବିତ୍ ସାର୍ ଉଇଲିୟମ୍ ଜୋନ୍‌ସ ୧୭୮୬ ଖ୍ରୀଷ୍ଟାବ୍ଦରେ ମତ ପ୍ରକାଶ କରିଥିଲେ ଯେ, ପ୍ରାଚୀନ ଆର୍ଯ୍ୟମାନେ ଥିଲେ ଗୋଟିଏ ଆଦି ବାସସ୍ଥଳୀର ସନ୍ତାନସନ୍ତତି । ସେହିପରି, ଆର୍ଯ୍ୟଜାତିର ପ୍ରାଚୀନ ଏକତ୍ୱ ଉପରେ ମତ ଦେଇ ପ୍ରଖ୍ୟାତ ପାଶ୍ଚାତ୍ୟ ପଣ୍ଡିତ ମ୍ୟାକ୍‌ସ ମୁଲର୍ ୧୮୬୧ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ ଯେ ସୁଦୂର ଅତୀତର "ଭାରତୀୟ, ପାରସିକ, ଗ୍ରୀକ୍, ରୋମୀୟ, ସ୍ଲାଭ୍, କେଲ୍‌ଟ ଓ ଜାର୍ମାନ୍‌ମାନଙ୍କର ଆଦି ପୂରୁଷମାନେ କେବଳ ଯେ ଏକ ସ୍ଥାନରେ ବାସ କରୁଥିଲେ ତାହାନୁହେଁ, ସେମାନେ ଏକ ଗୃହମଧ୍ୟରେ ହିଁ ବାସ କରୁଥିଲେ ।"

**ଆର୍ଯ୍ୟମାନଙ୍କ ଭାରତ ପ୍ରବେଶ ଓ ବିସ୍ତାରଲାଭ**—ସେମାନଙ୍କ ଆଦି ବାସସ୍ଥାନରୁ ଆଗମନ କରି ଆର୍ଯ୍ୟମାନେ ଠିକ୍ କେଉଁ ସମୟରେ ଭାରତରେ ପ୍ରବେଶ କରିଥିଲେ ସେ ବିଷୟରେ ନାନା ପ୍ରକାର ମତ ଦେଖାଯାଏ । ଆଧୁନିକ ଭାରତୀୟ ଜାତୀୟତାର ଅନ୍ୟତମ ଅଗ୍ରସାରଥି ବାଲ ଗଙ୍ଗାଧର ତିଲକ ବିଶ୍ୱାସ କରୁଥିଲେ ଯେ, ଆର୍ଯ୍ୟମାନେ ଖ୍ରୀଷ୍ଟଜନ୍ମର ଛଅସହସ୍ର ବର୍ଷ ପୂର୍ବେ ଭାରତବର୍ଷରେ ପ୍ରବେଶ କରିଥିଲେ । ଆର୍ଯ୍ୟ ଋଷିମାନଙ୍କ ରଚିତ ବୈଦିକ ସାହିତ୍ୟ ଅନୁଧ୍ୟାନ କରି ପାଶ୍ଚାତ୍ୟ ପଣ୍ଡିତ ଉଇନ୍‌ଟାରନିଜ୍ (Winternitz) ମତ ଦେଇଛନ୍ତି ଯେ ବେଦ ରଚନାର ଆରମ୍ଭ ସମୟ ଥିଲା ଖ୍ରୀଷ୍ଟପୂର୍ବ ୨୫୦୦ରୁ ୨୦୦୦ ମଧ୍ୟରେ । ଅର୍ଥାତ୍, ହରପ୍ପା-ମହେଞ୍ଜୋଦାରୋ ସଭ୍ୟତାର ପରେ ପରେ ଭାରତରେ ଆର୍ଯ୍ୟସଭ୍ୟତା ଆରମ୍ଭ ହୋଇଥିଲା । ଅନ୍ୟ କେହି କେହି କହିଥାନ୍ତି ଯେ ଋକ୍‌ବେଦର ରଚନାକାଳ ହେଉଛି ଖ୍ରୀଷ୍ଟପୂର୍ବ ୧୫୦୦ର ନିକଟବର୍ତ୍ତୀ ସମୟ । ଏସିଆ-ମାଇନର ଅଞ୍ଚଳର ବୋଘାଜକୋଇ ନାମକ ସ୍ଥାନରୁ ବାହାରିଥିବା ଗୋଟିଏ ଶିଳାଲିପିରେ ଦେଖିବାକୁ ମିଳିଛି ଯେ ଖ୍ରୀଷ୍ଟଜନ୍ମର ୧୪୦୦ ବର୍ଷ ପୂର୍ବେ ସେଠାରେ ଦୁଇଜଣ ରାଜାଙ୍କ ମଧ୍ୟରେ ହୋଇଥିବା ସନ୍ଧିରେ ଭାରତୀୟ ବୈଦିକ

* Sanskrit 'Pitar' = Latin 'Pater' = Greek 'Patir' = German 'Vater' = English 'Father'.
Sanskrit 'Matar' = Latin 'Mater' = Greek 'Meter' = German 'Mutter' = English 'Mother'.

ଦେବତା ଇନ୍ଦ୍ର, ବରୁଣ ଓ ମିତ୍ରଙ୍କ ନାମ ଲିପିବଦ୍ଧ ହୋଇଛି । ସେଥିରୁ ପ୍ରମାଣିତ ହୁଏ, ସେହି ସମୟର ଅନେକ ପୂର୍ବରୁ ଆର୍ଯ୍ୟମାନେ ଭାରତରେ ପ୍ରବେଶ କରିଥିଲେ ।

ସଂକ୍ଷେପରେ କୁହାଯାଇପାରେ ଯେ ଆର୍ଯ୍ୟମାନଙ୍କ ପୂର୍ବବର୍ତ୍ତୀ ସିନ୍ଧୁ ସଭ୍ୟତା ଖ୍ରୀଷ୍ଟଜନ୍ମର ତିନିସହସ୍ର ବର୍ଷ ପୂର୍ବେ ସ୍ୱ ଉନ୍ନତିର ଶୀର୍ଷ ସୀମାରେ ପହଞ୍ଚିଥିଲା । ସେହି ପ୍ରାଚୀନତମ ସଭ୍ୟତାର କେତେକ ଶତାବ୍ଦୀ ପରେ ଆର୍ଯ୍ୟମାନେ ଭାରତରେ ପ୍ରଭାବ ବିସ୍ତାର କରିଥିଲେ ।

ସେତେବେଳେ ଆଧୁନିକ ଯୁଗର ଆଫଗାନିସ୍ତାନ ଅଞ୍ଚଳ ପ୍ରାକୃତିକ ଭାରତର ଅନ୍ତର୍ଭୁକ୍ତ ଥିଲା । ପ୍ରଥମେ ସେଠାରେ ବିସ୍ତାରଲାଭ ପରେ ଆର୍ଯ୍ୟମାନେ ପଞ୍ଜାବ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । ସେତେବେଳେ ପଞ୍ଜାବରେ ସାତଟି ନଦୀ ପ୍ରବାହିତ ହେଉଥାଏ । ତେଣୁ ନବାଗତ ଆର୍ଯ୍ୟମାନେ ସେ ସ୍ଥାନର ନାମ ରଖିଥିଲେ ସପ୍ତ-ସିନ୍ଧୁ । ସେହି ନଦୀଗୁଡ଼ିକ ହେଲ; ସିନ୍ଧୁ, ବିତସ୍ତା, ଚନ୍ଦ୍ରଭାଗା, ଇରାବତୀ, ବିପାଶା, ଶତଦ୍ରୁ ଓ ସରସ୍ୱତୀ । କାଳକ୍ରମେ ଚନ୍ଦ୍ରଭାଗା ଓ ସରସ୍ୱତୀ ନଦୀ ଦୁଇଟି ଲୋପ ପାଇଯାଇଛି । ସେଥିପାଇଁ ସପ୍ତ-ସିନ୍ଧୁର ନାମ ହୋଇଛି ପଞ୍ଚନଦ ବା ପଞ୍ଜାବ ।

ସପ୍ତ-ସିନ୍ଧୁ ପରେ ଆର୍ଯ୍ୟବସତି ଗଙ୍ଗା ଓ ଯମୁନା ନଦୀଦ୍ୱୟର ଉପତ୍ୟକା ଅଞ୍ଚଳରେ ବିସ୍ତାରଲାଭ କରିଥିଲା । କାଳକ୍ରମେ ବିନ୍ଧ୍ୟ ପର୍ବତମାଳା ପର୍ଯ୍ୟନ୍ତ ପ୍ରସାରଲାଭ କରି ସେମାନେ ସମଗ୍ର ଉତ୍ତରାପଥ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । ତାହାପରେ କ୍ରମେ କ୍ରମେ ସେମାନେ 'ଦକ୍ଷିଣାପଥ'ରେ ପ୍ରବେଶ କରିଥିଲେ ।

**ବେଦ ଓ ବୈଦିକ ସାହିତ୍ୟ**—ଆର୍ଯ୍ୟମାନଙ୍କର ବେଦ ହେଉଛି ମନୁଷ୍ୟ ସଭ୍ୟତାର ପ୍ରାଚୀନତମ ରଚନା । ଅଧ୍ୟାପକ ମ୍ୟାକ୍ସ ମୁଲରଙ୍କ ଭାଷାରେ ତାହାଥିଲା "ଆର୍ଯ୍ୟ ମାନବର ପ୍ରଥମ ଉଚ୍ଚାରିତ ବାଣୀ ।"*

ବେଦ ଶବ୍ଦର ଅର୍ଥ ହେଲା ଜ୍ଞାନ । ଦୀର୍ଘକାଳ ମଧ୍ୟରେ ବୈଦିକ ସାହିତ୍ୟ ରଚିତ ହୋଇଥିଲା । ଶତ ଶତ ବର୍ଷ ଯାଏଁ ସେହି ସାହିତ୍ୟ ମୌଖିକ ଭାବରେ ସୁରକ୍ଷିତ ହୋଇଥିଲା । ବୈଦିକ ଋଷିମାନଙ୍କୁ ଦିବ୍ୟଦ୍ରଷ୍ଟା ଓ ମନ୍ତ୍ରସ୍ରଷ୍ଟା ବୋଲି

* "The first word spoken by the Aryan Man"—Max Muller

ବିଶ୍ୱାସ କରାଯାଇଛି । ବେଦ ଚାରିଭାଗରେ ବିଭକ୍ତ, ଯଥା: ଋକ୍ ବେଦ, ସାମ ବେଦ, ଯଜୁର୍ବେଦ ଓ ଅଥର୍ବ ବେଦ । ଋକ୍ ବେଦ ହେଉଛି ସର୍ବପ୍ରଥମ ବେଦ ।

ବୈଦିକ ରଚନାରେ ସ୍ତୁତି, ପ୍ରାର୍ଥନା, ପୂଜା ଅର୍ଚ୍ଚନା ଇତ୍ୟାଦିର ପଦ୍ଧତି, ସେକାଳର ପ୍ରାକୃତିକ ବିଶ୍ୱାସରାଜି ସହିତ ନୈତିକର ଦର୍ଶନ ଓ ଅପରୂପ ପ୍ରକୃତିର ପ୍ରାଣସ୍ପର୍ଶୀ ବର୍ଣ୍ଣନାମାନ ସ୍ଥାନ ପାଇଛି । ଆର୍ଯ୍ୟମାନଙ୍କର ମାର୍ଜିତ ଚିନ୍ତାଧାରା, କର୍ମପ୍ରେରଣା, ଆଧ୍ୟାତ୍ମିକ ମନୋଭାବ, ସତ୍ୟର ସନ୍ଧାନ ପାଇଁ ବ୍ୟାକୁଳତା, ସୃଷ୍ଟିର ରହସ୍ୟ ଭେଦ ପାଇଁ ଅପାର ଆଗ୍ରହ ଓ ପ୍ରକୃତିର ମହତ୍ତ୍ୱ ପ୍ରତି ମନର ଆବେଗ ଇତ୍ୟାଦି ବିଷୟ ବୈଦିକ ସାହିତ୍ୟରେ ପ୍ରାଞ୍ଜଳ ଭାବରେ ଦେଖିବାକୁ ମିଳେ ।

ବୈଦିକ ସାହିତ୍ୟରୁ ପ୍ରାଚୀନ ଆର୍ଯ୍ୟମାନଙ୍କର ଧର୍ମ ବିଶ୍ୱାସ, ସାମାଜିକ ରୀତିନୀତି, ଅର୍ଥନୈତିକ ଅବସ୍ଥା ଓ ରାଜନୈତିକ ବ୍ୟବସ୍ଥା ପ୍ରଭୃତିର ପରିଚୟ ମିଳିଥାଏ ।

**ବୈଦିକ ଧର୍ମ**—ପ୍ରାଚୀନ ବିଶ୍ୱର ପ୍ରତ୍ୟେକ ସଭ୍ୟତାରେ ମନୁଷ୍ୟର ଧର୍ମବିଶ୍ୱାସ ଦେଖିବାକୁ ମିଳେ । ମିଶର, ମେସୋପଟେମିଆ, ଇସ୍ରାଏଲ, ଗ୍ରୀସ୍ ଓ ରୋମ୍ ପ୍ରଭୃତି ସ୍ଥାନର ପ୍ରାଚୀନ ଧର୍ମବିଶ୍ୱାସମାନ ଅତ୍ୟନ୍ତ ଅବାନ୍ତର ଓ ଅନୁନ୍ନତ ବିଶ୍ୱାସ ରୂପେ ଦେଖିବାକୁ ମିଳୁଛି । ଅପର ପକ୍ଷରେ, ଏକମାତ୍ର ବୈଦିକ ଭାରତୀୟ ଆର୍ଯ୍ୟ ସଭ୍ୟତାର ଧର୍ମଚିନ୍ତା ମଧ୍ୟରେ ଦେଖିବାକୁ ମିଳେ ଉନ୍ନତ ଓ ଗଭୀର ଆଧ୍ୟାତ୍ମିକ ବିଶ୍ୱାସ ।

ଆଦି ବୈଦିକ ବା ଋକ୍ ବୈଦିକ ଯୁଗର ଋଷିମାନେ ଯେଉଁ ପ୍ରକାର ଧର୍ମ କଳ୍ପନା କରିଥିଲେ ତାହା ଶାଶ୍ୱତ ଓ ନିତ୍ୟ ରୂପେ ବିବେଚିତ ହୋଇଛି । ସେମାନେ ସୃଷ୍ଟିର ରହସ୍ୟ ଉଦ୍‌ଘାଟନ ପାଇଁ ଚିନ୍ତା ପ୍ରୟୋଗ କରିଥିଲେ । ପ୍ରକୃତିର ବହୁବିଧ ରୂପ ଓ ମନୁଷ୍ୟ ଜୀବନ ଉପରେ ପ୍ରକୃତିର ପ୍ରଭାବ ଦେଖି ସେମାନେ ସେହି ପ୍ରକୃତି-ଚିନ୍ତା ମଧ୍ୟରେ ଧର୍ମର ସନ୍ଧାନ ପାଇଥିଲେ । ବସ୍ତୁତଃ, ସେମାନେ ଥିଲେ ପ୍ରକୃତି-ଉପାସକ । ପ୍ରକୃତି ଉଦ୍ଦେଶ୍ୟରେ ସ୍ତୁତି ରଚନା କରିବା ଓ ସେହି ସ୍ତୁତିମାନ ଗାନ କରିବାକୁ ସେମାନେ ପ୍ରକୃତ ଧର୍ମ ବୋଲି ଭାବିଥିଲେ । କ୍ରମେ କ୍ରମେ ପ୍ରକୃତିର ବିଭିନ୍ନ ରୂପକୁ ସେମାନେ ଆରାଧ୍ୟ ଦେବଦେବୀ ଭାବରେ ନିଜ ମନରେ ସ୍ଥାନ ଦେଇଥିଲେ ।

ସେଥିସଙ୍ଗେ ଋକ୍‌ବୈଦିକ ଋଷିମାନେ ବିଶ୍ୱାସ କରୁଥିଲେ ଯେ, ସମଗ୍ର ପ୍ରକୃତି ଓ ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା ହେଉଛନ୍ତି ଏକ ପରମ ଶକ୍ତି ବା ପରମେଶ୍ୱର। ପ୍ରକୃତି-ଉପାସନା ମଧ୍ୟରେ ସେମାନେ ସେହି ସର୍ବଶକ୍ତିମାନ୍ ନିରାକାର ସ୍ରଷ୍ଟାଙ୍କର ସତ୍ତା ଉପଲବ୍ଧି କରୁଥିଲେ। ବାସ୍ତବତଃ, ଋକ୍‌ବେଦ ସମୟର ଧର୍ମବିଶ୍ୱାସ ମଧ୍ୟରେ ରହିଥିଲା ଏକେଶ୍ୱରବାଦ। ଋକ୍‌ବେଦରେ ବର୍ଣ୍ଣିତ ଅଛି "ଋଷିମାନେ ଯାହାଙ୍କୁ ଅଗ୍ନି, ଯମ, ଇନ୍ଦ୍ର, ମିତ୍ର ଓ ବରୁଣ ଇତ୍ୟାଦି ନାମରେ ବର୍ଣ୍ଣନା କରନ୍ତି, ସେ ହେଉଛନ୍ତି ଏକମାତ୍ର ସତ୍ୟ—ଏକମ୍ ସତ୍।"*

ଆର୍ଯ୍ୟମାନେ ପ୍ରଥମେ ଆକାଶ, ଧରିତ୍ରୀ, ବରୁଣ, ଇନ୍ଦ୍ର, ସୂର୍ଯ୍ୟ, ମିତ୍ର, ମରୁତ୍, ବାୟୁ ଓ ଉଷା ଇତ୍ୟାଦିଙ୍କୁ ପ୍ରାକୃତିକ ଦେବଦେବୀ ରୂପରେ ଆରାଧନା କରୁଥିଲେ। କ୍ରମେ ପ୍ରକୃତିର ରୂପ ଉପରେ ଗୁରୁତ୍ୱ ଦେବା ଅପେକ୍ଷା ସେମାନେ ନିରାକାର ପରମବ୍ରହ୍ମ ବା ସର୍ବଶକ୍ତିମାନ୍ ସ୍ରଷ୍ଟାଙ୍କ ପ୍ରତି ଭକ୍ତି ପ୍ରକାଶ କରୁଥିଲେ। ସୃଷ୍ଟି ଓ ସୃଷ୍ଟିକର୍ତ୍ତାଙ୍କ ମହତ୍ତ୍ୱ ଚିନ୍ତା ମଧ୍ୟରୁ ସେମାନେ ନାନା ପ୍ରକାର ଦାର୍ଶନିକ ତତ୍ତ୍ୱମାନ କଳ୍ପନା କରୁଥିଲେ।

ବୈଦିକ ସାହିତ୍ୟକୁ ସୃଷ୍ଟି ଓ ସ୍ଥିତିର ଆଶ୍ଚର୍ଯ୍ୟପ୍ରଦ ରହସ୍ୟ ଉନ୍ମୋଚନ ପାଇଁ ଭାରତୀୟ ଆର୍ଯ୍ୟମାନଙ୍କର ଏକ ଅପୂର୍ବ କାବ୍ୟିକ ଅବଦାନଟିଏ ରୂପେ ବର୍ଣ୍ଣନା କରି କବିଗୁରୁ ରବୀନ୍ଦ୍ରନାଥ ଠାକୁର ଲେଖିଥିଲେ "ସଭ୍ୟତାର ଅରୁଣୋଦୟ କାଳରେ ଏକ ତେଜସ୍ୱୀ ଓ ଅବିକୃତ ଉପଲବ୍ଧି-ଶକ୍ତି-ସମ୍ପନ୍ନ ଜାତି ଜାଗ୍ରତ ହୋଇ ଉଠିଥିଲେ ଜୀବନର ଅକପଟ ତଥା ଅସରନ୍ତି ପ୍ରହେଳିକାର ବୋଧଜ୍ଞାନ ପ୍ରତି। ସେମାନଙ୍କର ସରଳ ବିଶ୍ୱାସରେ ସେମାନେ ପ୍ରକୃତିର ପ୍ରତ୍ୟେକ ଉପାଦାନ ଓ ଶକ୍ତି ପ୍ରତି ଦେବତ୍ୱ ଆରୋପ କରୁଥିଲେ। ଏହାଥିଲା ଏକ ସାହସିକ ତଥା ଆନନ୍ଦଜନକ ଧାରଣା, ଯେଉଁଥିରେ ସୃଷ୍ଟି ରହସ୍ୟର ବିସ୍ମୟଶକ୍ତି ପ୍ରାଣକୁ ସନ୍ଦେହ ଦ୍ୱାରା ଭାରାକ୍ରାନ୍ତ ନ କରି ମନ୍ତ୍ରମୁଗ୍ଧବତ୍ ରଖିଥିଲା। ବିଶ୍ୱବ୍ରହ୍ମାଣ୍ଡର ବାହ୍ୟ ବିରୋଧାତ୍ମକ ବୈଚିତ୍ର୍ୟ ଉପରେ ମାନସିକ ଦୀର୍ଘଚିନ୍ତାର

---

* "ଇନ୍ଦ୍ରଂ ମିତ୍ରଂ ବରୁଣଂ ଅଗ୍ନିମାହୁଃ
ଅଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗରୁତ୍ମାନ୍,
ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି
ଅଗ୍ନିଂ ଯମଂ ମାତରିଶ୍ୱାନମାହୁଃ"

—ଋକ୍‌ବେଦ ୧, ୧୬୪, ୪୬

ଗୁରୁଭାରରୁ ମୁକ୍ତ ରହି, ଅଥଚ ବାରମ୍ବାର ସହଜାତ ଜ୍ଞାନୋପଲବ୍ଧ ଅଭିଜ୍ଞତା ଦ୍ୱାରା ଆଲୋକ ଲାଭ କରି, ଜାତିର ବିଶ୍ୱାସ ହୋଇଥିଲା,—'ଏକମ୍ ସଦ୍, ବିପ୍ରା ବହୁଧା ବଦନ୍ତି' ।"

ଋକ୍ ବୈଦିକଯୁଗ ପରେ ଅନେକ ସମୟ ବିତି ଯାଇଥିଲା । ଶେଷ ବେଦ ବା ଅଥର୍ବ ବେଦର ରଚନା ବେଳକୁ ଆର୍ଯ୍ୟମାନଙ୍କ ଧର୍ମବିଶ୍ୱାସ ଜଟିଳ ଆକାର ଧାରଣ କରିଥିଲା । ନୂତନ ନୂତନ ଦେବଦେବୀମାନଙ୍କର କଳ୍ପନା ସହିତ ନାନା ପ୍ରକାର ପୂଜାପଦ୍ଧତି ଉପରେ ସେମାନେ ଗୁରୁତ୍ୱ ଦେଇଥିଲେ । ପ୍ରକୃତ ଉପାସନା ଅପେକ୍ଷା ଧର୍ମୀୟ କ୍ରିୟାକାଣ୍ଡ ପ୍ରତି ଅଧିକତର ଆଗ୍ରହ ପ୍ରକାଶ ପାଇଥିଲା । ତେଣେ, ଆର୍ଯ୍ୟଧର୍ମ ଉପରେ ଭାରତୀୟ ଆଦିମ ଅଧିବାସୀମାନଙ୍କ ପୂଜାପଦ୍ଧତି ଓ ସୁସଭ୍ୟ ଦ୍ରାବିଡ଼ମାନଙ୍କର ଦେବ-ଦେବୀ ବିଶ୍ୱାସଗୁଡ଼ିକର ପ୍ରଭାବ ପଡ଼ିଥିଲା । ଫଳରେ, ପରବର୍ତ୍ତୀ ବୈଦିକଯୁଗର ଧର୍ମବିଶ୍ୱାସମାନ ଋକ୍-ବୈଦିକ ଯୁଗର ଧର୍ମଠାରୁ ଭିନ୍ନ ରୂପ ଧାରଣ କରିଥିଲା ।

ବୈଦିକ ଯୁଗ ପରେ ଯେତେବେଳେ ରାମାୟଣ-ମହାଭାରତ ଯୁଗ ଆତ୍ମପ୍ରକାଶ କଲା, ସେତେବେଳକୁ ପ୍ରାଚୀନତମ ସରଳ ଆର୍ଯ୍ୟଧର୍ମ ଅନେକାଂଶରେ ପରବର୍ତ୍ତୀ ଯୁଗର ହିନ୍ଦୁଧର୍ମ ପରି ଜଟିଳ ଆକାର ଧାରଣ କରି ସାରିଥିଲା । ତାହାସତ୍ତ୍ୱେ, ସେହି ଅସୀମ, ଅନନ୍ତ, ନିରାକାର ପରମେଶ୍ୱର ହିଁ ଆର୍ଯ୍ୟଧର୍ମର ମୂଳ ଆଧାର ରୂପେ ଚିରନ୍ତନ ଓ ସନାତନ ଭାବେ ବର୍ତ୍ତିତ ହୋଇଥିବାର ଦେଖିବାକୁ ମିଳିଥିଲା ।

**ବୈଦିକ ସମାଜ**—ପ୍ରାଚୀନକାଳର ମନୁଷ୍ୟ ସମାଜଗୁଡ଼ିକ ମଧ୍ୟରେ ଆଦି ବୈଦିକ ଯୁଗର ଆର୍ଯ୍ୟ ସମାଜ ଥିଲା ଆଦର୍ଶସ୍ଥାନୀୟ । ନୀତି, ଧର୍ମ, ଐକ୍ୟଭାବ, ସହନଶୀଳତା ଓ ସହଯୋଗ ପ୍ରତି ଦୃଷ୍ଟି ରଖି ଆର୍ଯ୍ୟମାନେ ସେମାନଙ୍କର ସମାଜ ସଂଗଠନ କରିଥିଲେ । ସଦା କର୍ମତତ୍ପର ରହିବା ସଙ୍ଗେ ସେମାନେ ସୁଖମୟ ସାମାଜିକ ଜୀବନଯାପନ ପାଇଁ ଆଗ୍ରହୀ ଥିଲେ ।

ଆର୍ଯ୍ୟ ପରିବାରଗୁଡ଼ିକ ଥିଲା ସମାଜର ମୂଳପିଣ୍ଡ । କର୍ତ୍ତବ୍ୟନିଷ୍ଠା, ସୁଖ ଓ ଶାନ୍ତି ଉପରେ ପାରିବାରିକ ଜୀବନ ପ୍ରତିଷ୍ଠିତ ଥିଲା । ପରିବାର ମଧ୍ୟରେ ପିତାଙ୍କର ପ୍ରାଧାନ୍ୟ ଥିଲା ସର୍ବାଧିକ ଉଲ୍ଲେଖଯୋଗ୍ୟ । ତାହାଙ୍କ ନିର୍ଦ୍ଦେଶ ଅନୁଯାୟୀ ଅନ୍ୟମାନେ କର୍ତ୍ତବ୍ୟପାଳନ କରୁଥିଲେ । ପିତା ମାତା, ପୁତ୍ର କନ୍ୟା ଓ ଭ୍ରାତା ଭଗିନୀ ଇତ୍ୟାଦିଙ୍କ ମଧ୍ୟରେ ସ୍ନେହ ଓ ମମତା ଥିଲା ବନ୍ଧନ-ରଜ୍ଜୁ ।

ପ୍ରତ୍ୟେକେ ଅନ୍ୟମାନଙ୍କ ପ୍ରତି କର୍ତ୍ତବ୍ୟପରାୟଣ ହେବାପାଇଁ ଆଗ୍ରହୀ ଥିଲେ । ଅନ୍ୟମାନଙ୍କର ସୁଖ ପାଇଁ ପ୍ରତ୍ୟେକେ ନିଜ ନିଜର ସ୍ୱାର୍ଥ ବିସର୍ଜନ ଦେଉଥିଲେ ଓ କଷ୍ଟ ସ୍ୱୀକାର କରୁଥିଲେ । ନିଜ ନିଜର ନିଷ୍ଠାମୟ କର୍ମ ମଧ୍ୟରେ ପରିବାରର ସମସ୍ତ ବ୍ୟକ୍ତି ପାରିବାରିକ ସୁସମ୍ପର୍କ ପାଇଁ ସଦାବେଳେ ଚେଷ୍ଟିତ ଥିଲେ ।

ସୁଖମୟ ପରିବାରଗୁଡ଼ିକର ସମାବେଶରେ ଶାନ୍ତିମୟ ସମାଜ ଗଠିତ ହେଉଥିଲା । ପ୍ରତ୍ୟେକ ପରିବାର ସମାଜ ପ୍ରତି ଯଥାଯୋଗ୍ୟ କର୍ତ୍ତବ୍ୟ କରି ଯାଉଥିଲେ । ଦୟା, କ୍ଷମା, ତ୍ୟାଗ, ଉଦାରତା ଓ ପରୋପକାରିତା ଥିଲା ମନୁଷ୍ୟର ସାମାଜିକ ଗୁଣ । ଆର୍ଯ୍ୟମାନେ ବିଶ୍ୱାସ କରୁଥିଲେ ଯେ, ସୃଷ୍ଟିକର୍ତ୍ତା ତାଙ୍କର ସୃଷ୍ଟ ଜୀବଜଗତ ପ୍ରତି ଯେପରି ଆତ୍ମନିୟୋଗ କରିଛନ୍ତି, ତାହାଙ୍କ ସୃଜିତ ମନୁଷ୍ୟ ମଧ୍ୟ ସେହିପରି ଭାବରେ ଅନ୍ୟମାନଙ୍କ ହିତ ପାଇଁ ଆତ୍ମନିୟୋଗ କରିବା ଉଚିତ । ଈଶ୍ୱରଙ୍କ ଅନୁକରଣରେ ମନୁଷ୍ୟର ସୃଷ୍ଟି ! ସେଥିପାଇଁ ମନୁଷ୍ୟ ପ୍ରାଣରେ ଈଶ୍ୱରଙ୍କ ଗୁଣାବଳି ନିହିତ ରହିବା ସ୍ୱାଭାବିକ ।

ଆର୍ଯ୍ୟ ସମାଜରେ ପରସ୍ପରର ସେବା ପାଇଁ ସମସ୍ତେ ଚେଷ୍ଟିତ ଥିଲେ । ଋଷିବାକ୍ୟ ଅନୁସାରେ ସେମାନେ ପବିତ୍ର ଓ ନୀତି-ପରାୟଣ ରହୁଥିଲେ । ଫଳରେ ଆର୍ଯ୍ୟ ସମାଜ ଥିଲା ଏକ ଉଚ୍ଚତର ମାନବୀୟ ଆଧ୍ୟାତ୍ମିକ ସମାଜ । ଧର୍ମ ଓ କର୍ମ, ଏହି ଉଭୟକୁ କେନ୍ଦ୍ର କରି ସାମାଜିକ ଜୀବନ ଗଢ଼ି ଉଠିଥିଲା ।

ଆର୍ଯ୍ୟମାନେ ଜ୍ଞାନ ଓ ବିଦ୍ୟାର ଉପକାରିତା ଉପରେ ପ୍ରଗାଢ଼ ବିଶ୍ୱାସ ରଖିଥିଲେ । ବଂଶ ପରମ୍ପରାକ୍ରମେ ସେମାନେ ବେଦ, ଉପନିଷଦ ଓ ବେଦାଙ୍ଗ ପ୍ରଭୃତି ସବୁ ପ୍ରକାର ବୈଦିକ ସାହିତ୍ୟ ମୁଖସ୍ଥ ରଖି ପାରୁଥିଲେ । ବିଦ୍ୟାର୍ଥୀ-ମାନଙ୍କୁ ଅଳ୍ପ ବୟସରୁ ଶିକ୍ଷାଦାନ କରାଯାଉଥିଲା । ଗୁରୁ ବା ଆଚାର୍ଯ୍ୟମାନେ ଶିଷ୍ୟମାନଙ୍କୁ ଦୀକ୍ଷା ଦେଉଥିଲେ । ଶିଷ୍ୟମାନେ ବ୍ରହ୍ମଚାରୀ ରୂପେ ରହୁଥିଲେ । ସେମାନଙ୍କୁ ଆଚାର୍ଯ୍ୟମାନଙ୍କ ଗୁରୁକୁଳରେ ରହିବାକୁ ହେଉଥିଲା । ମାର୍ଜିତ ଗୁଣସହ ବିବିଧ କାର୍ଯ୍ୟ ପାଇଁ ଛାତ୍ରମାନେ ଶିକ୍ଷାଲାଭ କରୁଥିଲେ । ଉପନିଷଦ-ମାନଙ୍କରୁ ଜଣାଯାଏ ଯେ, ବୈଦିକଯୁଗର ଗୁରୁକୁଳମାନଙ୍କରେ ଧର୍ମଶାସ୍ତ୍ର, ବ୍ୟାକରଣ, ଗଣିତ, ଧାତୁବିଦ୍ୟା, ତର୍କଶାସ୍ତ୍ର, ନୀତିଶାସ୍ତ୍ର, ବ୍ରହ୍ମବିଦ୍ୟା, ଭୂତବିଦ୍ୟା ବା ପ୍ରାଣୀବିଜ୍ଞାନ, କ୍ଷତ୍ରବିଦ୍ୟା ବା ସାମରିକ ଶିକ୍ଷା, ନକ୍ଷତ୍ରବିଦ୍ୟା ଓ ଆୟୁର୍ବେଦ ପ୍ରଭୃତି ବିଷୟ ଉପରେ ଜ୍ଞାନ ଦାନ କରାଯାଉଥିଲା । କୃଷିକାର୍ଯ୍ୟ, ହସ୍ତଶିଳ୍ପ ଓ ଗୋ-ପାଳନ ଇତ୍ୟାଦିରେ ମଧ୍ୟ ସେମାନେ ବୈଷୟିକ ଶିକ୍ଷାଲାଭ କରୁଥିଲେ ।

ବୈଦିକ ସମାଜରେ ନାରୀର ସ୍ଥାନ ସମ୍ମାନଜନକ ଥିଲା । ଆର୍ଯ୍ୟକନ୍ୟା-ମାନେ ପ୍ରଥମରୁ ଗୃହକର୍ମରେ ନିପୁଣତା ଲାଭ କରୁଥିଲେ । ବିବାହ ସମ୍ପର୍କରେ ସେମାନଙ୍କର ମତଦେବାର ଅଧିକାର ଥିଲା । ପତି ବରଣ ପାଇଁ ସେମାନଙ୍କର ସ୍ୱାଧୀନତା ରହିଥାଏ । ଆର୍ଯ୍ୟ ବିଶ୍ୱାସରେ ବିବାହ ଥିଲା ନରନାରୀ ମଧ୍ୟରେ ଏକ ପବିତ୍ର ବନ୍ଧନ । ବିବାହ ପରେ ନାରୀମାନେ ପରିବାର ପରିଚାଳନା ଦୃଷ୍ଟିରୁ ଗୃହକର୍ତ୍ତ୍ରୀ ରୂପେ କାର୍ଯ୍ୟ କରୁଥିଲେ । ଧର୍ମକାର୍ଯ୍ୟରେ ପୁରୁଷ ସହିତ ନାରୀର ସମାନ ଅଧିକାର ଥିଲା । ସେକାଳରେ ପର୍ଦ୍ଦାପ୍ରଥା ନ ଥିଲା । ତେଣୁ ନାରୀମାନେ ଗୃହକୋଣବନ୍ଦିନୀ ନ ଥିଲେ । ବାଲ୍ୟବିବାହ ପ୍ରଥା ବୈଦିକଯୁଗରେ ସ୍ଥାନ ପାଇ ନ ଥାଏ । ନାରୀମାନେ ଶିକ୍ଷାଲାଭ ପାଇଁ ସୁଯୋଗ ପାଉଥିଲେ । ଆଧ୍ୟାତ୍ମିକ କ୍ଷେତ୍ରରେ ପ୍ରତିଭା ପ୍ରଦର୍ଶନ ପାଇଁ ବୈଦିକ ନାରୀମାନଙ୍କର ସାମର୍ଥ୍ୟ ଥିଲା । ସୂକ୍ତ ରଚନା ପାଇଁ ଋଷିମାନଙ୍କ ପରି ସେକାଳର ଋଷିପ୍ରାଣା ନାରୀମାନେ ମଧ୍ୟ କୃତିତ୍ୱ ଦେଖାଇଥିଲେ । ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ଅପାଲା, ବିଶ୍ୱବାରା ଓ ଘୋଷା ।

ଋକ୍ ବୈଦିକ ସମାଜରେ ଜାତିପ୍ରଥା ନ ଥିଲା । ଆର୍ଯ୍ୟ ସନ୍ତାନମାନେ ସମସ୍ତେ ଥିଲେ ସମାନ । ସବୁ ପ୍ରକାର କାର୍ଯ୍ୟ ପାଇଁ ସେମାନେ ସକ୍ଷମ ଥିଲେ । ଧର୍ମ କାର୍ଯ୍ୟ, ଯୁଦ୍ଧ କାର୍ଯ୍ୟ, କୃଷି ଓ ବାଣିଜ୍ୟ, ତଥା ସାମାଜିକ ସେବାକାର୍ଯ୍ୟ ପାଇଁ ସମସ୍ତେ ସମାନ ଭାବରେ ପ୍ରସ୍ତୁତ ଥିଲେ । ତେଣୁ, ଆଦିଯୁଗର ବୈଦିକ ସମାଜ ଥିଲା ଭେଦାଭେଦବିହୀନ ମାନବ ସମାଜ ।

କିନ୍ତୁ କାଳକ୍ରମେ ସେହି ଉନ୍ନତ ସାମାଜିକ ଅବସ୍ଥାରେ ପରିବର୍ତ୍ତନ ଦେଖାଦେଲା । ମନୁଷ୍ୟର କାର୍ଯ୍ୟ ଅନୁସାରେ ଶ୍ରେଣୀବିଭାଗ ସୃଷ୍ଟି ହେଲା । ଯେଉଁମାନେ ଯାଗ ଯଜ୍ଞ ଓ ଆରାଧନା କର୍ମରେ ନିପୁଣତା ଲାଭ କଲେ ସେମାନେ ବ୍ରାହ୍ମଣ ନାମରେ କଥିତ ହେଲେ । ବେଦ, ବେଦାଙ୍ଗ ଇତ୍ୟାଦି ସେମାନେ ବଂଶାନୁକ୍ରମେ ମୁଖସ୍ଥ ରଖି ପାରିଲେ । ଯେଉଁମାନେ ଅସ୍ତ୍ରଶସ୍ତ୍ର ଚାଳନା ଓ ଯୁଦ୍ଧ କାର୍ଯ୍ୟରେ ଦକ୍ଷତାଲାଭ କଲେ ସେମାନଙ୍କୁ କ୍ଷତ୍ରିୟ ବୋଲି କୁହାଗଲା । ସେମାନେ ରାଜକାର୍ଯ୍ୟ ପାଇଁ ମଧ୍ୟ ଉପଯୁକ୍ତ ବିବେଚିତ ହେଲେ । କୃଷି ଓ ବାଣିଜ୍ୟ ବ୍ୟବସାୟରେ ଲିପ୍ତ ଥିବା ଆର୍ଯ୍ୟମାନଙ୍କୁ ବୈଶ୍ୟ ନାମରେ ଆଖ୍ୟାୟିତ କରାଗଲା । ସେମାନେ ଅର୍ଥନୈତିକ କ୍ଷେତ୍ରରେ ବଂଶାନୁକ୍ରମେ ଦକ୍ଷତା ହାସଲ କଲେ ।

ଶେଷରେ, ଯେଉଁମାନେ ସାମାଜିକ ସେବାକାର୍ଯ୍ୟରେ ନିଯୁକ୍ତ ରହିଲେ ସେମାନେ ଶୂଦ୍ର ନାମରେ ପରିଚିତ ହେଲେ ।

କାଳକ୍ରମେ କର୍ମଭିତ୍ତିକ ଏହି ପ୍ରକାର ଚାରିବର୍ଣ୍ଣର ଲୋକଙ୍କ ମଧ୍ୟରେ ବିଭାଜନ ରେଖା ଦେଖାଦେଲା । ପ୍ରଥମେ ପ୍ରଥମେ ନିଜ ନିଜର ପ୍ରବୃତ୍ତି ବା ଇଚ୍ଛା ଅନୁଯାୟୀ ଆର୍ଯ୍ୟମାନେ କର୍ମ ନିରୂପଣ କରୁଥିଲେ । ପରେ ପରେ, ସେହି କର୍ମମାନ ବଂଶାନୁକ୍ରମିକ କର୍ମରେ ପରିଣତ ହେଲା । ବ୍ରାହ୍ମଣର ପୁତ୍ର ବ୍ରାହ୍ମଣ, କ୍ଷତ୍ରିୟ ସନ୍ତାନ କ୍ଷତ୍ରିୟ, ବୈଶ୍ୟର ପୁତ୍ର ବୈଶ୍ୟ ଓ ଶୂଦ୍ରର ସନ୍ତାନ ଶୂଦ୍ର ରୂପେ କାର୍ଯ୍ୟ କରିବାକୁ ଲାଗିଲେ । ପରିଣାମସ୍ୱରୂପ, ଆର୍ଯ୍ୟ ସମାଜରେ ଚାରିଗୋଟି ମୁଖ୍ୟ ଜାତିର ଉତ୍ପତ୍ତି ଘଟିଲା । ଜାତି ଜାତି ମଧ୍ୟରେ ବୈବାହିକ ସମ୍ପର୍କ ଛିନ୍ନ ହୋଇଯିବା ଫଳରେ ଜାତିପ୍ରଥା ବିଧିବଦ୍ଧ ଆକାର ଧାରଣ କଲା । ଶେଷରେ ପୁଣି ସେହି ଚାରିଜାତି ମଧ୍ୟରେ ନାନା ପ୍ରକାର ଉପଜାତିଗୁଡ଼ିକର ସୃଷ୍ଟି ହେଲା । ଫଳତଃ, ଜାତିପ୍ରଥା ନାମକ ଗୋଟିଏ ଅଦ୍ଭୁତ ସାମାଜିକ ବ୍ୟବସ୍ଥା ଭାରତୀୟ ସମାଜରେ ସୁଦୃଢ଼ ଆକାର ଧାରଣ କଲା ।

**ଅର୍ଥନୈତିକ ଅବସ୍ଥା**—ବୈଦିକ ସମାଜ ମୁଖ୍ୟତଃ ଗ୍ରାମ୍ୟ ସମାଜ ଥିଲା । ଆର୍ଯ୍ୟମାନେ ସୁନ୍ଦର ପ୍ରାକୃତିକ ପରିବେଶ ଉପଭୋଗ କରିବାକୁ ଭଲ ପାଉଥିଲେ । ନଦୀ ନଦୀର ଉର୍ବର ଉପତ୍ୟକାରେ ଗ୍ରାମ ସ୍ଥାପନ କରି ସେମାନେ କୃଷି ଓ ପଶୁପାଳନ ପ୍ରତି ଅଧିକତର ଗୁରୁତ୍ୱ ଦେଉଥିଲେ । ଶସ୍ୟକ୍ଷେତ୍ର ଓ ଗୋଚର ଭୂମି ଦ୍ୱାରା ପ୍ରତ୍ୟେକ ଗ୍ରାମ ପରିବେଷ୍ଟିତ ଥାଏ । ସେ ଯୁଗରେ ସୈନ୍ଧବ-ଗାଙ୍ଗେୟ ଉପତ୍ୟକାରେ କୃଷି ଉପଯୋଗୀ ସ୍ଥାନର ଅଭାବ ନ ଥାଏ । ଫଳରେ ପ୍ରଚୁର ଶସ୍ୟ ଉତ୍ପାଦନ ଦ୍ୱାରା ଆର୍ଯ୍ୟମାନେ ଆର୍ଥିକ ଦୃଷ୍ଟିରୁ ଉନ୍ନତ ଥିଲେ । ସେ ଯୁଗର ଜନସଂଖ୍ୟା ଦୃଷ୍ଟିରୁ ଶସ୍ୟଶ୍ୟାମଳା ଭୂମିର ପରିମାଣ ଯଥେଷ୍ଟ ଥିଲା । ତେଣୁ କୃଷି ପ୍ରଧାନ ଦେଶର କର୍ମଠ ଓ ପରିଶ୍ରମୀ ଅଧିବାସୀ ରୂପେ ଆର୍ଯ୍ୟମାନେ କୃଷି କାର୍ଯ୍ୟରେ ସେମାନଙ୍କର ପ୍ରଭୂତ ଦକ୍ଷତା ଦେଖାଇଥିଲେ ।

ଆର୍ଯ୍ୟଜାତିର ଖାଦ୍ୟଶସ୍ୟ ମଧ୍ୟରେ ଧାନ ଓ ଯବ ଥିଲା ପ୍ରଧାନ । ଗୋ-ସେବା ଓ ଗୋ-ପାଳନ ପ୍ରତି ସେମାନଙ୍କର ଯଥେଷ୍ଟ ଆନ୍ତରିକତା ଥିଲା । ଗୋ-ସମ୍ପଦର ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ଦୁଗ୍ଧ ଓ ଘୃତ ଥିଲା ସେମାନଙ୍କର ପ୍ରିୟ ଖାଦ୍ୟ । ସେଥିସଙ୍ଗେ, ଅରଣ୍ୟ ପରିବେଷ୍ଟିତ ଗ୍ରାମଗୁଡ଼ିକରେ ପଶୁ ପକ୍ଷୀ ମାଂସର ଅଭାବ ନ ଥିଲା । ଆର୍ଯ୍ୟମାନେ ମାଂସ ଓ ମତ୍ସ୍ୟ ଭକ୍ଷଣ ଭଲ ପାଉଥିଲେ । ନାନା

ପ୍ରକାର ଫଳ ଉତ୍ପାଦନ ସେକାଳରେ ଜଣାଥିଲା । ଆର୍ଯ୍ୟ ମହିଳାମାନେ ବିଭିନ୍ନ ପ୍ରକାର ଖାଦ୍ୟପେୟ ପ୍ରସ୍ତୁତ କରିବାକୁ ଜାଣିଥିଲେ । କାଳକ୍ରମେ ଖାଦ୍ୟପେୟ ଉପରେ କେତେଗୁଡ଼ିଏ ସାମାଜିକ ନିୟମ ପ୍ରଚଳିତ ହୋଇଥିଲା । ଗୋ-ବଧ ନିଷିଦ୍ଧ ହୋଇ ଯାଇଥିଲା । ସେହିପରି ଗ୍ରୀଷ୍ମପ୍ରଧାନ ଦେଶରେ ଶାରୀରିକ ହିତ ଦୃଷ୍ଟିରୁ ସୁରାପାନ ମଧ୍ୟ ନିନ୍ଦିତ ହେଲା । କେବଳ ଧର୍ମ ଉତ୍ସବରେ ସୋମରସ ନାମକ ସୁରାପାନ କରିବା ପାଇଁ ଅଧିକାର ରହିଲା ।

ଆର୍ଯ୍ୟମାନେ ବହୁ ପ୍ରକାର ହସ୍ତଶିଳ୍ପ କର୍ମରେ ନିପୁଣ ଥିଲେ । ଦୈନନ୍ଦିନ ବ୍ୟବହାର ପାଇଁ ସେମାନେ ଭିନ୍ନ ଭିନ୍ନ ଆବଶ୍ୟକୀୟ ସାମଗ୍ରୀମାନ ତିଆରି କରୁଥିଲେ । ଧାତୁ ନିର୍ମିତ ପଦାର୍ଥଗୁଡ଼ିକ ବହୁଳ ଭାବରେ ପ୍ରଚଳିତ ଥାଏ । ଆର୍ଯ୍ୟ ସମାଜରେ ଅଳଙ୍କାର ପ୍ରତି ନରନାରୀ ଉଭୟଙ୍କର ପ୍ରବଳ ଆଗ୍ରହ ଥାଏ । ତେଣୁ କାରିଗରମାନେ ଆକର୍ଷଣୀୟ ଅଳଙ୍କାରମାନ ତିଆରି କରୁଥିଲେ । ଉନ୍ନତ ଧରଣର ସୂକ୍ଷ୍ମ ବସ୍ତ୍ର, ସୁନାର ସୁନ୍ଦର ସୂଚୀକାର୍ଯ୍ୟ ଖଚିତ ପୋଷାକ ପରିଚ୍ଛଦ ଆର୍ଯ୍ୟମାନେ ବ୍ୟବହାର କରୁଥିଲେ । ଅବଶ୍ୟ, ମୁନି ଋଷି ଓ ଧର୍ମଯାଜକ ସମ୍ପ୍ରଦାୟର ଲୋକେ ସରଳ ବସ୍ତ୍ର ପିନ୍ଧୁଥିଲେ । ବଣିକମାନେ ଦେଶର ସବୁ ସ୍ଥାନକୁ ଶିଳ୍ପଜାତ ପଦାର୍ଥମାନ ନେଇ ଯାଉଥିଲେ । ଆଭ୍ୟନ୍ତରୀଣ ବାଣିଜ୍ୟ ବ୍ୟବସାୟରେ ଲୋକ-ମାନେ ସୁଦକ୍ଷ ଥିଲେ ।

ବୈଦିକ ସାହିତ୍ୟରେ ଥିବା ବର୍ଣ୍ଣନାଗୁଡ଼ିକରୁ ଜଣାଯାଏ ଯେ ଆର୍ଯ୍ୟମାନେ ନାନା ପ୍ରକାର ଆମୋଦପ୍ରମୋଦ, କ୍ରୀଡ଼ା, ନୃତ୍ୟ ଗୀତ, ରଥାରୋହୀ ଓ ଅଶ୍ୱାରୋହୀମାନଙ୍କ ମଧ୍ୟରେ ଦୌଡ଼ ପ୍ରତିଯୋଗିତା, ବୀଣା, ବଂଶୀ ଓ ଦୁନ୍ଦୁଭି ବାଦନ ପ୍ରଭୃତି ଭଲ ପାଉଥିଲେ । ଆର୍ଥିକ ସ୍ୱଚ୍ଛଳତା ଯୋଗୁଁ ଏପରି ବିଳାସ-ବ୍ୟସନ ପାଇଁ ସେ ଯୁଗର ସମାଜରେ ଅବକାଶ ଥିଲା ।

**ରାଜନୈତିକ ସଙ୍ଗଠନ**—ଉନ୍ନତ ରାଜନୀତି ପ୍ରତି ଆର୍ଯ୍ୟମାନେ ପ୍ରଥମରୁ ସଚେତନ ଥିଲେ । ସମାଜର ନୀତି ନିଷ୍ଠା ଓ ସୁଖ ଶାନ୍ତି ପାଇଁ ଉପଯୁକ୍ତ ରାଜନୈତିକ ସଙ୍ଗଠନ ଆବଶ୍ୟକ ବୋଲି ସେମାନେ ହୃଦୟଙ୍ଗମ କରିଥିଲେ । ସେଥିପାଇଁ ସାଧାରଣ ଗ୍ରାମ୍ୟ ସ୍ତରରୁ ଉଚ୍ଚତର ରାଷ୍ଟ୍ରୀୟ ସ୍ତର ପର୍ଯ୍ୟନ୍ତ ସେମାନେ ସଙ୍ଗଠିତ ଅବସ୍ଥାରେ ରହିବାକୁ ଉଦ୍ୟମ କରିଥିଲେ ଓ ସେଥିରେ ସଫଳ ହୋଇଥିଲେ ।

ଆର୍ଯ୍ୟମାନଙ୍କ ଗ୍ରାମଗୁଡ଼ିକ ଥିଲା ରାଜ୍ୟର ମୂଳଭିତ୍ତି । କେତେଗୁଡ଼ିଏ ପରିବାରକୁ ନେଇ ଗୋଟିଏ ଗୋଟିଏ ଗ୍ରାମ ଗଠିତ ହେଉଥିଲା । ଗ୍ରାମର ମୁଖ୍ୟଙ୍କୁ 'ଗ୍ରାମଣୀ' ବୋଲି କୁହାଯାଉଥିଲା । ଅନେକଗୁଡ଼ିଏ ଗ୍ରାମକୁ ନେଇ ଗୋଟିଏ ଗୋଟିଏ ଅଞ୍ଚଳ ବା 'ବିଶ୍' ସ୍ଥାପିତ ହେଉଥିଲା । 'ବିଶ୍'ର ମୁଖ୍ୟ ପରିଚାଳକଙ୍କୁ 'ବିଶ୍‌ପତି' ଆଖ୍ୟା ମିଳୁଥାଏ । 'ବିଶ୍' ଅପେକ୍ଷା ବୃହତ୍ତର ଅଞ୍ଚଳକୁ କୁହାଯାଉଥାଏ 'ଜନ' । ପ୍ରତ୍ୟେକ 'ଜନ'ର ପରିଚାଳନା ପାଇଁ ବ୍ୟବସ୍ଥା ଥାଏ । ଶେଷରେ ସର୍ବବୃହତ୍ ରାଜନୈତିକ ସଂଗଠନ ଥିଲା 'ରାଷ୍ଟ୍ର' । ରାଷ୍ଟ୍ରର ଶାସକଙ୍କୁ 'ରାଜନ୍' ପଦବୀରେ ଭୂଷିତ କରାଯାଉଥିଲା । ପ୍ରତ୍ୟେକ ରାଜନ୍ ବା ରାଜାଙ୍କର ବିଧିବଦ୍ଧ ଅଭିଷେକ ଉତ୍ସବ ପାଳିତ ହେଉଥାଏ । ଦେଶ-ରକ୍ଷା ଓ ପ୍ରଜାଙ୍କର ହିତସାଧନ ଥିଲା ରାଜାଙ୍କର ପ୍ରଧାନ କାର୍ଯ୍ୟ । ଶତ୍ରୁର ପ୍ରତିରୋଧ ପାଇଁ ରାଜାଙ୍କର ସୁଗଠିତ ସୈନ୍ୟବାହିନୀ ଥାଏ । ପ୍ରଜାମାନେ ରାଜଭକ୍ତିରେ ବିଶ୍ୱାସ ରଖୁଥିଲେ । ସେମାନେ ରାଜ୍ୟ ଶାସନ ପାଇଁ କର ପ୍ରଦାନ କରିବା କାର୍ଯ୍ୟକୁ ଉଚିତ ମନେ କରୁଥିଲେ । ରାଜାଙ୍କର ରାଜଧାନୀ, ରାଜପ୍ରାସାଦ, ସିଂହାସନ, ରାଜଦଣ୍ଡ, ରାଜମୁକୁଟ ଓ ରାଜ ଦରବାର ଇତ୍ୟାଦି ଯଥାଯୋଗ୍ୟ ଆକାରରେ ରହିଥାଏ । ଯୁଦ୍ଧ ଓ ଶାନ୍ତିରକ୍ଷା ବ୍ୟତୀତ ରାଜାଙ୍କୁ ସର୍ବପ୍ରଧାନ ବିଚାରପତି ଭାବେ ଦାୟିତ୍ୱ ବହନ କରିବାକୁ ହେଉଥାଏ । ଅପରାଧୀମାନଙ୍କୁ ସମୁଚିତ ଦଣ୍ଡ ଦେବାପାଇଁ ତାଙ୍କର ପୂର୍ଣ୍ଣ ଅଧିକାର ଥିଲା । ରାଜାଙ୍କୁ ସାହାଯ୍ୟ କରିବା ପାଇଁ ମନ୍ତ୍ରୀ ଓ କର୍ମଚାରୀମାନେ ନିଯୁକ୍ତ ହେଉଥିଲେ । ଯୁଦ୍ଧକାର୍ଯ୍ୟ ପରିଚାଳନା ପାଇଁ ରାଜାଙ୍କ ଅଧୀନରେ ପ୍ରଧାନ ସେନାପତି ରହିଥିଲେ ।

ବୈଦିକ ଯୁଗର ରାଜାମାନେ ସ୍ୱେଚ୍ଛାଚାରୀ ନ ଥିଲେ । ଧର୍ମ ଓ ନୀତି ଅନୁଯାୟୀ ଶାସନ କରିବାକୁ ସେମାନେ ପ୍ରାୟତଃ ବାଧ୍ୟ ଥିଲେ । ମୁନି ଋଷିମାନଙ୍କର ଉପଦେଶ, ପୁରୋହିତମାନଙ୍କର ପରାମର୍ଶ ଓ ଦେଶବାସୀଙ୍କ ମତାମତ ପ୍ରତି ରାଜାଙ୍କର ଦୃଷ୍ଟି ସର୍ବଦା ରହିଥାଏ । ରାଜାଙ୍କ ମୃତ୍ୟୁପରେ ସାଧାରଣତଃ ତାଙ୍କ ଜ୍ୟେଷ୍ଠପୁତ୍ର ସିଂହାସନ ଆରୋହଣ କରୁଥିଲେ । କୌଣସି କୌଣସି ସ୍ଥାନରେ ରାଜ୍ୟବାସୀମାନେ ସେମାନଙ୍କ ରାଜାଙ୍କୁ ମନୋନୀତ କରୁଥିଲେ । ପରିସ୍ଥିତି ଅନୁଯାୟୀ ଅନୁପଯୁକ୍ତ ରାଜାମାନେ ସିଂହାସନ ତ୍ୟାଗ କରିବାକୁ ବାଧ୍ୟ ହେଉଥିଲେ । ଧର୍ମ ଭୟ ପାଇଁ ବୈଦିକ ରାଜାମାନେ ଅତ୍ୟାଚାରୀ ହୋଇପାରୁ ନ ଥିଲେ କିମ୍ବା ଅନ୍ୟାୟ କାର୍ଯ୍ୟ ପାଇଁ ସାହସ କରୁ ନ ଥିଲେ । ପ୍ରଜାରଞ୍ଜନ

ଥିଲା ରାଜାଙ୍କର ନୀତିଗତ କର୍ତ୍ତବ୍ୟ । ସେଥିରେ ବିଫଳ ହେଲେ କେହି କେହି ରାଜା ସ୍ୱେଚ୍ଛାକୃତଭାବେ ସିଂହାସନ ଛାଡ଼ୁଥିଲେ ।

ବୈଦିକ ସାହିତ୍ୟରୁ ଜଣାଯାଏ ଯେ କୌଣସି କୌଣସି ରାଜ୍ୟରେ ରାଜାଙ୍କୁ ପରାମର୍ଶ ଦେବାପାଇଁ ପ୍ରଜାଙ୍କ ଦ୍ୱାରା ଗଠିତ 'ସଭା' ଓ 'ସମିତି' ନାମଧେୟ ଅନୁଷ୍ଠାନ ରହିଥାଏ । ବିଜ୍ଞ ଓ ବୟୋବୃଦ୍ଧ ବ୍ୟକ୍ତିମାନେ ସେଥିରେ ସ୍ଥାନ ପାଉଥିଲେ ।

ଏକଥା ମଧ୍ୟ ଜଣାପଡ଼େ ଯେ କୌଣସି କୌଣସି ସ୍ଥାନରେ ସେକାଳରେ ଗଣତାନ୍ତ୍ରିକ ଭାବରେ ରାଜ୍ୟ ଶାସନ ହେଉଥାଏ । 'ଗଣ' ଓ 'ଗଣପତି' ପ୍ରଭୃତି ସଂଜ୍ଞା ସେତେବେଳେ ପ୍ରଚଳିତ ଥିବାର ଦେଖାଯାଏ ।

ଆର୍ଯ୍ୟ ଜାତିର ବିସ୍ତାର ବୃଦ୍ଧି ସଙ୍ଗେ କାଳକ୍ରମେ ରାଜ୍ୟଗୁଡ଼ିକର ଆକାର ବୃଦ୍ଧି ଘଟିଥିଲା । ଶକ୍ତିଶାଳୀ ରାଜାମାନେ ନିଜ ନିଜର ରାଜ୍ୟ ବୃଦ୍ଧି ପାଇଁ ଚେଷ୍ଟା କରିଥିଲେ । ବୃହଦାକାର ରାଜ୍ୟର ରାଜାମାନେ ରାଜାଧିରାଜ, ସମ୍ରାଟ ଓ ଏକରାଟ ପ୍ରଭୃତି ଆଖ୍ୟାରେ ଭୂଷିତ ହେଉଥିଲେ । ନିଜର ରାଜକୀୟ ଶକ୍ତିର ପ୍ରଦର୍ଶନ ପାଇଁ ସେମାନେ ରାଜସୂୟ ଓ ଅଶ୍ୱମେଧ ଯଜ୍ଞ ସମ୍ପାଦନ କରୁଥିଲେ ।

କ୍ଷମତା ଓ ପ୍ରତିପତ୍ତି ବୃଦ୍ଧି ସତ୍ତ୍ୱେ ଆର୍ଯ୍ୟ ନରପତିମାନେ ସାଧାରଣତଃ ସ୍ୱେଚ୍ଛାଚାରୀ ଭାବରେ ଶାସନ କରି ନ ଥିଲେ । କାରଣ, ବୈଦିକ ଯୁଗର ନୈତିକ ଆଦର୍ଶ, ଧର୍ମ ବିଶ୍ୱାସ ଓ ଅନ୍ୟାୟ ଅନୀତିର ଭୟାବହ ପରିଣାମ ଭୟ ସେମାନଙ୍କୁ ନୀତି ପରାୟଣ ହେବାକୁ ବାଧ୍ୟ କରିଥିଲା ।

**ବୈଦିକ ଯୁଗର ଅବସାନ**—ବୈଦିକ ଯୁଗର ଶେଷବେଳକୁ ଧର୍ମ ଓ ସମାଜ କ୍ଷେତ୍ରରେ ବହୁ ପ୍ରକାର ପରିବର୍ତ୍ତନ ଦେଖା ଦେଇଥିଲା । ଋକ୍‌ବେଦୀୟ ସରଳ ଧର୍ମ ବିଶ୍ୱାସ ପରିବର୍ତ୍ତେ ଜଟିଳ କ୍ରିୟାକାଣ୍ଡଗୁଡ଼ିକର ଉତ୍ପତ୍ତି ଘଟିଥିଲା । ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁବଳି ପ୍ରଥା ପ୍ରଚଳିତ ହେଲା । ପୂଜା ପଦ୍ଧତି ସହିତ ଅନ୍ଧ ବିଶ୍ୱାସ ଓ କୁସଂସ୍କାରମାନ ଜଡ଼ିତ ହେଲା । ସେଥିସଙ୍ଗେ ପୁରୋହିତ ସଂପ୍ରଦାୟର ପ୍ରାଧାନ୍ୟ ବଢ଼ି ଚାଲିଲା ।

ତେଣେ ସମାଜରେ ଜାତିପ୍ରଥା କଠୋର ଆକାର ଧାରଣ କଲା । ଉଚ୍ଚ ନୀଚ ଭେଦଭାବ ବୃଦ୍ଧି ପାଇଲା । ମାନବୀୟ ଐକ୍ୟ ପରିବର୍ତ୍ତେ ଜାତିଗତ ପାର୍ଥକ୍ୟ ଦ୍ୱାରା ସାମାଜିକ ଅନୈକ୍ୟ ବ୍ୟାପକ ଆକାର ଧାରଣ କଲା ।

ବୈଦିକ ଯୁଗର ଅବସାନ ପରେ ଧର୍ମ ଓ ସମାଜର ଏହିପରି ବିପର୍ଯ୍ୟୟ ଅନେକ କାଳ ପାଇଁ ଲାଗି ରହିଲା । ଶେଷରେ ସେପରି ଅଧୋଗତି ବିରୁଦ୍ଧରେ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମନରେ ପ୍ରତିକ୍ରିୟା ପ୍ରକାଶ ପାଇଲା । ସେହି ପ୍ରତିକ୍ରିୟା ଫଳରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ବେଳକୁ ଭାରତରେ ଜୈନ ଓ ବୌଦ୍ଧ ଆନ୍ଦୋଳନ ଆତ୍ମପ୍ରକାଶ କଲା ।

ଧର୍ମୀୟ ବିଶ୍ୱାସ ଓ ସାମାଜିକ ଜୀବନର ପରିବର୍ତ୍ତନ ଓ ଅଧୋଗତି ସତ୍ତ୍ୱେ, ବୈଦିକ ସଂସ୍କୃତିର ତାତ୍ତ୍ୱିକ ମହତ୍ତ୍ୱମାନ ଭାରତୀୟ ଭାବଧାରାରେ ବଦ୍ଧମୂଳ ଭାବରେ ଚିରସ୍ଥାୟୀ ରହିଲା । ସୃଷ୍ଟି, ସ୍ଥିତି ଓ ଲୟର ନିଗୂଢ଼ ରହସ୍ୟ, ଆତ୍ମା ଓ ପରମାତ୍ମା ମଧ୍ୟରେ ଥିବା ଅବିଚ୍ଛେଦ୍ୟ ସମ୍ପର୍କ, କର୍ମବାଦ ଓ ପୁନର୍ଜନ୍ମ, ପାପ ପୁଣ୍ୟର ପରିଣାମ, ମୋକ୍ଷ ଲାଭର ମାର୍ଗ ଇତ୍ୟାଦି ବିଷୟରେ ବୈଦିକ ଓ ଉପନିଷଦୀୟ ଚିନ୍ତାଧାରା ଭବିଷ୍ୟତ କାଳ ପାଇଁ ଚିରନ୍ତନ ଓ ସନାତନ ଭାବରେ ମନୁଷ୍ୟ ମନରେ ଅଙ୍କିତ ହୋଇ ରହିଲା । ସେଥିପାଇଁ ବୈଦିକ ସଂସ୍କୃତି ଭାରତୀୟ ସଂସ୍କୃତିର ଶାଶ୍ୱତ ପ୍ରାଣପିଣ୍ଡ ରୂପେ ବିବେଚିତ ହୋଇ ଆସିଛି ।

## ତୃତୀୟ ଅଧ୍ୟାୟ

# ଜୈନ ଓ ବୌଦ୍ଧ ଧର୍ମ

## ( Jainism and Buddhism )

### ଜୈନ ଓ ବୌଦ୍ଧଧର୍ମର ଉତ୍ଥାନର କାରଣ

ପ୍ରାଗୈତିହାସିକ ସିନ୍ଧୁ ସଭ୍ୟତା ପରେ ଭାରତରେ ଆର୍ଯ୍ୟ ସଭ୍ୟତା ବିସ୍ତାର ଲାଭ କରିଥିଲା । ଆର୍ଯ୍ୟମାନେ ପୃଥିବୀର ଏକ ସୁସଭ୍ୟ ଓ ସୁମହାନ ମନୁଷ୍ୟ ଗୋଷ୍ଠୀ ରୂପେ ଇତିହାସ-ପ୍ରସିଦ୍ଧ । ସେମାନଙ୍କ ରଚିତ ବେଦ ହେଉଛି ପ୍ରାଚୀନ ବିଶ୍ୱର ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ । ସେମାନଙ୍କ ଧର୍ମ ଥିଲା ପ୍ରାଚୀନ ମନୁଷ୍ୟଜାତିର ସର୍ବାଧିକ ଉନ୍ନତ ଧର୍ମ । ସେମାନଙ୍କ ସମାଜ ଥିଲା ଆଦର୍ଶସ୍ଥାନୀୟ ।

ଆଦି ଆର୍ଯ୍ୟମାନେ ପ୍ରକୃତି ଉପାସକ ଥିଲେ । ସେଥିସଙ୍ଗେ ପ୍ରକୃତିର ଊର୍ଦ୍ଧ୍ୱରେ ଥିବା ସର୍ବଶକ୍ତିମାନ୍ ସ୍ରଷ୍ଟା ବା ପରମେଶ୍ୱରଙ୍କ ମହତ୍ତ୍ୱ ଉପରେ ସେମାନେ ଅଗାଧ ବିଶ୍ୱାସ ରଖିଥିଲେ । ସେ ସମୟର ଧର୍ମକୁ ବୈଦିକ ବ୍ରାହ୍ମଣ୍ୟ ଧର୍ମ ବୋଲି କୁହାଯାଏ । ଉଚ୍ଚତର ଆଧ୍ୟାତ୍ମିକ ଦର୍ଶନ ସହ ସେହି ଧର୍ମ ବିକାଶ ଲାଭ କରିଥିଲା । ଋଗ୍‌ବୈଦିକ ଯୁଗର ସାମାଜିକ ଜୀବନ ସୁସ୍ଥ, ସବଳ ଓ ସୁଖମୟ ଥିଲା । ସମାଜରେ ଜାତିପ୍ରଥା ନ ଥିଲା । ଆର୍ଯ୍ୟମାନେ ସମସ୍ତେ ସମାନ ଥିଲେ ଓ ସବୁ ପ୍ରକାର କାର୍ଯ୍ୟ ସମାନ ଭାବରେ ସମ୍ପାଦନ କରିପାରୁଥିଲେ । ପୁଣ୍ୟମୟ ଜୀବନଯାପନ ଥିଲା ଆର୍ଯ୍ୟ ସମାଜର ଲକ୍ଷ୍ୟ ଓ ଆଦର୍ଶ ।

କାଳକ୍ରମେ ବୈଦିକ ଯୁଗର ଧର୍ମ ଓ ସମାଜ ଜଟିଳ ଓ ବିକୃତ ଆକାର ଧାରଣ କରିଥିଲା । କ୍ରମାନ୍ୱୟ ଅବନତି ହୋଇ ଶେଷରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ବେଳକୁ ଭାରତୀୟ ଧର୍ମୀୟ ବିଶ୍ୱାସ ଓ ସାମାଜିକ ଜୀବନ ଅଧୋଗତିର ଚରମ ସୀମାରେ ପହଞ୍ଚି ଯାଇଥିଲା ।

ସେତେବେଳକୁ ଧର୍ମର ଉଚ୍ଚତର ଆଦର୍ଶମାନ ମ୍ଳାନ ହୋଇ ଯାଇଥାଏ । ନାନା ପ୍ରକାର କ୍ରିୟାକାଣ୍ଡ ପ୍ରତି ଲୋକଙ୍କର ବିଶ୍ୱାସ ଜନ୍ମି ଯାଇଥାଏ । ସେହିସବୁ କ୍ରିୟାକାଣ୍ଡ ବସ୍ତୁତଃ ଅବାନ୍ତର ଓ ମୂଲ୍ୟହୀନ ଥିଲା । ସେଥିସଙ୍ଗେ କୁସଂସ୍କାର ଓ

ଅନ୍ଧବିଶ୍ୱାସମାନ ବ୍ୟାପି ଯାଇଥାଏ । ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭକ୍ତି ଓ ଆନ୍ତରିକ ଆରାଧନା ପରିବର୍ତ୍ତେ ପଶୁବଳି ଓ ଜୀବହତ୍ୟାର ଆବଶ୍ୟକତା ପ୍ରତି ବିଶ୍ୱାସ ଆସି ଯାଇଥାଏ । ଫଳରେ, ଦେଶର ଗୃହଆଡ଼େ ବଳିପ୍ରଥା ବ୍ୟାପକ ଆକାର ଧାରଣ କରିଥାଏ । ଜୀବହିଂସା ପ୍ରତି ମନୁଷ୍ୟର କାତରତା ନ ଥାଏ । ମନୁଷ୍ୟର ଏପରି ମନୋଭାବ ପ୍ରକୃତ ଧର୍ମର ପରିପନ୍ଥୀ ଥାଏ । ତେଣେ, ନିଜର ସ୍ୱାର୍ଥ ପାଇଁ ପୁରୋହିତ ସଂପ୍ରଦାୟ ସବୁ ପ୍ରକାର ଧର୍ମକାର୍ଯ୍ୟ ଓ ପୂଜାପଦ୍ଧତିକୁ ନିଜ ହାତରେ କେନ୍ଦ୍ରୀଭୂତ କରିଥିଲେ । ବ୍ରାହ୍ମଣମାନଙ୍କ ସାହାଯ୍ୟ ବିନା ଅନ୍ୟମାନେ ଧର୍ମ ପାଳନ ପାଇଁ ଅସମର୍ଥ ଥିଲେ । ବେଦ, ବେଦାଙ୍ଗ ଓ ଉପନିଷଦ ପ୍ରଭୃତିର ଦାର୍ଶନିକ ତତ୍ତ୍ୱମାନ ଜନସାଧାରଣଙ୍କ ପାଖରୁ ଦୂରେଇ ଯାଇଥାଏ । ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ପ୍ରତି ଧର୍ମଯାଜକମାନଙ୍କର ଦୃଷ୍ଟି ନ ଥାଏ ।

ଧର୍ମର ଏହି ପ୍ରକାର ଅଧୋଗତି କାଳରେ ଭାରତୀୟ ସମାଜ ଚରମ ଦୁର୍ଗତି ମଧ୍ୟରେ ଗତି କରୁଥାଏ । ଋକ୍ ବୈଦିକଯୁଗର ସାମାଜିକ ଏକତା ସଂପୂର୍ଣ୍ଣଭାବେ ବିନଷ୍ଟ ହୋଇ ଯାଇଥାଏ । ଜାତି ଓ ଉପଜାତିଗୁଡ଼ିକର ଉତ୍ଥାନ ଫଳରେ ସମାଜରେ ଭେଦଭାବ ବଢ଼ି ଚାଲିଥାଏ । ତଥାକଥିତ ନୀଚ ସଂପ୍ରଦାୟର ଲୋକମାନଙ୍କୁ ଅନ୍ୟମାନେ ଘୃଣାଚକ୍ଷୁରେ ଦେଖୁଥାନ୍ତି । ସାମାଜିକ ମୂଲ୍ୟବୋଧ ଓ ମାନବୀୟ ଭ୍ରାତୃଭାବ ଲୋପ ପାଇଯାଇଥାଏ ।

ଏହିପରି ଅବସ୍ଥା ବିରୁଦ୍ଧରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଏକ ପ୍ରବଳ ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ପୁରୋହିତ ସମ୍ପ୍ରଦାୟର ପ୍ରାଧାନ୍ୟ, ଯୁକ୍ତିହୀନ ପୂଜାପଦ୍ଧତି, ଆଧ୍ୟାତ୍ମିକତାର ମୂଲ୍ୟ ହ୍ରାସ, ଅବାନ୍ତର ଉପଚାର, ମାନବିକତାର ବିଲୟ, ଅସ୍ପୃଶ୍ୟତା, ପଶୁହତ୍ୟା ଓ ଜୀବହିଂସା ପ୍ରଭୃତି ବିରୁଦ୍ଧରେ ମାନସିକ ଆଲୋଡ଼ନ ସୃଷ୍ଟି ହେଲା । ଏହି ପ୍ରତିକ୍ରିୟା ଓ ଆଲୋଡ଼ନ ମଧ୍ୟରୁ ଉତ୍ପତ୍ତି ଲାଭ କଲା ଜୈନ ଓ ବୌଦ୍ଧଧର୍ମ । ଏହି ଉଭୟ ଧର୍ମର ଉତ୍ଥାନ ଫଳରେ ଭାରତରେ ଏକ ଅଭିନବ ଧର୍ମୀୟ ଜାଗରଣ ଓ ସାମାଜିକ ଚେତନା ପ୍ରକାଶ ପାଇଥିଲା ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଥିଲା ଏକ ଯୁଗାନ୍ତକାରୀ ସମୟ । ସେହି ଶତାବ୍ଦୀରୁ ଭାରତରେ ଇତିହାସ ଯୁଗର ଆରମ୍ଭ ହୋଇଥିଲା । ତାହାର ପୂର୍ବବର୍ତ୍ତୀ ସମୟ ଥିଲା ପ୍ରାଗୈତିହାସିକ ଯୁଗ । ଦୁଇଜଣ ମହାପୁରୁଷଙ୍କର ଅଲୌକିକ ଜୀବନକୁ କେନ୍ଦ୍ରକରି ଐତିହାସିକ ଯୁଗ ଆତ୍ମପ୍ରକାଶ କରିଥିଲା ।

ସେମାନେ ଥିଲେ ଜୈନଧର୍ମର ପ୍ରବର୍ତ୍ତକ ମହାବୀର ଜିନ ଓ ବୌଦ୍ଧଧର୍ମ ପ୍ରବର୍ତ୍ତକ ଗୌତମ ବୁଦ୍ଧ ।

## ମହାବୀର ଜିନ

ମହାବୀର ଜିନ ହେଉଛନ୍ତି ଐତିହାସିକ ଜୈନଧର୍ମର ପ୍ରବର୍ତ୍ତକ । ତାହାଙ୍କ ମତାବଲମ୍ବୀମାନେ ଜୈନ ନାମରେ କଥିତ । ମହାବୀରଙ୍କ ଜନ୍ମର ଅନେକ ପୂର୍ବରୁ ଧର୍ମ ସଂସ୍କାର ପାଇଁ ଚିନ୍ତା ପ୍ରକାଶ ପାଇଥିଲା । ଜୈନମାନଙ୍କ ବିଶ୍ୱାସରେ ମହାବୀରଙ୍କ ପୂର୍ବରୁ ୨୩ ଜଣ ତୀର୍ଥଙ୍କର ବା 'ମୁକ୍ତି-ପଥ-ନିର୍ମାତା' ଜନ୍ମଲାଭ କରିଥିଲେ ଓ ସେମାନଙ୍କ ମତ ପ୍ରଚାର କରିଥିଲେ । ସେମାନଙ୍କ ମଧ୍ୟରେ ପ୍ରଥମ ତୀର୍ଥଙ୍କର ଥିଲେ ଋଷଭ ଦେବ ଓ ଶେଷ ତୀର୍ଥଙ୍କର ଥିଲେ ପାର୍ଶ୍ୱନାଥ । ପାର୍ଶ୍ୱନାଥଙ୍କ ପରେ ମହାବୀର ଜିନ ଚତୁର୍ବିଂଶ ବା ସର୍ବଶେଷ ତୀର୍ଥଙ୍କର ରୂପେ ଜନ୍ମଲାଭ କରିଥିଲେ ।

ମହାବୀର ଜିନଙ୍କ ପ୍ରଥମ ନାମ ଥିଲା ବର୍ଦ୍ଧମାନ । ସେ ପ୍ରାଚୀନ ବିଦେହ ରାଜ୍ୟର ରାଜଧାନୀ ବୈଶାଳୀ ନଗରୀର ଅଦୂରସ୍ଥ କୁନ୍ଦଗ୍ରାମ ବା କୁନ୍ଦପୁର ନାମକ ସ୍ଥାନରେ ଏକ ସମ୍ଭ୍ରାନ୍ତ କ୍ଷତ୍ରିୟକୁଳରେ ଜନ୍ମିଥିଲେ । ତାହାଙ୍କ ପିତା ସିଦ୍ଧାର୍ଥ ଥିଲେ ସେହି ସ୍ଥାନର ମୁଖ୍ୟ । ତାହାଙ୍କ ମାତା ତ୍ରିଶଳା ଥିଲେ ବୈଶାଳୀ ରାଜବଂଶର କନ୍ୟା । ବର୍ଦ୍ଧମାନଙ୍କ ଜନ୍ମ ତାରିଖ ଠିକ୍ ଭାବେ ଜଣାଯାଇ ନାହିଁ । କେତେକ ଐତିହାସିକଙ୍କ ମତରେ ସେ ଖ୍ରୀଷ୍ଟପୂର୍ବ ୫୪୦ରେ ଜନ୍ମଲାଭ କରିଥିଲେ । ସେ ୭୨ ବର୍ଷ ଜୀବନଧାରଣ ପରେ ଖ୍ରୀଷ୍ଟପୂର୍ବ ୪୬୮ରେ ପରଲୋକ ଗମନ କରିଥିଲେ । ଗୌତମ ବୁଦ୍ଧଙ୍କର ସେ ଥିଲେ ସମକାଳୀନ ମହାପୁରୁଷ ।

ଯୌବନକାଳରେ ବର୍ଦ୍ଧମାନ ଯଶୋଦା ନାମ୍ନୀ ଜଣେ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ଏକ କନ୍ୟା ସନ୍ତାନ ମଧ୍ୟ ଜନ୍ମିଥିଲା । ସମ୍ଭ୍ରାନ୍ତ-କୁଳର ଐଶ୍ୱର୍ଯ୍ୟ ଓ ଭୋଗବିଳାସ, ପାରିବାରିକ ଆକର୍ଷଣ ଏବଂ ସୁଖମୟ ଜୀବନଯାତ୍ରା ସତ୍ତ୍ୱେ ବର୍ଦ୍ଧମାନ ତ୍ୟାଗ ଓ ବୈରାଗ୍ୟ ଦିଗରେ ମନୋନିବେଶ କରିଥିଲେ । ଶେଷରେ ନିଜର ୩୦ ବର୍ଷ ବୟସରେ ସେ ସାଂସାରିକ ବନ୍ଧନ ଛିନ୍ନ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ ଦ୍ୱାରା ଗୃହତ୍ୟାଗ କରିଥିଲେ । ସେହି ସମୟରୁ ପ୍ରକୃତ ସତ୍ୟର ସନ୍ଧାନ ପାଇଁ ତାହାଙ୍କ ଜୀବନ ଉଦ୍ଦିଷ୍ଟ ହୋଇଥିଲା ।

ସନ୍ନ୍ୟାସ ଗ୍ରହଣ ପରେ ଦୀର୍ଘ ୧୨ ବର୍ଷ ସେ କଠୋର ତପସ୍ୟା ଓ ସାଧନାରେ ରତ ରହିଥିଲେ । ସେଥିସଙ୍ଗେ ସେ ନିଜର ଶରୀରକୁ ନାନା ପ୍ରକାର

ନିର୍ଯ୍ୟାତନା ଦେଇଥିଲେ । ପ୍ରବଳ ଗ୍ରୀଷ୍ମ ଓ ପ୍ରଚଣ୍ଡ ଶୀତରୁ ରକ୍ଷା ପାଇବା ପାଇଁ ସେ କୌଣସି ପ୍ରକାର ଉଦ୍ୟମ କରୁ ନ ଥିଲେ । କ୍ରମାଗତ ଅନାହାର ଦ୍ୱାରା ସେ କଙ୍କାଳସାର ହୋଇ ଯାଇଥିଲେ । ଶେଷରେ, ସନ୍ନ୍ୟାସ ଗ୍ରହଣର ତ୍ରୟୋଦଶ ବର୍ଷରେ, ବର୍ଦ୍ଧମାନ ଦିବ୍ୟଜ୍ଞାନ ଲାଭ କଲେ । ସେତେବେଳେ ତାଙ୍କର ବୟସ ହୋଇଥିଲା ୪୨ ବର୍ଷ ।

ବର୍ଦ୍ଧମାନଙ୍କ ଦିବ୍ୟଜ୍ଞାନପ୍ରାପ୍ତି 'କୈବଲ୍ୟ' ନାମରେ କଥିତ । କୈବଲ୍ୟ ଶବ୍ଦର ଅର୍ଥ ପରମ ଆଧ୍ୟାତ୍ମଜ୍ଞାନପ୍ରାପ୍ତି । ସେହି ସମୟରୁ ତାଙ୍କର ନାମ ହେଲା 'କେବଲୀନ' ବା ସର୍ବଜ୍ଞ । ସର୍ବପ୍ରକାର ଇନ୍ଦ୍ରିୟରିପୁ ଜୟ କରିଥିବାରୁ ସେ ହେଲେ ମହାବୀର ବା ସର୍ବଜୟୀ ଜିନ । ସେହି ମହାବୀର ଜିନ ନାମରେ ହିଁ ସେ ସର୍ବବନ୍ଦିତ ହେଲେ । ତାହାଙ୍କ ଶିଷ୍ୟମାନେ ଜୈନ ନାମରେ ଆଖ୍ୟାତ ହେଲେ ।

ତାହାପରେ, ଦୀର୍ଘ ୩୦ ବର୍ଷ ସମୟ ସେ ତାଙ୍କ ମତ ପ୍ରଚାର ପାଇଁ ଭ୍ରମଣ କରିଥିଲେ । ମଗଧ, ମିଥିଳା, ଶ୍ରାବସ୍ତୀ, ଚମ୍ପା, ବୈଶାଳୀ, ରାଜଗୃହ, କୋଶଳ ଓ ଅଙ୍ଗ ପ୍ରଭୃତି ସ୍ଥାନରେ ରାଜା, ପ୍ରଜା, ଜ୍ଞାନୀ, ଅଜ୍ଞ, ଧନୀ ଓ ନିର୍ଦ୍ଧନ ନିର୍ବିଶେଷରେ ଅସଂଖ୍ୟ ଲୋକ ତାଙ୍କର ମତ ଶ୍ରବଣ କରିଥିଲେ । ଜୈନଶାସ୍ତ୍ରରୁ ଜଣାଯାଏ ଯେ, ମହାବୀର ଜିନ କଳିଙ୍ଗ ରାଜ୍ୟରେ ଧର୍ମ ପ୍ରଚାର କରିବା ପାଇଁ କୁମାରୀ-କୁମାର ପାହାଡ଼ ଶିଖରକୁ ଆଗମନ କରିଥିଲେ । ଶେଷରେ ୭୨ ବର୍ଷ ବୟସରେ ରାଜଗୃହ ନିକଟସ୍ଥ ପାବା ନାମକ ସ୍ଥାନରେ ତାଙ୍କର ମହାପ୍ରୟାଣ ଘଟିଥିଲା ।

ଜିନଙ୍କ ଶିଷ୍ୟମାନଙ୍କୁ ନିର୍ଗ୍ରନ୍ଥ ବା ବନ୍ଧନମୁକ୍ତ ବୋଲି କୁହାଯାଏ । କିନ୍ତୁ ସେମାନେ ଜୈନ ନାମରେ ଅଧିକତର ପ୍ରସିଦ୍ଧ । ଜିନଙ୍କ ପ୍ରଚାରିତ ଧର୍ମ ଜୈନଧର୍ମ ନାମରେ ପରିଚିତ ।

## ଜୈନଧର୍ମ

ଜୈନଧର୍ମର ଉତ୍ଥାନ ଫଳରେ ତଦାନୀନ୍ତନ ଭାରତରେ ଗୋଟିଏ ନୂତନ ଆଧ୍ୟାତ୍ମିକ ଚେତନା ବିସ୍ତାରଲାଭ କରିଥିଲା । ପବିତ୍ର ଓ ନୀତିପୂର୍ଣ୍ଣ ଜୀବନଯାପନ ପାଇଁ ସେହି ଧର୍ମ ମନୁଷ୍ୟକୁ ମାର୍ଗ ଦେଖାଇଥିଲା । ମୂଲ୍ୟହୀନ ପୂଜାପଦ୍ଧତି ପରିବର୍ତ୍ତେ ଅନାସକ୍ତ, କାମନାହୀନ ଓ ନିଷ୍ପାପ ଜୀବନଧାରଣ ପାଇଁ ମନୁଷ୍ୟକୁ ଶିକ୍ଷାଦେବା ଥିଲା ଜୈନଧର୍ମର ଆଭିମୁଖ୍ୟ ।

**ନୀତି ଓ ମାର୍ଗ**—ମହାବୀର ଜିନଙ୍କ ପୂର୍ବବର୍ତ୍ତୀ ତୀର୍ଥଙ୍କର ପାର୍ଶ୍ୱନାଥ ମନୁଷ୍ୟର ଉନ୍ନତ ଜୀବନ ପାଇଁ ଚାରିଗୋଟି ନୀତି ନିରୂପଣ କରିଥିଲେ । ସେଗୁଡ଼ିକ ଥିଲ, ଅହିଂସା, ସତ୍ୟପରାୟଣତା, ଅଚୌର୍ଯ୍ୟ ଏବଂ ଅପରିଗ୍ରହ ବା ଅନାସକ୍ତି । ଏହି ଚାରି ନୀତି ସହିତ ମହାବୀର ପଞ୍ଚମ ନୀତି ଯୋଗ କରିଥିଲେ । ତାହାଥିଲା ବ୍ରହ୍ମଚର୍ଯ୍ୟ ବା ଜିତେନ୍ଦ୍ରିୟତା ।

ଏହି ପଞ୍ଚନୀତି ପାଳନ ସହିତ ମହାବୀର ମନୁଷ୍ୟକୁ ଆଧ୍ୟାତ୍ମିକ ପଥକୁ ଆଣିବା ପାଇଁ ତିନଗୋଟି ମାର୍ଗ ଦେଖାଇଥିଲେ । ତାହା ତ୍ରିରତ୍ନ ନାମରେ କଥିତ । ସେହି ତିନମାର୍ଗ ହେଲା ସତ୍ ବିଶ୍ୱାସ, ସତ୍ ଜ୍ଞାନ ଓ ସତ୍ କର୍ମ । ଏପରି ମାର୍ଗମାନ ଅନୁସରଣ କଲେ ମନୁଷ୍ୟର ଜୀବନ ହେବ ସତ୍ ଜୀବନ ।

ଉପରକଥିତ ନୀତି ଓ ମାର୍ଗ ସହିତ ଜୈନମାନେ ତିନଗୋଟି ମୌଳିକ ବିଶ୍ୱାସ ଉପରେ ଗୁରୁତ୍ୱ ଦେଇଥିଲେ । ସେଗୁଡ଼ିକ ଥିଲା କର୍ମବାଦ, ଅହିଂସା ଓ କୈବଲ୍ୟପ୍ରାପ୍ତି ।

**କର୍ମବାଦ**—ନିଜ ଦିବ୍ୟଜ୍ଞାନ ବଳରେ ମହାବୀର ଜିନ ମନୁଷ୍ୟ ଜୀବନର ରହସ୍ୟ ଉଦ୍ଘାଟନ କରିପାରିଥିଲେ । ମନୁଷ୍ୟର ସବୁ ପ୍ରକାର ସୁଖ ଦୁଃଖ କର୍ମଜନିତ ପରିଣାମ ବୋଲି ସେ ଭାବିଥିଲେ । ଜୀବନ ଧାରଣ ପାଇଁ କର୍ମ ଆବଶ୍ୟକ । ସେଥିପାଇଁ ନିଜର କର୍ମ ମଧ୍ୟରେ ହିଁ ବ୍ୟକ୍ତିର ଆତ୍ମା ଆବଦ୍ଧ ରହିଯାଏ । କିନ୍ତୁ କର୍ମ ଦୁଇ ପ୍ରକାର, ଯଥା: ସୁକର୍ମ ଓ କୁକର୍ମ । ସୁକର୍ମ ପାଇଁ ସୁଫଳ ମିଳିଥାଏ, କୁକର୍ମ ପାଇଁ କୁଫଳ ମିଳିଥାଏ । ନିଜର କର୍ମଫଳରୁ ରକ୍ଷା ପାଇବା ଅସମ୍ଭବ । ପାପ ପୁଣ୍ୟର ବିଚାର ନ କରି କର୍ମ କରିଗଲେ ପାପ ପାଇଁ ନିଶ୍ଚୟ ଦୁଃଖ ଭୋଗ କରିବାକୁ ପଡ଼ିବ ।

କର୍ମବାଦ ସହିତ ମହାବୀର ପୁନର୍ଜନ୍ମ ପ୍ରତି ମନୁଷ୍ୟର ଦୃଷ୍ଟି ଆକର୍ଷଣ କରିଥିଲେ । ପାପ କାର୍ଯ୍ୟ ଓ ଦୁଷ୍କର୍ମର ଫଳ ଭୋଗ ପାଇଁ ମନୁଷ୍ୟକୁ ପୁନର୍ଜନ୍ମ ଲାଭ କରିବାକୁ ହୁଏ । କୁକର୍ମର ବିନାଶ ବିନା ଜନ୍ମଜନ୍ମାନ୍ତର କଷ୍ଟ ଭୋଗ ଲାଗି ରହିଥାଏ ।

ପୁନର୍ଜନ୍ମର କଷ୍ଟଭୋଗରୁ ରକ୍ଷା ପାଇବା ପାଇଁ ଜିନ ସତ୍ ବିଶ୍ୱାସ, ସତ୍ ଜ୍ଞାନ ଓ ସତ୍ କର୍ମ ଉପରେ ବିଶ୍ୱାସ ରଖିବା ପାଇଁ ଉପଦେଶ ଦେଇଥିଲେ । ସେ ମନୁଷ୍ୟକୁ ପବିତ୍ର ଓ ନିଷ୍କାମ ହେବାକୁ କହିଥିଲେ । ସମସ୍ତ ପ୍ରକାର ଅନ୍ୟାୟ

କାର୍ଯ୍ୟ ବିସର୍ଜନ ପୂର୍ବକ ପୁଣ୍ୟକର୍ମରେ ଲିପ୍ତ ରହିବାକୁ ସେ ନିର୍ଦ୍ଦେଶ ଦେଇଥିଲେ । କାମ, କ୍ରୋଧ, ହିଂସା, ଘୃଣା ଓ ଲୋଭ ପ୍ରଭୃତି କୁଗୁଣମାନ ତ୍ୟାଗ କରିପାରିଲେ ଆତ୍ମଶୁଦ୍ଧି ସମ୍ଭବ ହେବ ବୋଲି ଜିନ ଦର୍ଶାଇଥିଲେ । ତାଙ୍କ ମତରେ, ବିଶୁଦ୍ଧ ଆତ୍ମା ପକ୍ଷରେ ପୁନର୍ଜନ୍ମ ସମ୍ଭବ ନୁହେଁ ।

ଜୈନମାନେ କର୍ମବାଦ ଓ ପୁନର୍ଜନ୍ମ ଉପରେ ଗଭୀର ବିଶ୍ୱାସ ରଖି ନିଜର ଧର୍ମ ପାଳନ କରିଥିଲେ ।

**ଅହିଂସା**—ଅହିଂସା ପାଳନ ହେଉଛି ଜୈନଧର୍ମର ମୂଳମନ୍ତ୍ର । ମହାବୀର ଜିନ ଦର୍ଶାଇଥିଲେ ଯେ, ମନୁଷ୍ୟ ଶରୀରରେ ଯେପରି ପ୍ରାଣ ରହିଛି, କ୍ଷୁଦ୍ରାଦପିକ୍ଷୁଦ୍ର କୀଟପତଙ୍ଗ ଦେହରେ ମଧ୍ୟ ସେହିପରି ପ୍ରାଣ ରହିଛି । ତେଣୁ ସମଗ୍ର ଜଗତ ହେଉଛି ପ୍ରାଣମୟ । ଯେହେତୁ ମନୁଷ୍ୟର ସୁଜ୍ଞାନ ରହିଛି, ସେଥିପାଇଁ ମନୁଷ୍ୟ ପକ୍ଷରେ କୌଣସି ପ୍ରକାର ପ୍ରାଣୀ ବା ଜୀବ ପ୍ରତି ହିଂସା ଆଚରଣ କରିବା ହେଉଛି ପରମ ଅଧର୍ମ । ଅନ୍ୟ ପକ୍ଷରେ, ଅହିଂସା ହେଉଛି ପରମ ଧର୍ମ । ଜୀବ ପ୍ରତି ଦୟାପରବଶ ହେବା ପାଇଁ ଜିନ ପ୍ରଚାର କରିଥିଲେ । ଜୈନଧର୍ମରେ ଜୀବଜଗତ ପ୍ରତି ଯେପରି ଅସୀମ ଦୟା ପ୍ରଦର୍ଶନ କରାଯାଇଛି ସେପରି ନିଦର୍ଶନ ଅନ୍ୟ କୌଣସି ଧର୍ମରେ ଦେଖିବାକୁ ମିଳେ ନାହିଁ । ଏପରିକି, ସନ୍ଧ୍ୟାପରେ ଜୈନମାନେ ନିଆଁ ଜାଳନ୍ତି ନାହିଁ । କାରଣ, ଆଲୋକ ପ୍ରତି ଆକର୍ଷିତ ହୋଇ କୀଟପତଙ୍ଗଗୁଡ଼ିକ ସେଥିରେ ପୋଡ଼ି ମରିଯିବାର ଆଶଙ୍କା ରହିଛି । ଜୀବହତ୍ୟା ମହାପାପ ବୋଲି ଜୈନମାନଙ୍କର ପୂର୍ଣ୍ଣ ବିଶ୍ୱାସ ।

ଜୈନ ମତରେ କେବଳ ହିଂସାତ୍ୟାଗ ଯଥେଷ୍ଟ ନୁହେଁ । ଶ୍ରଦ୍ଧା, ଅନୁକମ୍ପା, କରୁଣା ଓ ସମ୍ବେଦନା ଦ୍ୱାରା ସମଗ୍ର ଜୀବ ଜଗତ ପ୍ରତି ଦୟା ପ୍ରଦର୍ଶନ ଓ କର୍ତ୍ତବ୍ୟପାଳନ ହେଉଛି ଅହିଂସା ଧର୍ମର ଅଙ୍ଗ ।

**କୈବଲ୍ୟ**—ଜିନଙ୍କ ମତରେ ସଂସାର ହେଉଛି ଅସାର, ଅନିତ୍ୟ ଓ ଅସତ୍ୟ । ମନୁଷ୍ୟ-ଜନ୍ମ କେବଳ ଦୁଃଖର ନାମାନ୍ତର ମାତ୍ର । ପ୍ରତ୍ୟେକ ଆତ୍ମା କର୍ମଫଳ ଭୋଗ କରିବାକୁ ବାଧ୍ୟ । କର୍ମଫଳ ପାଇଁ ପୁଣି ଲାଗି ରହିଛି ପୁନର୍ଜନ୍ମ । ଏପରି ଅବସ୍ଥାରୁ ନିସ୍ତାର ପାଇବା ପାଇଁ ମହାବୀର ଯେଉଁ ମାର୍ଗ ଦେଖାଇଥିଲେ ତାହା ହେଉଛି କୈବଲ୍ୟ ବା ମୋକ୍ଷ ।

ଜିନଙ୍କ ମତରେ କୈବଲ୍ୟପ୍ରାପ୍ତି ହେଉଛି ଜୀବନର ଚରମ ଲକ୍ଷ୍ୟ । ସେଥିପାଇଁ ନିଜର କର୍ମକୁ ଧ୍ୱଂସ କରିବା ଆବଶ୍ୟକ । କର୍ମଧ୍ୱଂସ ପାଇଁ ନିଜ ନଶ୍ୱର ଶରୀରର ଇନ୍ଦ୍ରିୟମାନ ଜୟ କରିବାକୁ ପଡ଼ିବ । ମାୟା, ମମତା, ଆଶା, କାମନା ଓ ଆସକ୍ତି ତ୍ୟାଗ ଦ୍ୱାରା ଅନାସକ୍ତ ଜୀବନଯାପନ ବଳରେ କର୍ମଧ୍ୱଂସ ସମ୍ଭବ ।

ନିଜର ଜୀବଦ୍ଦଶା ମଧ୍ୟରେ ସବୁ ପ୍ରକାର ପାର୍ଥିବ ପଦାର୍ଥ ପ୍ରତି ମୋହ ପରିତ୍ୟାଗ ସହ ନିଜର ଶରୀର ପ୍ରତି ମଧ୍ୟ ସଂପୂର୍ଣ୍ଣ ଉଦାସୀନ ହେବାପାଇଁ ଜିନ ଉପଦେଶ ଦେଇଥିଲେ । କଠୋର ସଂଯମ ଓ ସାଧନାବଳରେ ଶେଷରେ ମନୁଷ୍ୟର ଅନାସକ୍ତ ଆତ୍ମା ମୋକ୍ଷ ବା କୈବଲ୍ୟ ଲାଭ କରିବ । ମୋକ୍ଷପ୍ରାପ୍ତ ଆତ୍ମାର ପୁନର୍ଜନ୍ମ ନାହିଁ । ଚିରମୁକ୍ତ ଆତ୍ମାର ସେହି ଅବସ୍ଥାକୁ ସିଦ୍ଧଶୀଳା ବୋଲି କୁହାଯାଇଛି ।

ଜୈନଧର୍ମର ଏହିପରି ମୌଳିକ ବିଶ୍ୱାସମାନ ତତ୍କାଳୀନ ଧର୍ମ ଜଗତରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ପ୍ରଚଳିତ ବ୍ରାହ୍ମଣ୍ୟଧର୍ମର ଆଡ଼ମ୍ବର ଆଚରଣ ପରିବର୍ତ୍ତେ ଉଚ୍ଚତର ଆଧ୍ୟାତ୍ମିକ ଜୀବନ ପାଇଁ ଚିନ୍ତାଶୀଳ ବ୍ୟକ୍ତିମାନେ ବ୍ୟାକୁଳ ହୋଇଥିଲେ । ତେଣୁ ଜୈନମତ ପ୍ରତି ସେମାନଙ୍କ ମନରେ ଆକର୍ଷଣ ସୃଷ୍ଟି ହୋଇଥିଲା । ତେଣେ, ଜିନଙ୍କ ମତ ଅବଲମ୍ବନ କରିଥିବା ଜୈନ ସନ୍ନ୍ୟାସୀମାନେ କଠୋରଭାବେ ସଂଯମ ରକ୍ଷା କରିଥିଲେ । ପାର୍ଥିବ ପଦାର୍ଥମାନ ତ୍ୟାଗ କରି ସେମାନେ ନିଜର ଅନାସକ୍ତ ମନୋଭାବ ଦେଖାଇଥିଲେ । ଏପରିକି, ସେମାନେ ପରିଧାନ ବସ୍ତ୍ର ତ୍ୟାଗ କରି 'ଦିଗମ୍ବର' ନାମରେ ଆଖ୍ୟାତ ହୋଇଥିଲେ । ଜିନଙ୍କ ଅନେକ ପରେ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ, ଜୈନମାନଙ୍କ ମଧ୍ୟରେ ଅନେକେ ଶ୍ୱେତବସ୍ତ୍ର ପରିଧାନ ଦ୍ୱାରା 'ଶ୍ୱେତାମ୍ବର' ନାମରେ ପରିଚିତ ହୋଇଥିଲେ ।

## ଜୈନଧର୍ମ ଓ ସାମାଜିକ ସଂସ୍କାର ଚେତନା

ଜିନଙ୍କ ପ୍ରଚାରବଳରେ ଭାରତରେ ଏକ ଉଚ୍ଚତର ସାମାଜିକ ଚେତନା ପ୍ରକାଶ ପାଇଥିଲା । ମନୁଷ୍ୟପ୍ରାଣରେ ମାନବିକ ଦୟା, ପ୍ରୀତି ଓ ସମଭାବ ଉଦ୍ରେକ କରିବା ପାଇଁ ସେ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ବିଶୁଦ୍ଧ ଆତ୍ମା ଆଗରେ ଅନ୍ୟ ପ୍ରତି ଘୃଣା, ଦ୍ୱେଷ, ଈର୍ଷା ଓ ହିଂସା ପ୍ରଭୃତି କୁପ୍ରବୃତ୍ତିର ସ୍ଥାନ ନ ଥିଲା ।

ସୃଷ୍ଟିର ସମସ୍ତ ମନୁଷ୍ୟ ସମାନ ବୋଲି ସେ କହିଥିଲେ । ଜୈନମାନଙ୍କର ହୃଦ୍‌ବୋଧ ହୋଇଥିଲି ଯେ, ଜାତିପ୍ରଥା, ଭେଦାଭେଦ ଓ ଉଚ୍ଚ ନୀଚ ମନୋଭାବ ହେଉଛି ପ୍ରକୃତ ଅଧର୍ମ । ସେମାନେ ସେହି ତତ୍ତ୍ୱମାନ ପ୍ରଚାର କରି ବୁଲିଥିଲେ । ଫଳରେ ଦେଶରେ ଗୋଟିଏ ନୂତନ ସାମାଜିକ ଜାଗରଣ ଦେଖା ଦେଇଥିଲା । ଜୈନମାନେ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟ ଅସ୍ୱୀକାର କରିଥିଲେ । ପ୍ରଚଳିତ ଘୃଣ୍ୟ ଜାତିପ୍ରଥା ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରିଥିଲେ ।

ଜୈନ ଆନ୍ଦୋଳନ ଦ୍ୱାରା ପ୍ରଚଳିତ ଅନ୍ଧ ବିଶ୍ୱାସ, କୁସଂସ୍କାର, ବଳିପ୍ରଥା ଓ ଅବାନ୍ତର କ୍ରିୟାକାଣ୍ଡ ବିରୁଦ୍ଧରେ ସାମାଜିକ ଚେତନା ଦେଖାଯାଇଥିଲା । ଜିନଙ୍କ ପ୍ରଚାରିତ ଜୀବ ପ୍ରତି ଦୟାର ତାତ୍ପର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା । ମନୁଷ୍ୟର ମନୁଷ୍ୟପ୍ରୀତି ଓ ପରସ୍ପର ମଧ୍ୟରେ ଦୟାପୂର୍ଣ୍ଣ ସଦ୍‌ଭାବ ପ୍ରତି ଚେତନା ସୃଷ୍ଟି ହୋଇଥିଲା । ଆତ୍ମଶୁଦ୍ଧି ମଧ୍ୟରେ ସାମାଜିକ ମଙ୍ଗଳ ଓ ସାମୂହିକ ଶୁଦ୍ଧି ପାଇଁ ଜୈନଧର୍ମ ମାର୍ଗ ଦେଖାଇଥିଲା ।

## ଗୌତମ ବୁଦ୍ଧ

ମହାବୀର ଜିନଙ୍କ ସମସାମୟିକ ମହାପୁରୁଷ ଥିଲେ ଗୌତମ ବୁଦ୍ଧ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ହିମାଳୟ ପର୍ବତମାଳାର ପାଦଦେଶରେ କପିଳବାସ୍ତୁ ନାମକ ସ୍ଥାନ ଅବସ୍ଥିତ ଥାଏ । ସେଠାକାର ଅଧିବାସୀମାନେ ଶାକ୍ୟ ନାମରେ ପ୍ରସିଦ୍ଧ ଥିଲେ । ସେମାନେ ଥିଲେ କ୍ଷତ୍ରିୟ । ଜଣାଯାଏ ଯେ ସେ କାଳରେ କପିଳବାସ୍ତୁ ଗୋଟିଏ ସାଧାରଣତନ୍ତ୍ର ବା ଗଣରାଜ୍ୟ ରୂପେ ପ୍ରତିଷ୍ଠାଲାଭ କରିଥିଲା । ସେହି ସାଧାରଣତନ୍ତ୍ରର ଅଧିନାୟକ ବା ମୁଖ୍ୟ ଶାସକ ଥିଲେ ଶୁଦ୍ଧୋଦନ । ତାହାଙ୍କ ପତ୍ନୀଙ୍କ ନାମ ଥିଲା ମାୟାଦେବୀ ।

କପିଳବାସ୍ତୁ ନଗରୀର ଅଦୂରବର୍ତ୍ତୀ ଲୁମ୍ବିନୀ ନାମକ ଉଦ୍ୟାନରେ ମାୟାଦେବୀ ଏକ ପୁତ୍ରସନ୍ତାନ ପ୍ରସବ କରିଥିଲେ । ପୁତ୍ରଜନ୍ମର ସାତଦିନ ପରେ ମାୟାଦେବୀଙ୍କ ପରଲୋକ ଗମନ ଘଟିଥିଲା । ତେଣୁ ଶିଶୁପୁତ୍ରର ଲାଳନପାଳନ ତାଙ୍କ ବିମାତା ତଥା ମାତୃଷ୍ୱସା ଆଦର ସହକାରେ ବହନ କଲେ । ତାଙ୍କ ନାମ ଥିଲା ମହାପ୍ରଜାବତୀ ଗୌତମୀ । ଗୌତମୀଙ୍କ ନାମ ଅନୁସାରେ ଶିଶୁର ନାମ ରହିଲା ଗୌତମ । ସେହି ଗୌତମ ହେଉଛନ୍ତି ଭବିଷ୍ୟତର ବୁଦ୍ଧ । ତାଙ୍କର ଅନ୍ୟ ଗୋଟିଏ ନାମ ଥାଏ ସିଦ୍ଧାର୍ଥ । ସେ ତଥାଗତ ନାମରେ ମଧ୍ୟ ପ୍ରଖ୍ୟାତ ।

ବୁଦ୍ଧଙ୍କ ଜନ୍ମ ସମୟ କୁହେଳିକାମୟ ରହିଛି । କେତେକ ଐତିହାସିକଙ୍କ ଗଣନା ଅନୁଯାୟୀ ସେ ଖ୍ରୀଷ୍ଟପୂର୍ବ ୫୬୬ରେ ଜନ୍ମଗ୍ରହଣ କରିଥିଲେ ବୋଲି ବିଶ୍ୱାସ କରାଯାଏ ।

ରାଷ୍ଟ୍ରମୁଖ୍ୟ ଭାବରେ ପିତା ଶୁଦ୍ଧୋଦନ 'ରାଜା' ଉପାଧିରେ ଭୂଷିତ ଥିଲେ । ରାଜପ୍ରାସାଦ, ଧନ, ଐଶ୍ୱର୍ଯ୍ୟ ଓ ଆମୋଦପ୍ରମୋଦ ମଧ୍ୟରେ ଗୌତମଙ୍କ ଜୀବନ ଆରମ୍ଭ ହୋଇଥିଲା । କିନ୍ତୁ ଶୈଶବକାଳରୁ ସେ ଚିନ୍ତାଶୀଳ ଥିଲେ । କ୍ରମେ କ୍ରମେ ଭୋଗବିଳାସ ପ୍ରତି ତାଙ୍କର ବିତୃଷ୍ଣା ଜନ୍ମିଲା । ସୁଖଭୋଗ ପରିବର୍ତ୍ତେ ସେ ଉଦାସୀନ ଓ ଅନାସକ୍ତ ମନୋଭାବ ପୋଷଣ କଲେ । ପୁତ୍ରର ସେପରି ମତିଗତି ଦେଖି ରାଜା ଶୁଦ୍ଧୋଦନ ଚିନ୍ତିତ ହୋଇଥିଲେ । ଗୌତମଙ୍କ ମନ ପରିବର୍ତ୍ତନ ପାଇଁ ନାନା ପ୍ରକାର ଚେଷ୍ଟା ଚାଲିଲା । ତାଙ୍କର ମାତ୍ର ୧୬ ବର୍ଷ ବୟସ ବେଳେ ଯଶୋଧାରା ନାମ୍ନୀ ଜଣେ ଅନିନ୍ଦ୍ୟାସୁନ୍ଦରୀ ବାଳିକାଙ୍କ ସହ ତାଙ୍କର ବିବାହ ସମ୍ପନ୍ନ ହେଲା । ବହୁବିଧ ବିଳାସବ୍ୟସନ ମଧ୍ୟରେ ରାଜପୁତ୍ରଙ୍କୁ ନିମଜ୍ଜିତ ରଖିବା ପାଇଁ ଶୁଦ୍ଧୋଦନ ଯଥାସମ୍ଭବ ଉଦ୍ୟମ କରିଥିଲେ ।

କିନ୍ତୁ, ଯୁବକ ଗୌତମ ଅନିତ୍ୟ ଅସତ୍ୟ ସଂସାର ପ୍ରତି ଆକର୍ଷିତ ହେଲେ ନାହିଁ । ସବୁ ପ୍ରକାର ଆନନ୍ଦ ତାଙ୍କୁ ଅସାର ବୋଧ ହେଲା । ତାଙ୍କର ଚିନ୍ତାଗ୍ରସ୍ତ ମନ ସତ୍ୟର ସନ୍ଧାନ ପାଇଁ ବ୍ୟାକୁଳ ହୋଇ ଉଠିଲା । ସେହିପରି ମାନସିକ ଅବସ୍ଥା ବେଳେ ଚାରିଗୋଟି ଦୃଶ୍ୟ ଦେଖି ସେ ଅଧିକତର ଚିନ୍ତାମଗ୍ନ ହୋଇ ପଡ଼ିଥିଲେ । ସେଗୁଡ଼ିକ ଥିଲା ଜରା, ବ୍ୟାଧି, ମୃତ୍ୟୁ ଓ ସାଧୁଚରିତର ଦୃଶ୍ୟ । ଦିନେ ସେ ଜଣେ ଜରାଗ୍ରସ୍ତ ବୃଦ୍ଧବ୍ୟକ୍ତିର ଅସହାୟ ଅବସ୍ଥା ଦେଖି ଜାଣି-ପାରିଥିଲେ ଯେ ମନୁଷ୍ୟର ଯୌବନ ଓ ସ୍ୱାସ୍ଥ୍ୟ ହେଉଛି ଏକ କ୍ଷଣିକ ଅବସ୍ଥା । ବାର୍ଦ୍ଧକ୍ୟ ହେଉଛି ଅବଶ୍ୟମ୍ଭାବୀ ଭବିତବ୍ୟ । ଆଉଥରେ ସେ ଜଣେ ବ୍ୟାଧିଗ୍ରସ୍ତ ମନୁଷ୍ୟର କଷ୍ଟଭୋଗ ଦେଖି ଜାଣିଥିଲେ ଯେ ରୋଗ ଓ ବ୍ୟାଧି ହେଉଛି ଶରୀରର ଚିର ସହଚର ଦୁର୍ଭାଗ୍ୟ । ତାହାପରେ ସେ ଦେଖିଥିଲେ ଶବାଧାର ଉପରେ ଜଣେ ମୃତବ୍ୟକ୍ତିର ନିଶ୍ଚଳ ଶରୀର ଏବଂ ଜାଣିଥିଲେ ଯେ ଜୀବନର ଶେଷ ପରିଣତି ହେଉଛି ମୃତ୍ୟୁ । ସେହି ତିନିଦୃଶ୍ୟ ଦ୍ୱାରା ସଂସାରର ଅନିତ୍ୟତା ବିଷୟରେ ତାଙ୍କର ସନ୍ଦେହ ରହିଲା ନାହିଁ । ସେ ଜାଣିପାରିଲେ ଯେ, ଜୀବନ ଦୁଃଖପୂର୍ଣ୍ଣ ଓ ଦୁଃଖମୟ ଜଗତରେ ସାଂସାରିକ ଆଶା ବାସନା ଇତ୍ୟାଦି ସମ୍ପୂର୍ଣ୍ଣ ଅର୍ଥହୀନ । ଶେଷରେ, ସେ ଚତୁର୍ଥ ଦୃଶ୍ୟଟି ଦେଖି ଚମତ୍କୃତ ହୋଇଥିଲେ । ତାହାଥିଲା

ଜଣେ ସଂସାରତ୍ୟାଗୀ ନିର୍ଲିପ୍ତ ସନ୍ନ୍ୟାସୀଙ୍କର ପ୍ରଶାନ୍ତ ଓ ଦିବ୍ୟ ରୂପ । ଗୌତମ ଭାବିଥିଲେ ଯେ, ମାୟା ମମତା ଓ ସାଂସାରିକ ବନ୍ଧନମୁକ୍ତ ସେହି ସନ୍ନ୍ୟାସୀ ହିଁ ପ୍ରକୃତ ସୁଖୀ । ସତ୍ୟର ସନ୍ଧାନ ପାଇଁ ସେ ସେହି ମାର୍ଗ ଅବଲମ୍ବନ କରିବାକୁ ସଂକଳ୍ପ ନେଲେ ।

ଗୌତମଙ୍କୁ ୨୯ ବର୍ଷ ବୟସ ବେଳେ ତାଙ୍କର ଏକ ପୁତ୍ରଲାଭ ହେଲା । ପୁତ୍ରସ୍ନେହକୁ ଅନ୍ୟ ଗୋଟିଏ ମାୟାବନ୍ଧନ ବୋଲି ଜାଣିପାରି ସେ ବିଚଳିତ ହୋଇଉଠିଲେ । ଶେଷରେ ସେହି ୨୯ ବର୍ଷ ବୟସରେ ରାତିର ଗଭୀର ଅନ୍ଧକାର ମଧ୍ୟରେ ସେ କପିଳବାସ୍ତୁର ରାଜପ୍ରାସାଦ ତ୍ୟାଗକରି ଅନିର୍ଦ୍ଦିଷ୍ଟ ପଥର ଯାତ୍ରୀରୂପେ ବିଦାୟ ନେଲେ । ଗୌତମଙ୍କ ଗୃହତ୍ୟାଗ ଥିଲା ମନୁଷ୍ୟ ଜାତିର ଆଧ୍ୟାତ୍ମିକ ଇତିହାସରେ ଗୋଟିଏ ଅପୂର୍ବ ଘଟଣା ।

**ବୁଦ୍ଧତ୍ୱ ପ୍ରାପ୍ତି**—ଗୃହତ୍ୟାଗ ପରେ ଗୌତମ ରାଜଗୃହ ଅଭିମୁଖେ ଯାତ୍ରା କରିଥିଲେ । ସେଠାରେ ସେ ଆଲାର କାଲାମ ଏବଂ ଉଦ୍ରକ ରାମପୁତ୍ର ନାମଧେୟ ଦୁଇଜଣ ପଣ୍ଡିତଙ୍କ ନିକଟରୁ ଜ୍ଞାନଲାଭ ପାଇଁ ପ୍ରୟାସ କରିଥିଲେ । କିନ୍ତୁ ଶାସ୍ତ୍ରଜ୍ଞାନ ଓ ଯୋଗ ସାଧନା ଦ୍ୱାରା ତାଙ୍କ ପ୍ରାଣର ପିପାସା ତୃପ୍ତ ହେଲା ନାହିଁ । ସେଥିପାଇଁ ସେ ଅନ୍ୟ ପନ୍ଥା ଗ୍ରହଣ କଲେ । ରାଜଗୃହ ଠାରୁ ଗୟା ନିକଟବର୍ତ୍ତୀ ଉରୁବିଲ୍ୱ ନାମକ ଅରଣ୍ୟକୁ ଗମନ କରି ସେଠାରେ ସେ ନୂତନ ଭାବରେ ସାଧନା ଆରମ୍ଭ କଲେ । ଦୀର୍ଘ ଛଅ ବର୍ଷ ପାଇଁ ତାଙ୍କର ସେହି କଠୋର ସାଧନା ଲାଗି ରହିଲା । ନିଜ ଶରୀରକୁ ଅଶେଷ ନିର୍ଯାତନା ଦେବା ସଙ୍ଗେ ସେ ଅନାହାର ଓ ଅଳ୍ପାହାର ମଧ୍ୟରେ ଦିନାତିପାତ କଲେ । କିନ୍ତୁ ସେଥିରୁ ମଧ୍ୟ ସେ ସତ୍ୟର ସନ୍ଧାନ ପାଇଲେ ନାହିଁ ।

ମନ ମଧ୍ୟରେ ଜାତ ହୋଇଥିବା ପ୍ରଶ୍ନମାନଙ୍କର ଉତ୍ତର ପାଇବା ପାଇଁ ଗୌତମ ଶେଷରେ ଗଭୀରଭାବେ ଧ୍ୟାନମଗ୍ନ ରହିବା ପାଇଁ ସଂକଳ୍ପ ନେଲେ । ସେତେବେଳକୁ ତାଙ୍କ ଶରୀର ଅସ୍ଥିକଙ୍କାଳ ଓ ଶୁଷ୍କଚର୍ମ ସାର ହୋଇ ସାରିଥିଲା । ସେହିପରି ମୃତପ୍ରାୟ ଅବସ୍ଥାରେ ସେ ସୁଜାତା ନାମ୍ନୀ ଜଣେ ଗ୍ରାମ୍ୟବାଳିକା ହାତରୁ ଅଳ୍ପ କିଛି ଖାଦ୍ୟ ଭକ୍ଷଣ କରି ଉରୁବିଲ୍ୱ ଅରଣ୍ୟର ଗୋଟିଏ ବିଶାଳ ଅଶ୍ୱତ୍ଥ ବୃକ୍ଷ ତଳେ ଧ୍ୟାନମଗ୍ନଭାବେ ଉପବେଶନ କଲେ । ସେହି ଧ୍ୟାନ ମଧ୍ୟରେ ସେ ଲାଭ କଲେ ଦିବ୍ୟଜ୍ଞାନ ।

ଦିବ୍ୟଜ୍ଞାନ ଲାଭକରିବା ମୁହୂର୍ତ୍ତରୁ ଗୌତମ ସିଦ୍ଧାର୍ଥ ହେଲେ 'ବୁଦ୍ଧ' ବା ପରମଜ୍ଞାନୀ । ଯେଉଁ ଅଶ୍ୱତ୍ଥ ବୃକ୍ଷ ତଳେ ସେ ବୁଦ୍ଧତ୍ୱ ପ୍ରାପ୍ତ ହେଲେ, ତାହା ବୋଧିଦ୍ରୁମ ନାମରେ କଥିତ ହେଲା । ବୁଦ୍ଧତ୍ୱ ଲାଭ କରିଥିବା ସ୍ଥାନର ନାମ ହେଲା ବୁଦ୍ଧଗୟା । ବୁଦ୍ଧତ୍ୱ ପ୍ରାପ୍ତି ବେଳେ ଗୌତମଙ୍କ ବୟସ ହୋଇ-ଥିଲା ୩୫ ବର୍ଷ ।

ଦିବ୍ୟଜ୍ଞାନ ଦ୍ୱାରା ବୁଦ୍ଧ ଯେଉଁ ସତ୍ୟ ଆବିଷ୍କାର କରିଥିଲେ ତାହା ଥିଲା ମନୁଷ୍ୟ ଜୀବନର ଶାଶ୍ୱତ ସତ୍ୟ । ଜୀବନ ଦୁଃଖପୂର୍ଣ୍ଣ । ଦୁଃଖର କାରଣ ଆଶା । ଆଶାର ବିନାଶରେ ଦୁଃଖର ବିନାଶ । ଦୁଃଖର ବିନାଶ ପାଇଁ ଆବଶ୍ୟକ ଆତ୍ମାର ପବିତ୍ରତା । ଏହା ହିଁ ଥିଲା ତାଙ୍କ ଆବିଷ୍କୃତ ସତ୍ୟର ମୂଳତତ୍ତ୍ୱ ।

**ଧର୍ମଚକ୍ର ପ୍ରବର୍ତ୍ତନ**—ଦିବ୍ୟଜ୍ଞାନ ଲାଭ ପରେ ବୁଦ୍ଧ ବୁଦ୍ଧଗୟା ଠାରୁ ବାରାଣସୀ ଅଦୂରବର୍ତ୍ତୀ ସାରନାଥ ନାମକ ସ୍ଥାନକୁ ଯାତ୍ରା କରିଥିଲେ । ସେଠାରେ ସେ ପାଞ୍ଚଜଣ ବ୍ରାହ୍ମଣଙ୍କ ସମ୍ମୁଖରେ ପ୍ରଥମଥର ପାଇଁ ତାଙ୍କର ଜ୍ଞାନଲବ୍ଧ ସତ୍ୟ ପ୍ରଚାର କରିଥିଲେ । ବୁଦ୍ଧଙ୍କର ସେହି କାର୍ଯ୍ୟ ଧର୍ମଚକ୍ର-ପ୍ରବର୍ତ୍ତନ ନାମରେ ପ୍ରସିଦ୍ଧିଲାଭ କରିଛି ।

ସେହି ସମୟରୁ ବୁଦ୍ଧ ତଥାଗତ ଦୀର୍ଘ ୪୫ ବର୍ଷ ସମୟ ନିଜର ମତ ପ୍ରଚାର କରିବା ଉଦ୍ଦେଶ୍ୟରେ ଭ୍ରମଣ କରିଥିଲେ । ବାରାଣସୀ, ବୁଦ୍ଧଗୟା, ରାଜଗୃହ, ଶ୍ରାବସ୍ତୀ, ବୈଶାଳୀ, ମଗଧ ଓ କପିଳବାସ୍ତୁ ପ୍ରଭୃତି ସ୍ଥାନରେ ଅଗଣିତ ନରନାରୀ ତାହାଙ୍କ ମତ ଶ୍ରବଣ କରିଥିଲେ । କ୍ରମେ କ୍ରମେ ତାହାଙ୍କ ଶିଷ୍ୟସଂଖ୍ୟା ବୃଦ୍ଧି ପାଇଲା । ଏକ ମହାନ୍ ଧର୍ମପ୍ରଚାରକମଣ୍ଡଳୀ ରୂପେ ବୌଦ୍ଧ-ସଂଘର ଉତ୍ଥାନ ଘଟିଲା । ବୁଦ୍ଧଙ୍କର ଶିଷ୍ୟମାନଙ୍କ ମଧ୍ୟରେ ବିଖ୍ୟାତ ଥିଲେ ସାରିପୁତ୍ର, ମୋଗ୍‌ଗଲ୍ୟାୟନ, ସଞ୍ଜୟ, ଅନିରୁଦ୍ଧ, ଆନନ୍ଦ, ଉପାଳୀ ସୁଦତ୍ତ ଓ ବୁଦ୍ଧଙ୍କ ସ୍ୱପୁତ୍ର ରାହୁଳ ।

ବୁଦ୍ଧଙ୍କ ଶିଷ୍ୟମାନେ ବୌଦ୍ଧ ନାମରେ ପରିଚିତ ହେଲେ । ଗୃହୀ ଗୃହୀ ବୌଦ୍ଧସଂଘର ପ୍ରଚାର ଦ୍ୱାରା ସାରା ଭାରତରେ ଏକ ଅଭିନବ ଆଧ୍ୟାତ୍ମିକ ଜାଗରଣ ସଂଘଟିତ ହେଲା । ଲୋକଙ୍କର ସରଳ କଥିତ ଭାଷାରେ ବୌଦ୍ଧମାନେ ଧର୍ମପ୍ରଚାର କରି ବୁଲିଥିଲେ । ରାଜା ପ୍ରଜା, ଉଚ୍ଚ ନୀଚ ନିର୍ବିଶେଷରେ ବିପୁଳ ସଂଖ୍ୟାରେ ଜନସାଧାରଣ ବୌଦ୍ଧମତ ପ୍ରତି ଆକୃଷ୍ଟ ହୋଇଥିଲେ । ଗୌତମ

ବୁଦ୍ଧଙ୍କ ଅନାବିଳ ବ୍ୟକ୍ତିତ୍ୱ, ଚରମ ତ୍ୟାଗ, ପବିତ୍ର ଉପଦେଶ ଓ ନୈତିକ ଶିକ୍ଷା ଅସଂଖ୍ୟ ମନୁଷ୍ୟର ପ୍ରାଣସ୍ପର୍ଶ କଲା । ବୁଦ୍ଧଙ୍କର ଦୈନନ୍ଦିନ ଜୀବନଯାତ୍ରା ସମ୍ପର୍କରେ ଐତିହାସିକ ଓଲ୍‌ଡେନ୍‌ବାର୍ଗ (**H. Oldenberg**) ଲେଖିଛନ୍ତି :

"ଯେଉଁ ସମୟରେ ତାହାଙ୍କ ଖ୍ୟାତି ଶୀର୍ଷସୀମା ଆରୋହଣ କରିଥିଲା ଏବଂ ତାହାଙ୍କ ନାମ ଭାରତର ଆପାଦମସ୍ତକ ସର୍ବାଗ୍ରଗଣ୍ୟ ନାମମାନଙ୍କ ମଧ୍ୟରେ ବର୍ଣ୍ଣିତ ହେଉଥିଲା, ଏବଂ ଯାହାଙ୍କ ସମ୍ମୁଖରେ ନରପତିମାନେ ନିଜେ ନିଜେ ମସ୍ତକାବନତ କରୁଥିଲେ, ସେହି ସମୟରେ ଦିନ ପରେ ଦିନ ସେହି ବ୍ୟକ୍ତିଙ୍କୁ ରାସ୍ତା ଓ ଗଳିପ୍ରଗଳିରେ ଗୃହରୁ ଗୃହକୁ ଭିକ୍ଷାପାତ୍ର ହସ୍ତରେ ବିଚରଣ କରିବା, ଏବଂ କୌଣସି ପ୍ରକାର ନିବେଦନ ଉଚ୍ଚାରଣ ନ କରି ଦୁଃଖଭାରାକ୍ରାନ୍ତ ନୟନରେ ନୀରବଭାବେ ଦଣ୍ଡାୟମାନ ରହି ଭିକ୍ଷାପାତ୍ରରେ କେହି ଏକମୁଷ୍ଟି ମାତ୍ର ଖାଦ୍ୟ ନିକ୍ଷେପ କଲା ପର୍ଯ୍ୟନ୍ତ ଅପେକ୍ଷା କରି ରହିଥିବା ଅବସ୍ଥାରେ ଦେଖିବାକୁ ମିଳୁଥିଲା ।"

**ମହାପରିନିର୍ବାଣ**—ନିଜର ଅଶୀତି ବର୍ଷ ବୟସ ପର୍ଯ୍ୟନ୍ତ ବୁଦ୍ଧ ଧର୍ମ-ପ୍ରଚାର ଉଦ୍ଦେଶ୍ୟରେ ଭ୍ରମଣ କରିଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଶିଷ୍ୟମାନଙ୍କୁ ନୀତିବାଣୀ ପ୍ରଦାନ କରିଥିଲେ । ଆସନ୍ନପ୍ରାୟ ମୃତ୍ୟୁମୁଖରେ ସେ ତାଙ୍କର ଶେଷବାକ୍ୟ ଶୁଣାଇ କହିଥିଲେ : "ତୁମ୍ଭେମାନେ ନିଜେ ନିଜର ପ୍ରଦୀପ ରୂପେ ପରସ୍ପରକୁ ଆଲୋକିତ କର । ତୁମ୍ଭେମାନେ ନିଜକୁ ନିଜର ଆଶ୍ରୟସ୍ଥଳ ରୂପେ ବିବେଚନା କର । ବାହ୍ୟ ଆଶ୍ରୟ ଅବଲମ୍ବନ କରନାହିଁ । ସତ୍ୟକୁ ପ୍ରଦୀପ ରୂପେ ଦୃଢ଼ ଭାବରେ ଧାରଣ କର । ସତ୍ୟକୁ ନିଜର ଆଶ୍ରୟସ୍ଥାନ ରୂପେ ଅବଲମ୍ବନ କର ।" ଏହିପରି ଅନ୍ତିମ ଉପଦେଶ ମଧ୍ୟରେ ସେ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ । ବୁଦ୍ଧଙ୍କ ମହାପ୍ରୟାଣକୁ 'ମହାପରିନିର୍ବାଣ' ନାମରେ ବର୍ଣ୍ଣନା କରାଯାଇଛି ।

ଖ୍ରୀଷ୍ଟପୂର୍ବ ୪୮୬ରେ ବୁଦ୍ଧଙ୍କ ମହାପରିନିର୍ବାଣ ଘଟିଥିଲା ବୋଲି ଧରି ନିଆଯାଇଛି । ଅବଶ୍ୟ, କେହି କେହି ଐତିହାସିକ ଖ୍ରୀଷ୍ଟପୂର୍ବ ୫୪୩ରେ ବୁଦ୍ଧଙ୍କ ତିରୋଧାନ ଘଟିଥିଲା ବୋଲି ମତ ଦେଇଛନ୍ତି ।

### ବୌଦ୍ଧ ଧର୍ମର ସାରାଂଶ

ମାନବ ଜାତିର ସର୍ବପ୍ରଧାନ ଧର୍ମମାନଙ୍କ ମଧ୍ୟରେ ବୌଦ୍ଧଧର୍ମ ଅନ୍ୟତମ ଅଟେ । ସନାତନ ବ୍ରାହ୍ମଣ ଧର୍ମ ପରେ ଏହି ମହାନ୍ ମାନବୀୟ ଧର୍ମର ଉତ୍ଥାନ

ଘଟିଥିଲା । ଏହି ଧର୍ମ ଥିଲା ଜୈନ ଧର୍ମର ସମକାଳୀନ ଧର୍ମ । ଖ୍ରୀଷ୍ଟଧର୍ମର ପାଞ୍ଚଶହ ବର୍ଷ ପୂର୍ବେ ଏବଂ ଇସ୍‌ଲାମ ଧର୍ମର ଏଗାର ଶହ ବର୍ଷ ପୂର୍ବେ ବୌଦ୍ଧ ଧର୍ମର ପ୍ରସାର ଘଟିଥିଲା । ଏକଦା ଏହି ଧର୍ମ ଥିଲା ପ୍ରାୟତଃ ସମଗ୍ର ଏସିଆ ମହାଦେଶର ମୁଖ୍ୟ ଧର୍ମ । ଏପର୍ଯ୍ୟନ୍ତ ବିଶ୍ୱର ଅନ୍ୟତମ ବୃହତ୍ତମ ଧର୍ମ ଭାବରେ ଏହି ଧର୍ମ ବିଦ୍ୟମାନ ରହିଛି । ବୁଦ୍ଧ ହେଉଛନ୍ତି ଏକମାତ୍ର ଐତିହାସିକ ପୁରୁଷ ଯାହାଙ୍କୁ କୋଟି କୋଟି ମନୁଷ୍ୟ ସ୍ୱୟଂ ଭଗବାନ ଭାବେ ଗ୍ରହଣ କରନ୍ତି । ଭାରତୀୟ ହିନ୍ଦୁ ଧର୍ମ ମଧ୍ୟ ବୁଦ୍ଧଙ୍କୁ ଭଗବାନଙ୍କ ଅବତାର ରୂପେ ଗ୍ରହଣ କରି ନେଇଛି । ଗୌତମ ବୁଦ୍ଧଙ୍କୁ 'ଏସିଆର ଆଲୋକ' ବୋଲି ବର୍ଣ୍ଣନା କରାଯାଇଛି । ସମଗ୍ର ମଧ୍ୟପ୍ରାଚ୍ୟରେ ଏକଦା ପ୍ରଚଳିତ ଥିବା ବୌଦ୍ଧ ନୀତିର ପ୍ରଭାବ ଭବିଷ୍ୟତ କାଳର ଖ୍ରୀଷ୍ଟଧର୍ମ ଉପରେ ପ୍ରତିଫଳିତ ହୋଇଥିଲା ।

ବୌଦ୍ଧ ଧର୍ମର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା ।

**ଆର୍ଯ୍ୟ ସତ୍ୟ**—ମାନବୀୟ ନୀତି-ପରାୟଣତା ଥିଲା ବୌଦ୍ଧ ଧର୍ମର ମୂଳ ଭିତ୍ତି । ବୁଦ୍ଧ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ଉଦାସୀନତା ଦେଖାଇ ଥିଲେ । ଦେବଦେବୀଙ୍କ ଉଦ୍ଦେଶ୍ୟରେ ଯାଗ ଯଜ୍ଞ ଓ ପୂଜା ଆରାଧନା ଉପରେ ତାଙ୍କର ବିଶ୍ୱାସ ନ ଥିଲା । ଅନ୍ୟ ପକ୍ଷରେ, ପବିତ୍ର ନୈତିକ ଜୀବନଯାପନକୁ ସେ ମନୁଷ୍ୟର ପ୍ରକୃତ ଧର୍ମ ବୋଲି କହିଥିଲେ । ସେ ଦର୍ଶାଇଥିଲେ ଯେ, ସଂସାର ହେଉଛି ଦୁଃଖପୂର୍ଣ୍ଣ । ସଂସାରର ସମସ୍ତ ପଦାର୍ଥ ହେଉଛି ଅନିତ୍ୟ ଓ ଅସତ୍ୟ । ମନୁଷ୍ୟ ଜୀବନ ହେଉଛି କ୍ଷଣିକ ଓ ଅସାର । ସଂସାର ଦୁଃଖରୁ ମୁକ୍ତିଲାଭ ପାଇଁ ପ୍ରକୃତ ସତ୍ୟର ସନ୍ଧାନ କରିବା ହେଉଛି ମନୁଷ୍ୟର ପରମ କର୍ତ୍ତବ୍ୟ । ନିଜ ଦିବ୍ୟଜ୍ଞାନ ବଳରେ ସେ ଜାଣିଥିଲେ ଯେ ଚାରିଗୋଟି ସତ୍ୟ ପ୍ରତି ଚେତନା ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ ।

ସେହି ଚାରି ସତ୍ୟ ହେଉଛି, ଦୁଃଖ, ଦୁଃଖର କାରଣ, ଦୁଃଖ ନିରୋଧ ଏବଂ ଦୁଃଖ ନିରୋଧର ମାର୍ଗ । ଏହି ଚାରି ସତ୍ୟ 'ଆର୍ଯ୍ୟ ସତ୍ୟ' ବା 'ଚତ୍ୱାରି ଆର୍ଯ୍ୟ ସତ୍ୟାନି' ନାମରେ ବିଦିତ । ଆର୍ଯ୍ୟ ସତ୍ୟକୁ ମୂଳ ଭିତ୍ତି କରି ମନୁଷ୍ୟ ଜୀବନକୁ ଶୁଦ୍ଧ କରିବା ଥିଲା ବୁଦ୍ଧଙ୍କ ଉଦ୍ଦେଶ୍ୟ ।

**ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ**—ବୁଦ୍ଧ ମନୁଷ୍ୟ ଜୀବନର ପ୍ରହେଳିକା ଭେଦ କରିଥିଲେ । ତାହାଙ୍କ ମତରେ, ଜୀବନ ହେଉଛି ଦୁଃଖପୂର୍ଣ୍ଣ । ଦୁଃଖର ମୂଳ

କାରଣ ହେଲା ମନୁଷ୍ୟର ଆଶା, କାମନା ଓ ଆସକ୍ତି । ଏହି ଆଶାର ବିନାଶ ବିନା ଦୁଃଖର ବିନାଶ ସମ୍ଭବ ନୁହେଁ । ନିଜର ମୃତ୍ୟୁରେ ମଧ୍ୟ ଦୁଃଖର ଶେଷ ନାହିଁ । କାରଣ, ପୁନର୍ଜନ୍ମ ଦ୍ୱାରା ମନୁଷ୍ୟକୁ ନିଜର ଆଶା ଓ ଆଶାଜନିତ ଦୁଃଖ ଭୋଗ କରିବାକୁ ହୁଏ । ଆଶା ପୂରଣ ପାଇଁ ମନୁଷ୍ୟ ଯେଉଁ ପ୍ରକାର କର୍ମ କରିଯାଏ, ସେହି କର୍ମର ଫଳ ଭୋଗ କରିବା ପାଇଁ ଆତ୍ମାକୁ ଜନ୍ମଜନ୍ମାନ୍ତର ସଂସାରକୁ ଆସିବାକୁ ହୁଏ । ବୁଦ୍ଧ ଏପରି ଅବସ୍ଥାରୁ ଆତ୍ମାକୁ ମୁକ୍ତି ଦେବା ପାଇଁ ମାର୍ଗ ଖୋଜିଥିଲେ । ଆଶାର ବିନାଶ ଦ୍ୱାରା ଦୁଃଖର ବିନାଶ ଓ ସେଥିସଙ୍ଗେ କର୍ମଫଳରୁ ମୁକ୍ତିଲାଭ ପାଇଁ ସେ ଯେଉଁ ମାର୍ଗ ପ୍ରଦର୍ଶନ କରିଥିଲେ ତାହା 'ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ' ନାମରେ କଥିତ । ଏହା ଥିଲା ଏକ ପବିତ୍ର ଶୁଦ୍ଧ ଜୀବନଯାପନ ପାଇଁ ଆତ୍ମାର ଉନ୍ନତତର ମାର୍ଗ । ସେହି ମାର୍ଗ ଅନୁସରଣ କରିବା ପାଇଁ ବୁଦ୍ଧ ମନୁଷ୍ୟମାନଙ୍କୁ ଆହ୍ୱାନ ଦେଇଥିଲେ ।

ଯେଉଁ ଆଠଗୋଟି ନିର୍ଦ୍ଦେଶ ଅନୁସରଣ କରିବା ଆବଶ୍ୟକ ବୋଲି ସେ କହିଥିଲେ ସେସବୁ ହେଲା : ସମ୍ୟକ୍ ବା ସତ୍ ଦୃଷ୍ଟି, ସତ୍ ସଂକଳ୍ପ, ସତ୍ ବାକ୍ୟ, ସତ୍ କର୍ମ, ସତ୍ ଜୀବିକା, ସତ୍ ଆୟାସ, ସତ୍ ସ୍ମୃତି ଓ ସତ୍ ବା ସମ୍ୟକ ସମାଧି । ଯେଉଁ ଆତ୍ମା ଏହି ଅଷ୍ଟାଙ୍ଗିକ ମାର୍ଗରେ ପରିଚାଳିତ ହୋଇ ପାରିବ ସେହି ଆତ୍ମା ଆଉରେ ଆଶା, ଆସକ୍ତି, ଅନ୍ୟାୟ, ପାପ, କାମ, କ୍ରୋଧ, ଲୋଭ, ମୋହ, ମାତ୍ସର୍ଯ୍ୟ ପ୍ରଭୃତି କୁପ୍ରବୃତ୍ତିର ସ୍ଥାନ ନାହିଁ । ତେଣୁ ସେପରି ଆତ୍ମା ପକ୍ଷରେ ଦୁଃଖ ନାହିଁ କିମ୍ବା ପୁନର୍ଜନ୍ମ ମଧ୍ୟ ନାହିଁ ।

ବୁଦ୍ଧଙ୍କ ପ୍ରଦର୍ଶିତ ଅଷ୍ଟାଙ୍ଗିକ ମାର୍ଗକୁ 'ମଜ୍‌ଝିମ' ବା ମଧ୍ୟମ ମାର୍ଗ ବୋଲି କୁହାଯାଇଛି । ବୁଦ୍ଧ ଜାଣିଥିଲେ ଯେ, ସାଂସାରିକ ଜୀବନଯାତ୍ରା କରୁଥିବା ସମସ୍ତ ମନୁଷ୍ୟ ପକ୍ଷରେ କଠୋର ସନ୍ନ୍ୟାସବ୍ରତ ଅବଲମ୍ବନ କରିବା ସମ୍ଭବପର ନୁହେଁ । ସେ ଏକଥା ମଧ୍ୟ ଜାଣିଥିଲେ ଯେ, ସାଂସାରିକ ଜୀବନଯାତ୍ରାର ଉଦ୍ଦେଶ୍ୟ ନୁହେଁ ଯେ ମନୁଷ୍ୟ ନିଜର ପାର୍ଥିବ ସୁଖ ପାଇଁ ଆସକ୍ତିପୂର୍ଣ୍ଣ କର୍ମ ମଧ୍ୟରେ ବୁଡ଼ି ରହିବ । ଅନାସକ୍ତ ସନ୍ନ୍ୟାସ ଜୀବନ ଓ ଆସକ୍ତିପୂର୍ଣ୍ଣ କର୍ମମୟ ଜୀବନ ଏହି ଉଭୟ ପନ୍ଥା ପରିବର୍ତ୍ତେ ସେ ଅନ୍ୟ ଏକ ମାର୍ଗ ଦେଖାଇଥିଲେ । ସମସ୍ତଙ୍କ ପକ୍ଷରେ ସେହି ମାର୍ଗ ଅନୁସରଣ କରିବା ସମ୍ଭବ ଥିଲା । ତାହା ହିଁ ହେଉଛି ମଧ୍ୟମ ମାର୍ଗ । ଅର୍ଥାତ୍, ସନ୍ନ୍ୟାସୀ ନ ହୋଇ ମଧ୍ୟ ଜଣେ ଗୃହୀବ୍ୟକ୍ତି ସନ୍ନ୍ୟାସ ମନୋଭାବ ସହି

ସତ୍‌ପଥରେ ଚାଲି ପାରିବ । ସତ୍ ମନ, ସତ୍ କର୍ମ ଓ ସତ୍ ଚିନ୍ତା ମଧ୍ୟରେ ଯେକୌଣସି ମନୁଷ୍ୟ ଅନାସକ୍ତ ଭାବରେ ବ୍ୟକ୍ତିଗତ ପବିତ୍ରତା ପାଳନ କରିପାରିବ । ଏହି ଉଦ୍ଦେଶ୍ୟରେ ବୁଦ୍ଧ ମଧ୍ୟମ ବା ଆଷ୍ଟାଙ୍ଗିକ ମାର୍ଗ ପ୍ରଚାର କରିଥିଲେ । ସେହି ମାର୍ଗ ଥିଲା ଗୋଟିଏ ନୈତିକ ପଥ, ଉନ୍ନତର ଜୀବନ ପାଇଁ ପବିତ୍ର ପଥ ।

ବୁଦ୍ଧଙ୍କ ଶିଷ୍ୟମାନେ ଦୁଇ ଗୋଷ୍ଠୀରେ ବିଭକ୍ତ । ଯେଉଁମାନେ ସଂସାର ତ୍ୟାଗ କରୁଥିଲେ ସେମାନେ ଥିଲେ ବୌଦ୍ଧ ଭିକ୍ଷୁ । ଯେଉଁମାନେ ସାଂସାରିକ ଜୀବନ ଯାପନ କରୁଥିଲେ ସେମାନେ ଥିଲେ ସାଧାରଣ ଉପାସକ । ଏହି ଗୃହୀ ଉପାସକମାନଙ୍କ ପ୍ରତି ଆଷ୍ଟାଙ୍ଗିକ ମାର୍ଗ ଥିଲା ପ୍ରକୃତ ଧର୍ମପଥ ।

**ପୁନର୍ଜନ୍ମ ଓ କର୍ମଫଳ**—ମହାବୀର ଜିନଙ୍କ ପରି ଗୌତମବୁଦ୍ଧ କର୍ମବାଦ ଓ ପୁନର୍ଜନ୍ମ ଉପରେ ଅଗାଧ ବିଶ୍ୱାସ ରଖିଥିଲେ । ନିଜ କର୍ମଫଳ ଭୋଗ କରିବା ବ୍ୟତୀତ ମନୁଷ୍ୟର ଅନ୍ୟ ଉପାୟ ନାହିଁ । ସୁକର୍ମ ପାଇଁ ସୁଫଳ ଓ କୁକର୍ମ ପାଇଁ କୁଫଳ, ଏହା ହେଉଛି ଅନିବାର୍ଯ୍ୟ ବିଧି । ଜନ୍ମଜନ୍ମାନ୍ତର ପାଇଁ କର୍ମଜନିତ ଫଳଭୋଗ ଲାଗି ରହିଛି । ଅଧିକନ୍ତୁ ଅଧିକତର କୁକର୍ମ ପାଇଁ ମନୁଷ୍ୟକୁ ନିମ୍ନରୁ ନିମ୍ନତର ସ୍ତରରେ ଜନ୍ମିବାକୁ ହୁଏ । ସୁକର୍ମ ଫଳରେ ଉଚ୍ଚରୁ ଉଚ୍ଚତର ଜୀବନଯାତ୍ରା ସମ୍ଭବ ହୁଏ । ଯେତେବେଳେ ଆତ୍ମଶୁଦ୍ଧି ବଳରେ ମନୁଷ୍ୟ ନିଷ୍କାମ ଜୀବନ ପାଇଁ ସମର୍ଥ ହୁଏ, ସେତେବେଳେ ସେହି ମନୁଷ୍ୟର ଆତ୍ମା ନିର୍ବାଣ ପ୍ରାପ୍ତି ପାଇଁ କ୍ଷମ ହୋଇଥାଏ ।

ବୁଦ୍ଧଙ୍କ ମତରେ ସଂସାରର ଦୁଃଖ ଓ ଜଞ୍ଜାଳରୁ ପରିତ୍ରାଣ ପାଇବା ପାଇଁ କର୍ମବନ୍ଧନରୁ ମୁକ୍ତିଲାଭ କରିବା ଆବଶ୍ୟକ । ମାର୍ଜିତ ଓ ଉନ୍ନତ କର୍ମ ଦ୍ୱାରା ହିଁ କର୍ମଫଳରୁ ମୁକ୍ତି ମିଳେ । ସତ୍‌ପଥରେ ପରିଶୁଦ୍ଧ ଆତ୍ମା ହିଁ ଉନ୍ନତ ଓ ପୁଣ୍ୟକର୍ମ ପାଇଁ ସମର୍ଥ ହୁଏ । ବୌଦ୍ଧ ଦର୍ଶନରେ କର୍ମଫଳ ଓ ପୁନର୍ଜନ୍ମ ସମ୍ପର୍କରେ ଉଚ୍ଚାଙ୍ଗ ତତ୍ତ୍ୱମାନ ସ୍ଥାନ ପାଇଥିଲା ।

**ଅହିଂସା**—ବୁଦ୍ଧଙ୍କ ପ୍ରଚାରିତ ଧର୍ମର ଅନ୍ୟତମ ମୂଳମନ୍ତ୍ର ଥିଲା ଅହିଂସା । ସମଗ୍ର ଜୀବଜଗତ ପ୍ରତି ଦୟା ପ୍ରଦର୍ଶନ କରିବା ଏବଂ ଜୀବହିଂସା ଓ ଜୀବହତ୍ୟା ବର୍ଜନ କରିବା ପାଇଁ ବୁଦ୍ଧ ଉପଦେଶ ଦେଇଥିଲେ । 'ଅହିଂସା ପରମ ଧର୍ମ' ଥିଲା ତାଙ୍କର ଅମର ବାଣୀ ।

ଅହିଂସାର ଅର୍ଥ ମଧ୍ୟ ବ୍ୟାପକ ଥିଲା । ମନୁଷ୍ୟ ପ୍ରାଣରେ ଅନ୍ୟପ୍ରତି ସଦ୍‌ଭାବ, ମୈତ୍ରୀ, ପ୍ରୀତି, ଦୟା, ସମ୍ବେଦନା ଓ କରୁଣା ପ୍ରକାଶ ପାଇବା ଥିଲା ପ୍ରକୃତ ନୈତିକତା । ବୁଦ୍ଧଙ୍କ ଅହିଂସା ଧର୍ମରେ ନିର୍ଦ୍ଦୟତା, ନିଷ୍ଠୁରତା, ହିଂସା, ବିଦ୍ୱେଷ ଓ ଅସହନଶୀଳତା ଇତ୍ୟାଦି ଦୁର୍ଗୁଣଗୁଡ଼ିକର ସ୍ଥାନ ନ ଥିଲା । ସଂଯମ, ଦୟା, ଦାନ ଓ ପ୍ରେମ ହିଁ ଥିଲା ପ୍ରକୃତ ପୁଣ୍ୟ । ସବୁପ୍ରକାର ସୁଗୁଣ ଦ୍ୱାରା ପବିତ୍ର ଜୀବନଯାତ୍ରା ବଳରେ ମନୁଷ୍ୟ କର୍ମଜନିତ ଫଳାଫଳରୁ ମୁକ୍ତିଲଭି କରି ନିର୍ବାଣ ପାଇଁ କ୍ଷମ ହେବ ।

**ନିର୍ବାଣ ମାର୍ଗ**—ସଂସାର ଦୁଃଖରୁ ଆତ୍ମାର ମୁକ୍ତିଲାଭ ପ୍ରତି ବୁଦ୍ଧ ବିଶେଷ ଗୁରୁତ୍ୱ ଦେଇଥିଲେ । କର୍ମଫଳ ଓ ପୁନର୍ଜନ୍ମରୁ ମନୁଷ୍ୟର ପରିତ୍ରାଣ ବିଷୟରେ ସେ ଗଭୀର ଚିନ୍ତା କରିଥିଲେ । ନିଜ ଦିବ୍ୟଜ୍ଞାନ ବଳରେ ସେ ଜାଣିଥିଲେ ଯେ, ସବୁପ୍ରକାର ଆଶା, ଆସକ୍ତି ଓ ସାଂସାରିକ ମୋହ ବିସର୍ଜନ ସହ ସତ୍ ଚିନ୍ତା, ସତ୍ ବାକ୍ୟ ଓ ସତ୍ କର୍ମ ଦ୍ୱାରା ମନୁଷ୍ୟ କର୍ମଫଳଜନିତ ପୁନର୍ଜନ୍ମରୁ ନିସ୍ତାର ପାଇ ପାରିବ । ଏହିପ୍ରକାର ମୁକ୍ତିଲାଭକୁ ବୌଦ୍ଧଧର୍ମରେ ନିର୍ବାଣ ବୋଲି ବର୍ଣ୍ଣନା କରାଯାଇଛି । ଜନ୍ମଜନ୍ମାନ୍ତର ଜୀବନବନ୍ଧନରୁ ଚିରମୁକ୍ତି ହେଉଛି ନିର୍ବାଣ ।

ନିର୍ବାଣ ପ୍ରାପ୍ତି ପାଇଁ ମନୁଷ୍ୟକୁ ନିଜର ଜୀବନକାଳ ମଧ୍ୟରେ ପ୍ରସ୍ତୁତ ହେବାପାଇଁ ବୁଦ୍ଧ ଉପଦେଶ ଦେଇଥିଲେ । ଆତ୍ମସଂଯମ ଦ୍ୱାରା ତାହା ସମ୍ଭବ ବୋଲି ସେ କହିଥିଲେ । ନୈତିକ ଜୀବନ ପାଇଁ ସେ କେତେଗୁଡ଼ିଏ ଆଚରଣ ପାଳନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେହି ଆଚରଣଗୁଡ଼ିକ ହେଲା, ଅହିଂସା ପାଳନ, ଅର୍ଥଲୋଭ ପରିତ୍ୟାଗ, ମାଦକ ଦ୍ରବ୍ୟ ଓ ବିଳାସିତା ବର୍ଜନ, ସତ୍ୟର ଆଶ୍ରୟ, ସମସ୍ତଙ୍କ ପ୍ରତି ସତ୍ ଆଚରଣ, ପାର୍ଥିବ ପଦାର୍ଥ ପ୍ରତି ଆସକ୍ତି ତ୍ୟାଗ, ଇତ୍ୟାଦି । ବାସନା କାମନାରୁ ନିଜକୁ ମୁକ୍ତ କରିପାରିଲେ ଆତ୍ମା ବନ୍ଧନହୀନ ହୋଇପାରିବ । ସେହି ନିଷ୍କାମ ଆତ୍ମା ହିଁ ନିର୍ବାଣ ପ୍ରାପ୍ତି ପାଇଁ ଯୋଗ୍ୟ ହେବ ।

ନିର୍ବାଣପ୍ରାପ୍ତ ଆତ୍ମାର ତୃଷ୍ଣା ନାହିଁ କି ଦୁଃଖ ନାହିଁ, ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ନିର୍ବାଣ ଲାଭ ଥିଲା ବୌଦ୍ଧମାନଙ୍କର ଚରମ ଲକ୍ଷ୍ୟ । ସେଥିପାଇଁ ପ୍ରସ୍ତୁତ ହେବା ଥିଲା ପ୍ରତ୍ୟେକ ବୌଦ୍ଧର କର୍ତ୍ତବ୍ୟ । ସେହି ପ୍ରସ୍ତୁତି ପାଇଁ ଯେଉଁ

ଆଚରଣ ବିଧି ପାଳନ କରାଗଲା ତା'ଦ୍ୱାରା ବୌଦ୍ଧଧର୍ମ ଏକ ନୈତିକ ନିଷ୍ଠାରେ ପରିଣତ ହେଲା । ତାହା ଥିଲା ବୌଦ୍ଧ ଧର୍ମର ବିଶେଷତ୍ୱ ।

**ସଂସ୍କାର ନୀତି**—ତଦାନୀନ୍ତନ ଭାରତରେ ଦେଖା ଯାଇଥିବା ଧର୍ମୀୟ କୁସଂସ୍କାର ଓ ସାମାଜିକ ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ଗୌତମ ବୁଦ୍ଧ ଜଣେ ମହାନ ବିପ୍ଳବୀ ବା ସଂସ୍କାରକ ଭାବେ ଆବିର୍ଭୂତ ହୋଇଥିଲେ । ନିଜର ଆଧ୍ୟାତ୍ମବାଦ ଦ୍ୱାରା ସେ ପ୍ରଚଳିତ ବିଶ୍ୱାସରେ ପରିବର୍ତ୍ତନ ଆଣିବାକୁ ଉଦ୍ୟମ କରିଥିଲେ । ସେ ବେଦର ପ୍ରାଧାନ୍ୟ ଅସ୍ୱୀକାର କଲେ । ବୈଦିକ କ୍ରିୟାକାଣ୍ଡ ମୂଲ୍ୟହୀନ ବୋଲି କହିଲେ । ଧର୍ମ ନାମରେ ପ୍ରଚଳିତ ହିଂସାକାଣ୍ଡ ବିରୁଦ୍ଧରେ ମତ ସୃଷ୍ଟି କଲେ । ଜୀବହତ୍ୟା ଓ ବଳି ପ୍ରଥାର ପ୍ରବଳ ପ୍ରତିରୋଧ କଲେ ।

ବୁଦ୍ଧଙ୍କ ମତରେ ବିଶୁଦ୍ଧ ଜୀବନଯାପନ ହିଁ ପ୍ରକୃତ ଧର୍ମ । ଦେବଦେବୀ ଆରାଧନା, ମନ୍ତ୍ରପାଠ, ଯାଗଯଜ୍ଞ ଓ ପୂଜା ପଦ୍ଧତି ଦ୍ୱାରା ମୁକ୍ତି ବା ନିର୍ବାଣ ପାଇଁ ସେ ନୈତିକ ମାର୍ଗ ପ୍ରବର୍ତ୍ତନ କରିଥିଲେ । ଫଳତଃ, ନୈତିକତା ହେଲା ତାଙ୍କ ପ୍ରଚାରିତ ଧର୍ମର ମୂଳ ଭିତ୍ତି ।

ବୁଦ୍ଧ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟ ଅସ୍ୱୀକାର କରିଥିଲେ । ସାମାଜିକ ଭେଦଭାବ ଲୋପ କରିବା ପାଇଁ ସେ ଅଗ୍ରସର ହୋଇଥିଲେ । ଜାତିପ୍ରଥା ଅସ୍ୱୀକାରପୂର୍ବକ ସେ ସମସ୍ତ ମନୁଷ୍ୟଙ୍କୁ ଏକ ଜାତି ବୋଲି କହିଥିଲେ । ତାଙ୍କ ଆଗରେ ଉଚ୍ଚ ନୀଚ କିମ୍ବା ବ୍ରାହ୍ମଣ ଶୂଦ୍ରର ପ୍ରଶ୍ନ ନ ଥିଲା । ବୁଦ୍ଧଙ୍କ ଦର୍ଶନରେ ଈଶ୍ୱରଙ୍କ ପିତୃତ୍ୱ ଉପରେ ବିଶ୍ୱାସ ରଖିବା ଅପେକ୍ଷା ମନୁଷ୍ୟର ଭ୍ରାତୃତ୍ୱ ଉପରେ ବିଶ୍ୱାସ ରଖିବା ଥିଲା ପ୍ରକୃତ ଧର୍ମ ।

ଅନ୍ଧବିଶ୍ୱାସ, କୁସଂସ୍କାର ଓ ସାମାଜିକ ଅସମତା ବିରୁଦ୍ଧରେ ବୌଦ୍ଧମାନଙ୍କର ଅଭିଯାନ ଫଳରେ ଭାରତରେ ଏକ ଅଭିନବ ମାନସିକ ଜାଗରଣ ଦେଖିବାକୁ ମିଳିଥିଲା । ପତିତ, ଅବହେଳିତ ଓ ଅସ୍ପୃଶ୍ୟମାନଙ୍କ ପ୍ରାଣରେ ବୌଦ୍ଧଧର୍ମ ନୂତନ ଆଶା ସଞ୍ଚାର କରିଥିଲା । ତେଣେ, ବିଜ୍ଞ ବ୍ୟକ୍ତିମାନେ ନୂତନ ଭାବେ ଆଧ୍ୟାତ୍ମିକ ମୂଲ୍ୟବୋଧ ପ୍ରତି ଆକୃଷ୍ଟ ହୋଇଥିଲେ । ବୌଦ୍ଧ ବିପ୍ଳବ ଦ୍ୱାରା ଭାରତବାସୀ ନୈତିକ ଓ ସାମାଜିକ କ୍ଷେତ୍ରରେ ବିଶେଷ ଭାବେ ଉପକୃତ ହୋଇଥିଲେ ।

## ବୌଦ୍ଧଧର୍ମର ପ୍ରସାର

ବୁଦ୍ଧଙ୍କ ଜୀବନ କାଳରେ ଅସଂଖ୍ୟ ନରନାରୀ ତାହାଙ୍କ ଧର୍ମ ପ୍ରତି ଆକର୍ଷିତ ହୋଇଥିଲେ । ରାଜା ପ୍ରଜା, ଧନୀ ନିର୍ଦ୍ଧନ, ବିଜ୍ଞ ଓ ଅଜ୍ଞ, ଉଚ୍ଚ ନୀଚ, ବ୍ରାହ୍ମଣ ଓ ଶୂଦ୍ର, ସମସ୍ତେ ତାହାଙ୍କ ପବିତ୍ର ବାଣୀ ଶ୍ରବଣ କରିଥିଲେ । ବୁଦ୍ଧ ସରଳ ଓ ବୋଧଗମ୍ୟ ଭାଷାରେ ପ୍ରଚାର କାର୍ଯ୍ୟ ଚଳାଇ ଥିଲେ । ତାଙ୍କ ବ୍ୟକ୍ତିଗତ ମହତ୍ତ୍ୱ ତଥା ତାଙ୍କ ଧର୍ମର ତାତ୍ତ୍ୱିକ ଅର୍ଥ ମନୁଷ୍ୟର ହୃଦୟସ୍ପର୍ଶ କରିଥିଲା । ବୁଦ୍ଧଙ୍କ ପରେ ତାଙ୍କ ପ୍ରତିଷ୍ଠିତ ବୌଦ୍ଧସଂଘ ଧର୍ମପ୍ରଚାର କାର୍ଯ୍ୟରେ ଲିପ୍ତ ରହିଲେ ।

ଏହା ସତ୍ତ୍ୱେ, ବୌଦ୍ଧଧର୍ମ ଭାରତ ଭୂମିରେ ସୀମିତ ଆକାରରେ ହିଁ ରହିଲା । ବୁଦ୍ଧଙ୍କ ପରେ ପ୍ରାୟ ଦୁଇଶତ ବର୍ଷରୁ ଊର୍ଦ୍ଧ୍ୱକାଳ ସେହି ଧର୍ମ ଗୋଟିଏ ବ୍ୟାପକ ଜଣଧର୍ମ ରୂପେ ଦେଖିବାକୁ ମିଳି ନ ଥିଲା ।

ସେହିପରି ଅବସ୍ଥାରେ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ, ବୌଦ୍ଧଧର୍ମର ଇତିହାସରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ସଂଘଟିତ ହେଲା । ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କ କଳିଙ୍ଗ ଆକ୍ରମଣ ଦ୍ୱାରା ଯେଉଁ ଭୟାବହ ଯୁଦ୍ଧ ଘଟିଥିଲା ତାହାର ଫଳାଫଳ ସୁଦୂରପ୍ରସାରୀ ହେଲା । ହିଂସାପ୍ରଣୋଦିତ ଯୁଦ୍ଧର ପରିଣାମ ଦର୍ଶନ କରି ତାହାଙ୍କ ହୃଦୟରେ ଗଭୀର ଅନୁତାପ ଜାତ ହୋଇଥିଲା । ଫଳରେ ସେ ବୁଦ୍ଧଙ୍କ ପ୍ରବର୍ତ୍ତିତ ଅହିଂସା ମନ୍ତ୍ରରେ ଦୀକ୍ଷିତ ହେଲେ । ତାହାଙ୍କ ଅଭୂତପୂର୍ବ ଉଦ୍ୟମ ଫଳରେ ସାରା ଭାରତରେ ବୌଦ୍ଧଧର୍ମର ସ୍ରୋତ ପ୍ରବଳ ଭାବରେ ବ୍ୟାପି ଯାଇଥିଲା ।

ସେତିକରେ ସନ୍ତୁଷ୍ଟ ନ ହୋଇ ଅଶୋକ ଭାରତ ବାହାରେ ବୌଦ୍ଧ-ଧର୍ମ ପ୍ରଚାର କରିବା ପାଇଁ ଉଦ୍ୟମ କରିଥିଲେ । ତାଙ୍କର ସେହି ଉଦ୍ୟମ ସଫଳ ହେଲା । ପ୍ରାଚ୍ୟ ଭୂମିରେ ସିଂହଳ, ବ୍ରହ୍ମଦେଶ ଓ ଶ୍ୟାମ ପ୍ରଭୃତି ରାଜ୍ୟରେ ବୌଦ୍ଧ ଧର୍ମ ପ୍ରସାରଲାଭ କଲା । ସେତେଣେ, ଅଶୋକଙ୍କ ଶାନ୍ତିଦୂତମାନେ ପାଶ୍ଚାତ୍ୟ ଭୂଖଣ୍ଡର ମିଶର, ମ୍ୟାସିଡୋନିଆ, ସିରିଆ, ସାଇରିନ୍ ଓ ଏପିରସ ପ୍ରଭୃତି ଦେଶରେ ଶାନ୍ତି, ଅହିଂସା ଓ ମୈତ୍ରୀ ପ୍ରତି ଲୋକଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେହିଁ ସେହିଁ ବୌଦ୍ଧ ଧର୍ମ ଏକ ବିଶ୍ୱ ଧର୍ମର ରୂପ ନେବାକୁ ଆରମ୍ଭ କଲା ।

ଅଶୋକଙ୍କ ପରେ, ଖ୍ରୀଷ୍ଟଯୁଗର ପ୍ରଥମ ଶତାବ୍ଦୀରେ, କୁଶାଣ-ସମ୍ରାଟ୍ କନିଷ୍କ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିଥିଲେ । ତାହାଙ୍କ ରାଜତ୍ୱ କାଳରେ ପଶ୍ଚିମ ଏସିଆ, ତିବ୍ବତ ଓ ଚୀନ ଦେଶରେ ବୌଦ୍ଧଧର୍ମ ବ୍ୟାପି ଯାଇଥିଲା । ପରେ ପରେ ଜାପାନ ଓ ସୁଦୂର ପ୍ରାଚ୍ୟର ଅନ୍ୟ ଦେଶମାନଙ୍କରେ ବୌଦ୍ଧ ଧର୍ମ ପ୍ରସାର ଲାଭ କଲା ।

ବୁଦ୍ଧ ଏବଂ ଅଶୋକଙ୍କ ସମୟରେ ବୌଦ୍ଧମାନେ ବୁଦ୍ଧଙ୍କର ପ୍ରକୃତ ମତ ଉପରେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ସେତେବେଳେ ବୁଦ୍ଧଙ୍କ ମୂର୍ତ୍ତି-ପୂଜା ପ୍ରଚଳିତ ହୋଇ ନ ଥିଲା । କିନ୍ତୁ ସମ୍ରାଟ କନିଷ୍କଙ୍କ ସମୟ ବେଳକୁ ବୁଦ୍ଧଙ୍କ ମୂର୍ତ୍ତିପୂଜା ବହୁଳ ଭାବରେ ଆଦୃତ ହେଲା । ଯେଉଁମାନେ ପ୍ରାଚୀନ ରୀତି ଅନୁସାରେ ବୌଦ୍ଧଧର୍ମ ପାଳନ କଲେ ସେମାନେ ହୀନଯାନୀ ନାମରେ କଥିତ ହେଲେ । ମୂର୍ତ୍ତିପୂଜକ ବୌଦ୍ଧମାନେ ମହାଯାନୀ ନାମରେ ପ୍ରସିଦ୍ଧ ହେଲେ । ଏହିପରି ଭାବରେ, ବୌଦ୍ଧଧର୍ମ ମଧ୍ୟରେ ଦୁଇଗୋଟି ପନ୍ଥା ଦେଖିବାକୁ ମିଳିଲା, ଯଥା : ହୀନଯାନ ଓ ମହାଯାନ ।

ସମଗ୍ର ପ୍ରାଚ୍ୟ ଭୂଖଣ୍ଡରେ ବୌଦ୍ଧଧର୍ମ କେବଳ ଯେ ଗୋଟିଏ ଧର୍ମରୂପେ ପ୍ରସାର ଲାଭ କରିଥିଲା ତାହା ନୁହେଁ । ବୌଦ୍ଧଧର୍ମ ଥିଲା ବାସ୍ତବ ପକ୍ଷରେ ସଭ୍ୟତାର ଏକ ଆଲୋକ । ସାହିତ୍ୟ, ଦର୍ଶନ, କଳା, ସ୍ଥାପତ୍ୟ, ରୀତିନୀତି ଓ ଆଚାର ବ୍ୟବହାର ଇତ୍ୟାଦି ପ୍ରତ୍ୟେକ ବିଷୟରେ ପ୍ରାଚ୍ୟବାସୀମାନେ ବୌଦ୍ଧ-ଧର୍ମ ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇଥିଲେ ।

## ଚତୁର୍ଥ ଅଧ୍ୟାୟ

# ଗୁପ୍ତଯୁଗରେ ସଂସ୍କୃତ ସାହିତ୍ୟ

**( Sanskrit Literature during the Gupta Age )**

### ସଂସ୍କୃତ ଭାଷା

ବିଶ୍ୱର ସୁମହାନ୍ ଶାଶ୍ୱତ ଭାଷାମାନଙ୍କ ମଧ୍ୟରେ ସଂସ୍କୃତ ଭାଷା ଅନ୍ୟତମ ଅଟେ । ପରବର୍ତ୍ତୀ କାଳରେ ସେହି ଭାଷା ଭାରତୀୟ ଆର୍ଯ୍ୟଭାଷାମାନଙ୍କର ଜନନୀ ରୂପେ ଦେଖିବାକୁ ମିଳିଥିଲା । ଖ୍ରୀଷ୍ଟଜନ୍ମର ଆନୁମାନିକ ଦୁଇ ସହସ୍ର ବର୍ଷ ପୂର୍ବେ ଆର୍ଯ୍ୟଜାତି ଭାରତରେ ପ୍ରବେଶ କରିଥିଲେ । ସେହି ପ୍ରାଚୀନ ଆର୍ଯ୍ୟ-ମାନଙ୍କର ଆଦିଭାଷା ମଧ୍ୟରୁ ସଂସ୍କୃତ ଭାଷା ଆତ୍ମପ୍ରକାଶ କରିଥିଲା । ଋକ୍‌ବେଦର ରଚନା କାଳରୁ କ୍ରମାଗତଭାବେ ଧୀରେ ଧୀରେ ସଂସ୍କୃତ ଭାଷାର ଉନ୍ନତି ଘଟିଥିଲା । ସେହି ଭାଷାକୁ ସୁଦୃଢ଼ କରିବା ପାଇଁ ପ୍ରାଚୀନ କାଳରୁ ବ୍ୟାକରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ଫଳରେ ଭାଷା ଜ୍ଞାନରେ ଶୃଙ୍ଖଳା ରହିଲା । ଧର୍ମ ଉପଯୋଗୀ ଭାଷାରୂପେ ସଂସ୍କୃତର ମହତ୍ତ୍ୱ ମଧ୍ୟ ବଢ଼ି ଚାଲିଥିଲା । ରାମାୟଣ ରଚନା ବେଳକୁ ସଂସ୍କୃତ ଭାଷା ବଳିଷ୍ଠ ଆକାର ଧାରଣ କରି ସାରିଥିଲା । ପାଣିନି ଓ ପତଞ୍ଜଳି ପ୍ରଭୃତି ପଣ୍ଡିତମାନେ ଭାଷାକୁ ନିର୍ଭୁଲ ଓ ବିଶୁଦ୍ଧ ରଖିବା ପାଇଁ ଶିକ୍ଷା ଦେଇ ଯାଇଥିଲେ । ଖ୍ରୀଷ୍ଟପୂର୍ବ ଆନୁମାନିକ ଚତୁର୍ଥ ଶତାବ୍ଦୀରେ ପାଣିନି 'ଅଷ୍ଟାଧ୍ୟାୟୀ' ନାମକ ଗ୍ରନ୍ଥ, ଏବଂ ଖ୍ରୀଷ୍ଟଜନ୍ମର ଆନୁମାନିକ ଦେଢ଼ଶହ ବର୍ଷ ପୂର୍ବେ ପତଞ୍ଜଳି ତାଙ୍କର 'ମହାଭାଷ୍ୟ' ଗ୍ରନ୍ଥ ପ୍ରଣୟନ ଦ୍ୱାରା ସଂସ୍କୃତ ଭାଷାର ଅଶେଷ କଲ୍ୟାଣ ସାଧନ କରିଥିଲେ ।

ପ୍ରାଚୀନ ଯୁଗରେ ବ୍ରାହ୍ମଣ୍ୟ ହିନ୍ଦୁଧର୍ମର ବିକାଶ କ୍ଷେତ୍ରରେ ସଂସ୍କୃତ ଭାଷାର ମହାନ୍ ଭୂମିକା ଦେଖିବାକୁ ମିଳିଥିଲା । ସଂସ୍କୃତ ମାଧ୍ୟମରେ ସନାତନ

ଆର୍ଯ୍ୟ ସଂସ୍କୃତି ସମଗ୍ର ଭାରତରେ ପ୍ରସାର ଲାଭ କରିଥିଲା । ସବୁପ୍ରକାର ଧର୍ମ-କାର୍ଯ୍ୟରେ ଓ ସାଧାରଣ ତଥା ପାରିବାରିକ ପୂଜାପଦ୍ଧତିରେ ସଂସ୍କୃତ ଭାଷା ବ୍ୟବହୃତ ହେଉଥିଲା । ଜ୍ଞାନୀମାନେ ସଂସ୍କୃତ ଭାଷାରେ ଶିକ୍ଷାଦାନ କରୁଥିଲେ । ଜ୍ଞାନ, ବିଜ୍ଞାନ, ବ୍ୟାକରଣ, ଗଣିତ ଜ୍ୟୋତିଷ, ଫଳିତ ଜ୍ୟୋତିଷ, ସ୍ୱର ବିଜ୍ଞାନ, ଛନ୍ଦଃ ଶାସ୍ତ୍ର, ପୁରାଣ, ଚିକିତ୍ସା ବିଜ୍ଞାନ ଓ ସଙ୍ଗୀତ ପ୍ରଭୃତି ବିଷୟରେ ସଂସ୍କୃତ ହିଁ ଥିଲା ଶିକ୍ଷିତମାନଙ୍କର ଭାଷା ।

କ୍ରମେ କ୍ରମେ ସଂସ୍କୃତ ଭାଷା ଓ ସାହିତ୍ୟ ଅଧିକତର ବିକାଶ ଓ ସୁନ୍ଦର ଆକାର ଧାରଣ କରି ଶେଷରେ ଗୁପ୍ତ ରାଜବଂଶର ରାଜତ୍ୱ କାଳରେ ସ୍ୱ-ଉନ୍ନତିର ଶୀର୍ଷ ସୀମାରେ ପହଞ୍ଚିଥିଲା । ସେଥିପାଇଁ ଗୁପ୍ତଯୁଗକୁ ସଂସ୍କୃତ ସାହିତ୍ୟର 'ସୁବର୍ଣ୍ଣଯୁଗ' ବୋଲି ବର୍ଣ୍ଣନା କରାଯାଏ । ସେ ଯୁଗର ପ୍ରସିଦ୍ଧ ସଂସ୍କୃତ ରଚନାମାନ ଉଲ୍ଲେଖ କରିବା ପୂର୍ବରୁ ପ୍ରଥମେ ଭାରତ ଇତିହାସରେ ଗୁପ୍ତଯୁଗର ବିଶେଷତ୍ୱ ଉପରେ ସୂଚନା ଦେବା ଆବଶ୍ୟକ ।

**ଗୁପ୍ତଯୁଗ**

ଗୁପ୍ତଯୁଗ ପ୍ରାଚୀନ ଭାରତର ସୁବର୍ଣ୍ଣଯୁଗ ନାମରେ ବିଦିତ ହୋଇଛି । ସଭ୍ୟତାର ବିକାଶ ଦୃଷ୍ଟିରୁ ପ୍ରାଚୀନ ଯୁଗୀୟ ଗ୍ରୀସ୍‌ଦେଶର ପେରିକ୍ଲିସ୍ ଯୁଗ, ରୋମ୍ ଦେଶର ଅଗଷ୍ଟାସ୍ ଯୁଗ, ତଥା ମଧ୍ୟଯୁଗୀୟ ଇଂଲଣ୍ଡର ଏଲିଜାବେଥୀୟ ଯୁଗ ସହିତ ଭାରତର ଗୁପ୍ତଯୁଗକୁ ତୁଳନା କରାଯାଇଛି । ସେହି ଯୁଗରେ ଏ ଦେଶରେ ଏକ ସାଂସ୍କୃତିକ ଜାଗରଣ ଦେଖା ଦେଇଥିଲା । ଧର୍ମ, ଦର୍ଶନ, ସାହିତ୍ୟ, ଜ୍ଞାନ, ବିଜ୍ଞାନ, ସ୍ଥାପତ୍ୟ, କଳା, ଶିକ୍ଷା ଓ ଶିଳ୍ପ ଇତ୍ୟାଦି କ୍ଷେତ୍ରରେ ଭାରତବାସୀମାନେ ସେମାନଙ୍କ ପ୍ରତିଭାର ଯଥେଷ୍ଟ ପରିଚୟ ଦେଇଥିଲେ । କେତେକ ଗୁଡ଼ିଏ ବିଶେଷ କାରଣ ପାଇଁ ସେପରି ଏକ ଜାତୀୟ ଚେତନା ସମ୍ଭବପର ହୋଇଥିଲା ।

ପ୍ରଥମତଃ, ଗୋଟିଏ ରାଜନୈତିକ ଅଶାନ୍ତିମୟ ସମୟ ପରେ ଗୁପ୍ତ ରାଜବଂଶ ପାଟଳିପୁତ୍ରକୁ କେନ୍ଦ୍ରକରି ଏକ ସୁଦୃଢ଼ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ୩୨୦ ଖ୍ରୀଷ୍ଟାବ୍ଦରେ ପ୍ରଥମ ଚନ୍ଦ୍ରଗୁପ୍ତ ସେହି ସାମ୍ରାଜ୍ୟର ମୂଳଭିତ୍ତି ଦେଇଥିଲେ । ତାହାଙ୍କ ପରେ ସମୁଦ୍ରଗୁପ୍ତ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ, କୁମାରଗୁପ୍ତ ଓ ସ୍କନ୍ଦଗୁପ୍ତ 'ଗୁପ୍ତ ସାମ୍ରାଜ୍ୟ' ଉପରେ ରାଜତ୍ୱ କରିଥିଲେ । ସମୁଦ୍ରଗୁପ୍ତ ଓ

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ଶାସନ କାଳରେ ପ୍ରାୟତଃ ସମଗ୍ର ଉତ୍ତର-ଭାରତର ରାଜନୈତିକ ଏକତା ପ୍ରତିଷ୍ଠିତ ହେବା ସଙ୍ଗେ ଦକ୍ଷିଣ-ଭାରତରେ ମଧ୍ୟ ଗୁପ୍ତ ରାଜତ୍ୱର ପ୍ରାଧାନ୍ୟ ସ୍ୱୀକୃତ ହୋଇଥିଲା । ଦୀର୍ଘ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଗୁପ୍ତ ସମ୍ରାଟମାନେ ଭାରତର ଏକ ସୁବିସ୍ତୃତ ଅଞ୍ଚଳ ଉପରେ ଶାସନ କରିବାକୁ ସମର୍ଥ ହୋଇଥିଲେ । ସେମାନେ ସୁଦକ୍ଷ ଓ ପ୍ରଜାବତ୍ସଳ ଶାସକ ତଥା ସଂସ୍କୃତିର ପୃଷ୍ଠପୋଷକ ଥିଲେ ।

ଦ୍ୱିତୀୟତଃ, ଗୁପ୍ତ ରାଜତ୍ୱ କାଳରେ ଦେଶରେ ଶାନ୍ତି ବିରାଜିତ ଥିଲା । ବିଦେଶୀ ଆକ୍ରମଣର ଭୟ ନ ଥିଲା । ଦେଶର ଏକତା ଓ ନିରାପତ୍ତା ଦୃଷ୍ଟିରୁ ଦେଶବାସୀଙ୍କ ମଧ୍ୟରେ ସହଯୋଗ ବୃଦ୍ଧି ପାଇଥିଲା । ସାମୂହିକ ଭାବରେ ସେମାନେ ସେମାନଙ୍କ ସୃଜନୀ ଶକ୍ତିର ପରିଚୟ ଦେବାକୁ ସୁଯୋଗ ଓ ସମୟ ପାଇଥିଲେ ।

ତୃତୀୟତଃ, ଗୁପ୍ତ ସମ୍ରାଟମାନେ ସୁଶାସକ ଥିଲେ । ସେମାନେ ଶକ୍ତି-ଶାଳୀ ଥିଲେ ମଧ୍ୟ ସ୍ୱେଚ୍ଛାଚାରୀ ବା ଅତ୍ୟାଚାରୀ ନ ଥିଲେ । ଧର୍ମ, ନୀତି ଓ ଆଇନ ଅନୁଯାୟୀ ଶାସନ ଚାଲିଥିଲା । ଦେଶବାସୀ ଉଦାର ଶାସନ ଉପଭୋଗ କରିବା ସଙ୍ଗେ ନିର୍ଭୟରେ ବସବାସ କରୁଥିଲେ । ସେମାନେ ନୀତି ପରାୟଣ, ଦୟାଳୁ ଓ ସତ୍ ଥିଲେ । ଅପରାଧ ଓ ପାପକର୍ମ ପ୍ରତି ଲୋକଙ୍କର ପ୍ରବୃତ୍ତି ନ ଥିଲା । ସେଥିପାଇଁ ଦେଶରେ ଦଣ୍ଡନୀତି କୋହଳ ଥିଲା । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ସମୟରେ ଭାରତ ଭ୍ରମଣରେ ଆସିଥିବା ଚୀନ ପରିବ୍ରାଜକ ଫା-ହିୟାନ୍ ଲେଖିଥିଲେ "ଦେଶବାସୀମାନେ ହେଉଛନ୍ତି ସଂଖ୍ୟାବହୁଳ ଓ ସୁଖୀ । ସେମାନଙ୍କୁ ନିଜ ନିଜ ଘରଦ୍ୱାର ତାଲିକାଭୁକ୍ତ କରିବାକୁ ହେଉ ନ ଥିଲା, କିମ୍ବା ସରକାରୀ ଶାସନକର୍ତ୍ତା ବା ତାଙ୍କ ଆଇନ ଅଦାଲତର ଦ୍ୱାରସ୍ଥ ହେବାକୁ ପଡ଼ୁ ନ ଥିଲା । ଶିରଶ୍ଛେଦନ କିମ୍ବା ଅନ୍ୟ କୌଣସି ପ୍ରକାର ଶାରୀରିକ ଦଣ୍ଡ ବିନା ରାଜା ଦେଶ ଶାସନ କରୁଥିଲେ ।" ଦେଶରେ ଚୋର ତସ୍କରମାନଙ୍କର ଉପଦ୍ରବ ନ ଥିଲା । ସ୍ଥାନରୁ ସ୍ଥାନାନ୍ତର ଯିବାପାଇଁ କୌଣସି ବାଧା ନ ଥିଲା । ତେଣୁ ଦେଶବାସୀଙ୍କ ମଧ୍ୟରେ ଭାବ ଆଦାନ ପ୍ରଦାନ ସମ୍ଭବ ହେଉଥିଲା । ସଂସ୍କୃତିର ବିକାଶ ପାଇଁ ପରିବେଶ ଉପଯୋଗୀ ଥିଲା ।

ଚତୁର୍ଥତଃ, ଦେଶବାସୀଙ୍କ ଆର୍ଥିକ ଅବସ୍ଥା ଉନ୍ନତ ଥିଲା । ଆଭ୍ୟନ୍ତରୀଣ ବାଣିଜ୍ୟ ବ୍ୟବସାୟ ବହୁଳଭାବେ ବୃଦ୍ଧି ପାଇଥିଲା । ଗୁପ୍ତ ସାମ୍ରାଜ୍ୟର ସୀମା

ପଶ୍ଚିମରେ ଆରବ ସାଗର ପର୍ଯ୍ୟନ୍ତ ବିସ୍ତୃତ ଥିବାରୁ, ପାଶ୍ଚାତ୍ୟ ଜଗତ ସହିତ ବହିର୍ବାଣିଜ୍ୟ ଲାଗି ରହିଥିଲା । ବହିର୍ଦେଶମାନଙ୍କରୁ ପ୍ରଚୁର ଅର୍ଥ ଭାରତକୁ ଆସୁଥିଲା । ଦେଶର ଚଉଆଡ଼େ ସମୃଦ୍ଧ ନଗରମାନ ଦେଖିବାକୁ ମିଳିଥିଲା । ନଗରବାସୀମାନେ ଅର୍ଥଦାନ ଦ୍ୱାରା ଲୋକହିତକର ଅନୁଷ୍ଠାନମାନ ସ୍ଥାପନ କରୁଥିଲେ । ଫା-ହିୟାନଙ୍କ ଲେଖାରୁ ଜଣାଯାଏ ଯେ, ଜନସାଧାରଣ ଧନଶାଳୀ ହେଲେ ମଧ୍ୟ ବ୍ୟଭିଚାରୀ ହେଉ ନ ଥିଲେ । ବଜାରରେ ମଦ୍ୟ ଦୋକାନ ବା କଂସେଇଖାନା ଦେଖିବାକୁ ମିଳୁ ନ ଥାଏ । ଆର୍ଥିକ ଉନ୍ନତି ପାଇଁ, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ କୀର୍ତ୍ତି ପାଇଁ ଲୋକଙ୍କର ଆଗ୍ରହ ପ୍ରକାଶ ପାଇଥିଲା ।

ପଞ୍ଚମତଃ, ଗୁପ୍ତଯୁଗରେ ଭାରତର ଚଉଦିଗରେ ଗୋଟିଏ ଧର୍ମୀୟ ଜାଗରଣ ପ୍ରକାଶ ପାଇଥିଲା । ଆଧ୍ୟାତ୍ମିକ ଉଦ୍ଦୀପନା ମଧ୍ୟରେ ନାନାପ୍ରକାର ଦେବଦେବୀଙ୍କ ଆରାଧନା ବ୍ୟାପକ ଆକାର ଧାରଣ କରିଥିଲା । ସେଥିସଙ୍ଗେ, ନାନାପ୍ରକାର ଧର୍ମଶାସ୍ତ୍ର ରଚିତ ହେଲା । ତେଣେ, ଅସଂଖ୍ୟ ମନ୍ଦିର ନିର୍ମିତ ହେଲା । ଶିଳ୍ପୀମାନେ ଦେବଦେବୀଙ୍କର ଅଗଣିତ ମୂର୍ତ୍ତି ଗଠନ କଲେ । ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମମତ ବହୁଳ ଭାବରେ ଲୋକପ୍ରିୟ ହେଲା । ଦେଶବାସୀଙ୍କ ଆଧ୍ୟାତ୍ମିକ ଚିନ୍ତନ ଓ ପୂଜା ଆରାଧନା ମଧ୍ୟରେ ଗୋଟିଏ ପ୍ରକାର ସାମୂହିକ ମାନସିକ ଚେତନା ପ୍ରକାଶ ପାଇଲା । ସେହି ଚେତନାର ପ୍ରଭାବ ସାହିତ୍ୟ, ଦର୍ଶନ, କଳା ଓ ସ୍ଥାପତ୍ୟ ଉପରେ ପ୍ରତିଫଳିତ ହେଲା ।

ଏହିପ୍ରକାର ରାଜନୈତିକ, ସାମାଜିକ ଓ ମାନସିକ ଅବସ୍ଥା ମଧ୍ୟରେ ଗୁପ୍ତଯୁଗର ସାହିତ୍ୟ ଉନ୍ନତତର ଆକାର ଧାରଣ କଲା । ସଂସ୍କୃତ ସାହିତ୍ୟ ଗୌରବର ଶୀର୍ଷ ସୀମାରେ ଉପନୀତ ହେଲା ।

**ସଂସ୍କୃତ ସାହିତ୍ୟ**

ଗୁପ୍ତଯୁଗରେ ସଂସ୍କୃତ ଭାଷା ରାଜକୀୟ ତଥା ଧର୍ମୀୟ ଭାଷାରୂପେ ବ୍ୟବହୃତ ହେଉଥିଲା । କବି, ଦାର୍ଶନିକ ଓ ଲେଖକମାନେ ସଂସ୍କୃତ ଭାଷାରେ ଅକଳନ୍ତ ସାହିତ୍ୟ ରଚନା ଦ୍ୱାରା ସଂସ୍କୃତ ସାହିତ୍ୟର ବପୁ ବୃଦ୍ଧି କରିଥିଲେ । ଯେଉଁମାନଙ୍କ ଲେଖନୀ ବଳରେ ସଂସ୍କୃତ ସାହିତ୍ୟର ସୁବର୍ଣ୍ଣଯୁଗ ସଙ୍ଗଠିତ ହୋଇଥିଲା, ସେମାନଙ୍କ ରଚନାଗୁଡ଼ିକର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

**କାଳିଦାସ**

ଗୁପ୍ତଯୁଗର ସାହିତ୍ୟାକାଶରେ ଉଜ୍ଜ୍ୱଳତମ ତାରକା ଥିଲେ ମହାକବି କାଳିଦାସ । ତାହାଙ୍କ ଲେଖନୀ ବଳରେ ସଂସ୍କୃତ ସାହିତ୍ୟ ମହୀୟାନ ହୋଇ-ଥିଲା । ବିଶ୍ୱ ସାହିତ୍ୟର ଅମୂଲ୍ୟ ସମ୍ପଦ ମଧ୍ୟରେ କାଳିଦାସଙ୍କ ରଚନାମାନ ସ୍ଥାନ ପାଇଛି । କାଳିଦାସଙ୍କ ଜନ୍ମସ୍ଥାନ ଉଜ୍ଜୟିନୀ ବୋଲି ବିଶ୍ୱାସ କରାଯାଏ । ସେ ଗୁପ୍ତସମ୍ରାଟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜସଭା ଅଳଂକୃତ କରିଥିଲେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଖ୍ରୀଷ୍ଟୀୟ ଅବ୍ଦ ୩୭୫ରୁ ୪୧୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ଗୋଟିଏ ପୁରାତନ କିମ୍ବଦନ୍ତୀ ଅନୁଯାୟୀ, ଯୌବନର ଆରମ୍ଭ ପର୍ଯ୍ୟନ୍ତ କାଳିଦାସ ଥିଲେ ଜଣେ ଅତିଶୟ ନିର୍ବୋଧ ଓ ମୂର୍ଖ ବ୍ୟକ୍ତି । ସେତେବେଳେ ଜନୈକା ବିଦୁଷୀ ରାଜକନ୍ୟା ଘୋଷଣା କରିଥିଲେ ଯେ, ଯେଉଁ ବ୍ୟକ୍ତି ତାଙ୍କୁ ଜ୍ଞାନଚର୍ଚ୍ଚାରେ ପରାସ୍ତ କରିପାରିବେ ସେହି ବ୍ୟକ୍ତିଙ୍କୁ ସେ ନିଜର ପତି ରୂପେ ବରଣ କରିନେବେ । ତାଙ୍କୁ ବିବାହ କରିବା ଆଶାରେ ଜଣକ ପରେ ଜଣେ ପଣ୍ଡିତମାନେ ତର୍କବିତର୍କ ପାଇଁ ଆସିଥିଲେ, କିନ୍ତୁ ପରାସ୍ତ ହୋଇ ଅପମାନିତ ହୋଇଥିଲେ । କ୍ରୋଧ ପରବଶ ହୋଇ ସେହି ପଣ୍ଡିତମାନେ ଶେଷରେ ରାଜ-କନ୍ୟାଙ୍କୁ ଜଣେ ମହାମୂର୍ଖ ସହିତ ବିବାହ କରାଇବାକୁ ଷଡ଼ଯନ୍ତ୍ର କରିଥିଲେ । ସେମାନେ ଖୋଜି ଖୋଜି ଶେଷରେ ସେହିପରି ଗୋଟିଏ ମୂର୍ଖବ୍ୟକ୍ତିଙ୍କୁ ଆବିଷ୍କାର କଲେ । ସେ ବ୍ୟକ୍ତିଟି ଗୋଟିଏ ପ୍ରକାଣ୍ଡ ବୃକ୍ଷର ଶାଖାଟିଏ ଉପରେ ବସିରହି ସେହି ଶାଖାଟିର ମୂଳଭାଗରେ କୁଠାରାଘାତ କରୁଥିଲା ।

ପଣ୍ଡିତମାନେ ସେହି ନିର୍ବୋଧ ବ୍ୟକ୍ତିକୁ ସାଙ୍ଗରେ ନେଇ ରାଜକନ୍ୟାଙ୍କୁ ତାଙ୍କ ସହିତ ତର୍କ ପାଇଁ ଆହ୍ୱାନ ଦେଇଥିଲେ । ସେମାନେ କହିଥିଲେ ଯେ, ବ୍ୟକ୍ତି ଜଣକ ଅତ୍ୟନ୍ତ ଜ୍ଞାନୀ କିନ୍ତୁ ସେ ମୌନବ୍ରତ ଅବଲମ୍ବନ କରିଥିବାରୁ କେବଳ ସାଙ୍କେତିକ ଭାବେ ଇଙ୍ଗିତ ଦ୍ୱାରା ରାଜକନ୍ୟାଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେବେ । ରାଜକନ୍ୟା ସେଥିରେ ସମ୍ମତ ହେଲେ । ରାଜକନ୍ୟା ମଧ୍ୟ ଇଙ୍ଗିତ ଦ୍ୱାରା ତାତ୍ତ୍ୱିକ ପ୍ରଶ୍ନମାନ ଉତ୍ଥାପନ କଲେ । ନିର୍ବୋଧ ବ୍ୟକ୍ତିଟି କିଛି ବୁଝି ନ ପାରି ନାନାପ୍ରକାର ହସ୍ତ ଭଙ୍ଗି କରିବାକୁ ଲାଗିଲା । କିନ୍ତୁ ପାଖରେ ବସିଥିବା ପଣ୍ଡିତ-ମାନେ ସେହି ହସ୍ତ ଭଙ୍ଗି ଗୁଡ଼ିକୁ ଉଚ୍ଚତର ତାତ୍ତ୍ୱିକ ଅର୍ଥର ଇଙ୍ଗିତ ବୋଲି

ବ୍ୟାଖ୍ୟା କଲେ । ସରଳ ବିଶ୍ୱାସରେ ରାଜକନ୍ୟା ଶେଷରେ ନିଜର ପରାଜୟ ସ୍ୱୀକାର କଲେ ଏବଂ ସେହି ମୂର୍ଖ ବ୍ୟକ୍ତିଙ୍କୁ ବିବାହ କଲେ ।

କିନ୍ତୁ ସେହି ବିବାହ ରାତିରେ ଗୃହ ବାହାରେ ଗୋଟିଏ ଉଷ୍ଟ୍ରର ରବ ଶୁଣି ରାଜକନ୍ୟା ତାଙ୍କ ସ୍ୱାମୀଙ୍କୁ ସେହି ପଶୁଟିର ନାମ ପଚାରିଲେ । ମୂର୍ଖ ସ୍ୱାମୀ ବହୁ କଷ୍ଟରେ ଉତ୍ତର ଦେଲେ 'ଉଟ୍ର' । ସେତେବେଳେ ରାଜକନ୍ୟା ଜାଣି ପାରିଲେ ଯେ ପଣ୍ଡିତମାନଙ୍କ ପ୍ରତାରଣା ଯୋଗୁଁ ସେ ଜଣେ ପରମ ମୂର୍ଖଙ୍କୁ ସ୍ୱାମୀ ରୂପେ ପାଇଛନ୍ତି । ଗଭୀର ଦୁଃଖରେ ସେ ସେତେବେଳେ କହିଥିଲେ,

"କିଂ ନ କରୋତି ବିଧିର୍ଯଦି ରୁଷ୍ଟଃ
କିଂ ନ ବଦାତି ସ ଏବ ହି ତୁଷ୍ଟଃ ।"

ତାହାପରେ ରାଜକନ୍ୟା ତାଙ୍କ ମୂର୍ଖ ସ୍ୱାମୀଙ୍କୁ ଘରୁ ବାହାର କରି ଦେଇଥିଲେ । ଅପମାନିତ ସ୍ୱାମୀ ପଳାଇ ଯାଇ ବିଦ୍ୟା ଓ ଜ୍ଞାନ ଲାଭ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ନିଜ ସାଧନା ବଳରେ ଶେଷରେ ସେ ଦେବୀ ସରସ୍ୱତୀଙ୍କ ଆଶୀର୍ବାଦ ସହ ନିଜକୁ ଜଣେ ମହାନ ପଣ୍ଡିତ ରୂପେ ପ୍ରତିଷ୍ଠିତ କରି ପାରିଲେ । ସେହି ପଣ୍ଡିତ ହେଉଛନ୍ତି ମହାକବି କାଳିଦାସ । ବିଦୁଷୀ ରାଜକନ୍ୟା ସ୍ୱାମୀଙ୍କର ଅସାଧାରଣ ପାଣ୍ଡିତ୍ୟର ପରିଚୟ ପାଇ ତାଙ୍କୁ ପୁନର୍ବାର ଗ୍ରହଣ କଲେ ।

କାଳିଦାସଙ୍କ ସମ୍ବନ୍ଧରେ ଅନ୍ୟ ଏକ ଜନଶ୍ରୁତି ରହିଛି ଯେ, ସେ ଥିଲେ ଉଜ୍ଜୟିନୀର ପ୍ରଖ୍ୟାତ ରାଜା ବିକ୍ରମାଦିତ୍ୟଙ୍କ ରାଜଦରବାର ମଣ୍ଡନ କରିଥିବା 'ନବରତ୍ନ' ମଧ୍ୟରେ ଅନ୍ୟତମ ରତ୍ନ । ସେହି ବିକ୍ରମାଦିତ୍ୟ ହେଉଛନ୍ତି ଗୁପ୍ତ-ବଂଶର ସମ୍ରାଟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ । ସେ ନିଜକୁ ବିକ୍ରମାଦିତ୍ୟ ପଦବୀରେ ମଣ୍ଡିତ କରିଥିଲେ ଓ ଉଜ୍ଜୟିନୀ ନଗରୀକୁ ତାଙ୍କର ଅନ୍ୟ ଗୋଟିଏ ରାଜଧାନୀ ରୂପେ ବ୍ୟବହାର କରୁଥିଲେ ।

କାଳିଦାସ ଥିଲେ ଗୁପ୍ତଯୁଗର ସଂସ୍କୃତ ସାହିତ୍ୟିକମାନଙ୍କ ମଧ୍ୟରେ ସର୍ବପ୍ରଧାନ । ତାହାଙ୍କୁ ଭାରତର ସେକ୍ସପିୟର ବୋଲି କୁହାଯାଇଥାଏ । ତାଙ୍କ ରଚିତ କାବ୍ୟ-କବିତା ଓ ନାଟକ ଇତ୍ୟାଦି ସଂସ୍କୃତ ସାହିତ୍ୟକୁ ପ୍ରଭୂତ ଭାବେ ସମୃଦ୍ଧ କରିଥିଲା । ତାଙ୍କର ଅତୁଳନୀୟ ସାହିତ୍ୟ ଭାରତୀୟ ସଂସ୍କୃତିର ମହାର୍ଘ ସମ୍ପଦ ରୂପେ ବିବେଚିତ ହୋଇଛି ।

କାଳିଦାସଙ୍କ ରଚିତ କାବ୍ୟମାନଙ୍କ ମଧ୍ୟରେ 'ରଘୁବଂଶ', 'କୁମାରସମ୍ଭବ', 'ଋତୁସଂହାର' ଓ 'ମେଘଦୂତ' ହେଉଛି ସର୍ବପ୍ରଧାନ । ତାହାଙ୍କ ରଚିତ ନାଟକମାନଙ୍କ ମଧ୍ୟରେ 'ମାଳବିକାଗ୍ନିମିତ୍ର', 'ବିକ୍ରମୋର୍ବଶୀ' ଓ 'ଶକୁନ୍ତଳା' ହେଉଛି ସର୍ବାଧିକ ପ୍ରସିଦ୍ଧ । ଏହି ଗ୍ରନ୍ଥଗୁଡ଼ିକର ବିଷୟବସ୍ତୁ ଉପରେ ସଂକ୍ଷିପ୍ତ ସୂଚନା ନିମ୍ନରେ ଦିଆଗଲା ।

**ରଘୁବଂଶ**—ରଘୁବଂଶ ହେଉଛି ଗୋଟିଏ ମହାକାବ୍ୟ । ସଂସ୍କୃତ ଭାଷାବିତ୍‌ମାନଙ୍କ ମତରେ ଏହା ହେଉଛି ମହାକାବ୍ୟ ଶୈଳୀର ଏକ ଅପୂର୍ବ ନିଦର୍ଶନ । ଏଥିରେ ପ୍ରାଚୀନ ପରମ୍ପରା, ଦେଶର ପ୍ରସିଦ୍ଧ ସ୍ଥାନ, ନଦନଦୀ, ପର୍ବତରାଜି ଓ ସାଗର ପ୍ରଭୃତିର ବର୍ଣ୍ଣନା ସହ ସେ ଯୁଗର ରୀତି ନୀତି, ଆଚାର ବ୍ୟବହାର, ସାରେଚିତ କୃତିତ୍ୱ ଓ ରାଜକୀୟ କର୍ତ୍ତବ୍ୟ ଇତ୍ୟାଦିର ବିଶଦ ବିବରଣୀ ବର୍ଣ୍ଣିତ ହୋଇଛି । ରସ ଓ ଭାବ, ଭାଷା ଓ ଛନ୍ଦ ଇତ୍ୟାଦି ଦୃଷ୍ଟିରୁ ଏହି ମହାକାବ୍ୟ କବିଙ୍କର ଏକ ଅପରୂପ କୃତିତ୍ୱ ରୂପେ ଦେଖିବାକୁ ମିଳିଛି ।

ରଘୁବଂଶ ମହାକାବ୍ୟର ପ୍ରଧାନ ନାୟକ ହେଉଛନ୍ତି ରାମଚନ୍ଦ୍ର । କାଳିଦାସ ପ୍ରଥମେ ତାହାଙ୍କ ପୂର୍ବପୁରୁଷମାନଙ୍କ ବିବରଣୀ ପ୍ରଦାନ କରିଛନ୍ତି । ରାମଙ୍କ ବଂଶ ରଘୁବଂଶ ନାମରେ ବିଖ୍ୟାତ ଥିବାରୁ ମହାକାବ୍ୟର ନାମ ରହିଛି 'ରଘୁବଂଶ' । ସୂର୍ଯ୍ୟବଂଶୀୟ ନରପତି ଇକ୍ଷ୍ୱାକୁଙ୍କ ଦାୟାଦ ରୂପେ ରଘୁ ହେଉଛନ୍ତି ପୁରାଣ-ପ୍ରସିଦ୍ଧ ବ୍ୟକ୍ତି । ରଘୁଙ୍କର ଜନ୍ମବୃତ୍ତାନ୍ତ, ତାଙ୍କ ବୀରତ୍ୱ କାହାଣୀ, ଦିଗ୍‌ବିଜୟ କାଳରେ ତାଙ୍କର ଯୁଦ୍ଧ, ରାଜ୍ୟ ପରେ ରାଜ୍ୟ ଅଧିକାର ଇତ୍ୟାଦି ବିଷୟ ବର୍ଣ୍ଣନା ଦ୍ୱାରା କାଳିଦାସ ପ୍ରାୟ ସମଗ୍ର ଭାରତବର୍ଷର ଭୌଗୋଳିକ ଅବସ୍ଥା ଉଲ୍ଲେଖ କରିଛନ୍ତି । ଐତିହାସିକମାନଙ୍କ ମତରେ ରଘୁଙ୍କର ଦିଗ୍‌ବିଜୟ କାହାଣୀ ମଧ୍ୟରେ କାଳିଦାସ ପ୍ରକାରାନ୍ତରେ ଗୁପ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟ ଯାତ୍ରା ବର୍ଣ୍ଣନା କରି ଯାଇଛନ୍ତି । ରଘୁଙ୍କର ଉତ୍ତରାଧିକାରୀମାନଙ୍କ ଯଶ ଓ ବୀରତ୍ୱ କାହାଣୀ ମଧ୍ୟରେ ସେ ଭାରତବର୍ଷର ଭୂଗୋଳ ଓ ଐତିହ୍ୟ ଉପରେ ଥିବା ତାଙ୍କ ଅଗାଧ ଜ୍ଞାନର ପରିଚୟ ଦେଇଛନ୍ତି ।

ରାମଙ୍କ ପୂର୍ବପୁରୁଷମାନଙ୍କ କଥା ବର୍ଣ୍ଣନା କଲାପରେ କାଳିଦାସ ରାମଚନ୍ଦ୍ରଙ୍କ ଜୀବନୀ ଉପରେ ଦୀର୍ଘ ବର୍ଣ୍ଣନା ଦେଇଛନ୍ତି । ରାମଙ୍କ ଜନ୍ମ, ଯୌବନାବସ୍ଥା, ସୀତାଙ୍କ ସହ ବିବାହ, କୈକେୟୀଙ୍କ ଦାବୀ, ରାମଙ୍କ ବନବାସ, ରାବଣଙ୍କ ଦ୍ୱାରା ସୀତାଙ୍କ ଅପହରଣ, ଲଙ୍କା ଅଭିଯାନ, ରାମ-ରାବଣ ଯୁଦ୍ଧ ଓ

ରାମସୀତାଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପ୍ରଭୃତି ବିଷୟ ଉପସ୍ଥାପନ କଲାବେଳେ କାଳିଦାସ ତାଙ୍କର ଅପୂର୍ବ ବର୍ଣ୍ଣନା ଶକ୍ତିର ପ୍ରମାଣ ଦେଇଛନ୍ତି । ସୀତାଙ୍କ ପ୍ରତି ପ୍ରଜାଙ୍କ ସନ୍ଦେହ, ରାମଚନ୍ଦ୍ରଙ୍କର ରାଜଧର୍ମ ଓ ପ୍ରଜାରଞ୍ଜନ କାର୍ଯ୍ୟ, ସୀତାଙ୍କ ବନବାସ, ବାଲ୍ମୀକିଙ୍କ ଆଶ୍ରମରେ ସୀତାଙ୍କ ଅବସ୍ଥାନ, ଲବ କୁଶଙ୍କ ଜନ୍ମ ଓ ଶିକ୍ଷାଲାଭ, ସେମାନଙ୍କ ଦ୍ୱାରା ରାମଚରିତ ଗାନ ଏବଂ ସୀତାଙ୍କ ପାତାଳ ପ୍ରବେଶ ଇତ୍ୟାଦି ବର୍ଣ୍ଣନା କରିବାକୁ ଯାଇ କାଳିଦାସ ଯେଉଁ ପ୍ରକାର ଭାବ ପରିପ୍ରକାଶ କରିଛନ୍ତି ତାହା ପାଠକମାନଙ୍କୁ ଅଭିଭୂତ କରି ଆସିଛି । ମହାକବି ବାଲ୍ମୀକିଙ୍କ ପଦାଙ୍କ ଅନୁସରଣ ଦ୍ୱାରା କାଳିଦାସ ତାଙ୍କର ରଘୁବଂଶ ରଚନା କରିଥିଲେ । ନୂତନ ଶୈଳୀ ଓ ବର୍ଣ୍ଣନାମାଧୁରୀ ଦ୍ୱାରା ସେ ତାଙ୍କ ମହାକାବ୍ୟକୁ ଆକର୍ଷଣୀୟ କରିଥିଲେ ।

**କୁମାରସମ୍ଭବ**—'କୁମାରସମ୍ଭବ' କାବ୍ୟରେ କାଳିଦାସ ତାଙ୍କ କଳ୍ପନା ତଥା ପ୍ରଜ୍ଞା ଶକ୍ତିର ପରିଚୟ ଦେଇଛନ୍ତି । ଚରିତ୍ର ଚିତ୍ରଣ, ବିଷୟ ବର୍ଣ୍ଣନା ଓ ଶବ୍ଦ ମାଧୁର୍ଯ୍ୟ ଦୃଷ୍ଟିରୁ ଏହି କାବ୍ୟ ବିଚିତ୍ର ଅଟେ । ଶିବ ଓ ପାର୍ବତୀଙ୍କ ବିବାହ, କୁମାରଙ୍କ ଜନ୍ମ ଓ ଦାନବୀୟ ଶକ୍ତି ଉପରେ ଦୈବୀଶକ୍ତିର ବିଜୟ ଇତ୍ୟାଦି ବର୍ଣ୍ଣନା କରିବାକୁ ଯାଇ କାଳିଦାସ ଗଭୀର ଚିନ୍ତାଶକ୍ତି ପ୍ରକାଶ କରିଛନ୍ତି । ମାନବୀୟ ପ୍ରେମ ଓ ଶୌର୍ଯ୍ୟ ପ୍ରଭୃତିକୁ ସେ ସ୍ୱର୍ଗୀୟ ପ୍ରେମଭାବ ଓ ଶୌର୍ଯ୍ୟଶକ୍ତି ମାଧ୍ୟମରେ ଦେଖାଇ ଯାଇଛନ୍ତି ।

ଶିବଙ୍କ ଆସ୍ଥାନ ହିମାଳୟ ପର୍ବତରାଜର ବର୍ଣ୍ଣନା ସହ ଏହି କାବ୍ୟ ଆରମ୍ଭ କରାଯାଇଛି । ପର୍ବତ ଶିଖରର ମେଘମାଳା, ବିଶୁଦ୍ଧ ମୁକ୍ତ ପବନ, ସ୍ୱର୍ଗୀୟ ପ୍ରବାହ ରୂପେ ଗଙ୍ଗାଙ୍କର ଅବତରଣ ଓ ଅରଣ୍ୟାନୀର ସୌନ୍ଦର୍ଯ୍ୟ ସୁମଧୁର ଭାଷାରେ ବର୍ଣ୍ଣିତ ହୋଇଛି । ସୁପବିତ୍ର ସ୍ଥାନରେ ଶିବଙ୍କର ଧ୍ୟାନ, ଗିରିରାଜ ହିମାଳୟଙ୍କ ଦୁହିତା ଉମାଙ୍କର ଶିବ-ସେବା, ଶିବଙ୍କର ଧ୍ୟାନଭଙ୍ଗ ପାଇଁ କାମଦେବଙ୍କ ପ୍ରୟାସ, ଉମାଙ୍କ ସହିତ ଶିବଙ୍କର ବିବାହ, କୁମାରଙ୍କ ଜନ୍ମ ଓ ତାରକାସୁର ଉପରେ କୁମାରଙ୍କ ବିଜୟଲାଭ ବିଷୟ ସନ୍ନିବେଶ ଦ୍ୱାରା 'କୁମାରସମ୍ଭବ' କାବ୍ୟ ପରିପୂର୍ଣ୍ଣ ହୋଇଛି ।

ଏହି କାବ୍ୟରେ ମନୁଷ୍ୟର ଭାବଧାରାକୁ କାଳିଦାସ ପ୍ରାକୃତିକ ଭାବେ ବର୍ଣ୍ଣନା କରିବାକୁ ସମର୍ଥ ହୋଇଛନ୍ତି । ଦେବ ଦେବୀଙ୍କ ଚରିତ୍ର ବର୍ଣ୍ଣନା ମଧ୍ୟରେ

ସେ ମନୁଷ୍ୟ ଚରିତକୁ ହିଁ ପ୍ରକଟନ କରିପାରିଛନ୍ତି । ପ୍ରକୃତି ବର୍ଣ୍ଣନା ଦୃଷ୍ଟିରୁ ଏହି କାବ୍ୟ ଅତୁଳନୀୟ ଅଟେ ।

**ଋତୁ ସଂହାର**—କାଳିଦାସଙ୍କ ଏହି କାବ୍ୟଟି ସରଳ ଓ ସୁନ୍ଦର ଭାଷାରେ ରଚିତ ହୋଇଛି । କେହି କେହି ପଣ୍ଡିତଙ୍କ ମତରେ ଏହା ଥିଲା ମହାକବିଙ୍କର ଗୋଟିଏ ଯୁବସୁଲଭ ରଚନା । ସମ୍ଭବତଃ, ନିଜର ଯୌବନାବସ୍ଥାରେ ସେ ଏହି କାବ୍ୟ ଲେଖିଥିଲେ । ବିଶ୍ୱର ବିଖ୍ୟାତ କବିମାନଙ୍କର ଯୌବନାବସ୍ଥାରେ ରଚିତ କାବ୍ୟ କବିତା ଓ ପରିଣତ ବୟସରେ ରଚିତ କାବ୍ୟ କବିତା ମଧ୍ୟରେ ଯେପରି ପାର୍ଥକ୍ୟ ଦେଖିବାକୁ ମିଳେ, ସେହିପରି ପାର୍ଥକ୍ୟ ଏଥିରେ ମଧ୍ୟ ଅନୁଭବ କରାଯାଇଛି ।

'ଋତୁ ସଂହାର' କାବ୍ୟରେ ବିଭିନ୍ନ ଋତୁମାନଙ୍କର ବର୍ଣ୍ଣନା କରାଯାଇଛି । ଭାରତୀୟ ଜୀବନ ଉପରେ ଷଡ଼ ଋତୁର ପ୍ରଭାବ ଅତି ଗଭୀର, ଏହା ନିଃସନ୍ଦେହ । ଗ୍ରୀଷ୍ମ, ବର୍ଷା, ଶରତ୍, ହେମନ୍ତ, ଶୀତ ଓ ବସନ୍ତ, ଏହି ପ୍ରକାର ପ୍ରତ୍ୟେକ ଋତୁରେ ପ୍ରକୃତିର ରୂପ ପରିବର୍ତ୍ତନ ହେବା ସଙ୍ଗେ ମନୁଷ୍ୟର କର୍ମଧାରାରେ ମଧ୍ୟ ପରିବର୍ତ୍ତନ ଘଟିଥାଏ । ପ୍ରତ୍ୟେକ ଋତୁ ପୁଣି ମନୁଷ୍ୟ ପ୍ରାଣରେ ଭିନ୍ନ ଭିନ୍ନ ଚିନ୍ତା ସୃଷ୍ଟି କରିଥାଏ । ସେହି ସବୁ ଭାବକୁ କେନ୍ଦ୍ର କରି କାଳିଦାସ 'ଋତୁ ସଂହାର' କାବ୍ୟରେ ମନୁଷ୍ୟର ମନ ଓ ପ୍ରକୃତିର ରୂପ ମଧ୍ୟରେ ଥିବା ଗାଢ଼ ସମ୍ପର୍କକୁ ବ୍ୟାଖ୍ୟା କରି ଯାଇଛନ୍ତି ।

ଋତୁମାନଙ୍କର ବର୍ଣ୍ଣନା ଯେ କେବଳ ବହିର୍ଦୃଷ୍ଟିରୁ କରାଯାଇଛି ତାହା ନୁହେଁ । କାଳିଦାସ ପ୍ରତ୍ୟେକ ଋତୁର ଅନ୍ତର୍ନିହିତ ଅର୍ଥ ଉପରେ ଗୁରୁତ୍ୱ ଦେଇଛନ୍ତି । ନିଦାଘର ଦିବସକାଳ କଷ୍ଟଦାୟକ ହେଲେ ମଧ୍ୟ ସେହି ଋତୁର ଜ୍ୟୋତ୍ସ୍ନା ରାତିର କୋମଳତା ଅତୀବ ତୃପ୍ତିଦାୟକ ଓ ମଧୁର; ବର୍ଷା ଋତୁର ଆଡ଼ମ୍ବରପୂର୍ଣ୍ଣ ଆଗମନ, ମେଘମାଳାର ଗମ୍ଭୀର ଦୃଶ୍ୟ, ବିଦ୍ୟୁତ୍ ଜ୍ୟୋତିର ଖେଳ ଓ ବଜ୍ରପାତର ପ୍ରଚଣ୍ଡ ଶବ୍ଦ ମଧ୍ୟରେ ଯୁବ ପ୍ରାଣର ଆନନ୍ଦ ଓ ଆବେଗ; ଶରତ୍ ଓ ହେମନ୍ତ କାଳର ସବୁଜ ସୁନ୍ଦର ପରିଧାନ ରୂପେ ଶସ୍ୟ ଶ୍ୟାମଳ କ୍ଷେତ୍ର, ପୁଷ୍ପଲତାର ସୌନ୍ଦର୍ଯ୍ୟ; ଶୀତ କାଳର ଥଣ୍ଡା ମଧ୍ୟରେ ମନୁଷ୍ୟ ମନର ଉଷ୍ଣତା, ରବି କିରଣ ପ୍ରତି ବ୍ୟାକୁଳତା ଏବଂ ବସନ୍ତ ଋତୁର ମାଧୁର୍ଯ୍ୟ ମଧ୍ୟରେ ମନୁଷ୍ୟ ପ୍ରାଣର ଅପାର ଆନନ୍ଦ ଇତ୍ୟାଦି ବର୍ଣ୍ଣନା ଦ୍ୱାରା କାଳିଦାସ ତାଙ୍କ ଲେଖନୀ ସାର୍ଥକ କରି ଯାଇଛନ୍ତି ।

**ମେଘଦୂତ**—ମହାକବି କାଳିଦାସଙ୍କର ଅପର ଏକ ମହାନ୍ କାବ୍ୟ ହେଉଛି 'ମେଘଦୂତ' । ଏହା ଏକ 'ଖଣ୍ଡକାବ୍ୟ' । ଏଥିରେ କବିଙ୍କର ଛନ୍ଦ ଓ ଶବ୍ଦ ପ୍ରୟୋଗ ସୁଲଳିତ ରୂପରେ ଦେଖିବାକୁ ମିଳେ । ସଂସ୍କୃତ ଭାଷାକୁ ମନୋମୁଗ୍ଧକର ଓ ମଧୁର କରିବା ପାଇଁ କାଳିଦାସଙ୍କର ପ୍ରୟାସ ଏହି କାବ୍ୟରେ ପ୍ରତିଫଳିତ ହୋଇଛି ।

ମେଘଦୂତ କାବ୍ୟର ବିଷୟବସ୍ତୁ ହେଉଛି, ନିର୍ବାସିତ ଏକ ବିରହୀ ଯକ୍ଷ ତାଙ୍କର ପ୍ରେୟସୀଙ୍କ ନିକଟକୁ ନିଜର ମର୍ମବେଦନା ବର୍ଷାକାଳର ପ୍ରଥମ ଭାସମାନ ମେଘମାଳା ମାଧ୍ୟମରେ ପ୍ରେରଣ କରୁଛନ୍ତି । କବିଙ୍କ ଭାବପ୍ରବଣତା ଯକ୍ଷର ଭାଷା ମଧ୍ୟରେ ପ୍ରକାଶ ଲାଭ କରିଛି ।

ରାମଗିରି ପାର୍ବତ୍ୟ ଉପତ୍ୟକାରେ ରହିଥିବା ନିର୍ବାସିତ ଯକ୍ଷ ମେଘମାଳା ଯେଉଁ ସ୍ଥାନମାନ ଅତିକ୍ରମ କରି ଆକାଶମାର୍ଗରେ ଉଡ଼ିଯିବା କଥା ବର୍ଣ୍ଣନା କରିଛନ୍ତି, ସେଥିରୁ କାଳିଦାସଙ୍କ ଭାରତବର୍ଷ ସମ୍ବନ୍ଧରେ ଥିବା ସମ୍ୟକ ଧାରଣା ସୁନ୍ଦର ଭାବେ ପ୍ରକଟିତ ହୋଇଛି । ଦେଶର ବିଭିନ୍ନ କାନନ କାନ୍ତାର, ନଦ ନଦୀ, ପାହାଡ଼ ପର୍ବତ, ନଗର ନଗରୀ ଓ ପୁଣ୍ୟପୀଠଗୁଡ଼ିକୁ ସେ ପ୍ରାଞ୍ଜଳ ଭାବରେ ଚିତ୍ରିତ କରିଛନ୍ତି । ମେଘମାଳା ଶେଷରେ ବହୁ ଦୂରବର୍ତ୍ତୀ ମାନସ ସରୋବର ଊର୍ଦ୍ଧ୍ୱରେ ଥିବା ପର୍ବତ ଉପରେ ଅଳକା ନାମକ ସ୍ଥାନରେ ବିରହ-ବିଧୁରା ଯକ୍ଷ-ପତ୍ନୀଙ୍କର ସାକ୍ଷାତ ପାଇବା ପାଇଁ କୁହାଯାଇଛି ।

ମେଘଦୂତ କାବ୍ୟରେ କବି ମନୁଷ୍ୟ ମନର କାତରତା, ଦୁଃଖ, ବିରହ-ବ୍ୟଥା, ଅନ୍ୟ ପ୍ରତି ସମ୍ବେଦନା ଓ ମର୍ମବେଦନା ଇତ୍ୟାଦି ଥିବା ଭାବମାନ ସୁନ୍ଦର ଭାବରେ ଦର୍ଶାଇଛନ୍ତି । କବିତାର ମାଧୁର୍ଯ୍ୟ ଓ ବର୍ଣ୍ଣନାର ଚାତୁର୍ଯ୍ୟ ଦୃଷ୍ଟିରୁ ମେଘଦୂତ କାବ୍ୟ ଭାରତୀୟମାନଙ୍କ ମନରେ ଚିରସ୍ଥାୟୀ ରେଖା ଅଙ୍କନ କରିଛି ।

**ନାଟକ : ମାଳବିକାଗ୍ନିମିତ୍ର**—କାଳିଦାସଙ୍କ ରଚିତ ନାଟକମାନଙ୍କ ମଧ୍ୟରେ 'ମାଳବିକାଗ୍ନିମିତ୍ର' ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଛି । କେହି କେହି ପଣ୍ଡିତଙ୍କ ମତରେ କବିଙ୍କର ଯୌବନାବସ୍ଥାରେ ଏହି ନାଟକ ରଚିତ ହୋଇଥିଲା । ନାଟକର ନାୟକ ହେଉଛନ୍ତି ଅଗ୍ନିମିତ୍ର ଏବଂ ନାୟିକା ହେଉଛନ୍ତି ମାଳବିକା । ଉଭୟଙ୍କର ପ୍ରେମ ବିବରଣୀକୁ କେନ୍ଦ୍ର କରି ନାଟକ ରଚିତ

ହୋଇଛି । ରାଜପ୍ରାସାଦ ଓ ଦରବାରର କୌତୂହଳପ୍ରଦ ପରିବେଶ ମଧ୍ୟରେ ନାୟକ-ନାୟିକାଙ୍କ ଭୂମିକା ବର୍ଣ୍ଣନା କରାଯାଇଛି । ଅଗ୍ନିମିତ୍ର ହେଉଛନ୍ତି ଜଣେ ରାଜା । ମାଳବିକା ହେଉଛନ୍ତି ଜଣେ ଅନୂଢା କୁମାରୀ । ରାଜାଙ୍କ ପକ୍ଷରେ ସେପରି କନ୍ୟାଙ୍କୁ ବିବାହ କରିବା ପଥରେ ନାନା ବାଧାବିଘ୍ନ ସୃଷ୍ଟି ହୋଇଛି । ରାଜାଙ୍କର ପ୍ରେମ ମଧ୍ୟ ତାଙ୍କର ନିଜର ଇଚ୍ଛା ବା ମନ ପରିବର୍ତ୍ତନ ଉପରେ ନିର୍ଭର କରିଛି । ଅପର ପକ୍ଷରେ, ମାଳବିକାଙ୍କର ରହିଛି ଅକପଟ ଓ ଅନାବିଳ ପ୍ରେମ । ବହୁପ୍ରକାର ଚକ୍ରାନ୍ତ ଓ ଗୁପ୍ତ ରହସ୍ୟ ମଧ୍ୟରେ ନାୟକ-ନାୟିକାଙ୍କ ସମ୍ପର୍କକୁ ନାଟକୀୟ ଢଙ୍ଗରେ ଉପସ୍ଥାପିତ କରାଯାଇଛି । ବିଦୂଷକଙ୍କ ଭୂମିକା ପ୍ରତି ଗୁରୁତ୍ୱ ଦେଇ କବି ତାଙ୍କ ନାଟକଟିକୁ ଆମୋଦପ୍ରଦ କରିଛନ୍ତି । ଖଳ ନାୟିକାଙ୍କ ଭୂମିକା ନାଟକକୁ ରହସ୍ୟାବୃତ କରିଛି ।

ନାଟକର ଚରିତ୍ରଗୁଡ଼ିକ ପରିଷ୍କାର ଭାବେ ଦେଖିବାକୁ ମିଳନ୍ତି । ସେମାନଙ୍କ ଭାଷା ମାର୍ଜିତ ହୋଇଛି । କୌତୂହଳ ସୃଷ୍ଟି ପାଇଁ ରଙ୍ଗରସ ଓ ରସିକତାର ଆଶ୍ରୟ ନିଆଯାଇଛି । ସୁଖ ଓ ଦୁଃଖ, ହର୍ଷ ଓ ବିଷାଦ, ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକଳାପ ଓ ଆଶଙ୍କା ଇତ୍ୟାଦି ମଧ୍ୟରେ ନାଟକର କାହାଣୀ ଗତି କରିଛି ।

**ବିକ୍ରମୋର୍ବଶୀ**—ଏକ ରୋମାଞ୍ଚକର ଓ ଅସ୍ୱାଭାବିକ ବିଷୟବସ୍ତୁକୁ କେନ୍ଦ୍ର କରି କାଳିଦାସ ଏହି ନାଟକ ରଚନା କରିଛନ୍ତି । ମର୍ତ୍ତ୍ୟଭୂମିର ନର ଶରୀରଧାରୀ ରାଜା ପୁରୁରବା ଏବଂ ସ୍ୱର୍ଗର ଦିବ୍ୟାଙ୍ଗନା ଉର୍ବଶୀଙ୍କ ଅପୂର୍ବ ପ୍ରେମ ହେଉଛି ନାଟକର କାହାଣୀ । ଏହା ଗୋଟିଏ ସୁପ୍ରାଚୀନ କାହାଣୀ । ଋକ୍‌ବେଦରେ ଏହି ଉପାଖ୍ୟାନର ଉଲ୍ଲେଖ ଅଛି । ପରବର୍ତ୍ତୀ ଯୁଗର ପୌରାଣିକ ସାହିତ୍ୟରେ ମଧ୍ୟ ଏହି ଗଳ୍ପ ଦେଖିବାକୁ ମିଳେ । କାଳିଦାସ ସେହି ପୁରାତନ ବିଷୟକୁ କେତେକାଂଶରେ ପରିବର୍ତ୍ତନ କରି ନୂତନ ଭାବେ ତାହାକୁ ନାଟକ ଆକାରରେ ଲେଖିଥିଲେ । ଆଶ୍ଚର୍ଯ୍ୟଜନକ ଘଟଣାମାନ ବର୍ଣ୍ଣନା ଦ୍ୱାରା ନାଟକଟିକୁ ଉତ୍କଣ୍ଠାପୂର୍ଣ୍ଣ କରାଯାଇଛି । ସ୍ୱର୍ଗୀୟ ଚରିତ୍ର ମଧ୍ୟରେ ମାନବୀୟ ଚରିତ୍ର ଅଙ୍କନ କରି କବି ତାହାଙ୍କ ସୁଦୂରପ୍ରସାରୀ କଳ୍ପନା ଶକ୍ତିର ପରିଚୟ ଦେଇଛନ୍ତି । ଭାଷା ଓ ଭାବ ଦୃଷ୍ଟିରୁ ନାଟକଟି ମନୋମୁଗ୍ଧକର ହୋଇଛି । ଉର୍ବଶୀଙ୍କୁ ଲାଭ କରିବା ପାଇଁ ପୁରୁରବାଙ୍କ ଆଗ୍ରହ, ଅଜ୍ଞାତ ପୁତ୍ରର ଆବିଷ୍କାର ଦ୍ୱାରା ତାଙ୍କର ମନରେ ଖୁସିର ଆନନ୍ଦ, ଏବଂ ସେହି ଉତ୍କଣ୍ଠାପୂର୍ଣ୍ଣ ମୁହୂର୍ତ୍ତରେ ଉର୍ବଶୀଙ୍କ

ଅନ୍ତର୍ଦ୍ଧାନ ଫଳରେ ତାଙ୍କର ଯେଉଁ ମର୍ମାନ୍ତିକ ଦୁଃଖ, ଏହି ପ୍ରକାର ଦୃଶ୍ୟମୁଡ଼ିକର ବର୍ଣ୍ଣନା ମଧ୍ୟରେ କାଳିଦାସ ମନୁଷ୍ୟ ମନର ମନସ୍ତାତ୍ତ୍ୱିକ ଭାବାବେଗମାନ ପ୍ରକାଶ କରିଛନ୍ତି ।

ପ୍ରକୃତି ବର୍ଣ୍ଣନା ଦୃଷ୍ଟିରୁ ଏହି ନାଟକ ସଂସ୍କୃତ ସାହିତ୍ୟର ଅନ୍ୟତମ ଉଜ୍ଜ୍ୱଳ ନିଦର୍ଶନ ରୂପେ ପରିଗଣିତ ହୋଇଛି । ଗହନ ଅରଣ୍ୟାନୀ ମଧ୍ୟରେ ଥିବା ପଶୁପକ୍ଷୀ, ଜୀବଜନ୍ତୁ, ଆକାଶର ମେଘମାଳା ଓ ଇନ୍ଦ୍ରଧନୁ ଇତ୍ୟାଦିର ଚିତ୍ରଣ ମଧ୍ୟରେ କବି ତାଙ୍କ ପ୍ରକୃତି-ପ୍ରେମର ପରିଚୟ ଦେଇଛନ୍ତି ।

**ଅଭିଜ୍ଞାନଶାକୁନ୍ତଳ**—କାଳିଦାସଙ୍କ ପ୍ରଣୀତ ସମସ୍ତ ନାଟକ ମଧ୍ୟରେ 'ଶକୁନ୍ତଳା' ନାଟକ ସର୍ବଶ୍ରେଷ୍ଠ ବୋଲି ପ୍ରଶଂସିତ ହୋଇଛି । ବିଶ୍ୱ ସାହିତ୍ୟ ଭଣ୍ଡାର ପ୍ରତି ଏହା ଗୋଟିଏ ଅଭିନବ ଦାନ ବୋଲି ପାଶ୍ଚାତ୍ୟ ପଣ୍ଡିତମାନେ ସ୍ୱୀକାର କରିଛନ୍ତି ।

ମହାଭାରତର ଆଦିପର୍ବରେ ବର୍ଣ୍ଣିତ ଶକୁନ୍ତଳା ଉପାଖ୍ୟାନକୁ କାଳିଦାସ ନାଟକ ଆକାରରେ ରୂପାୟିତ କରିଥିଲେ । ପୁରାତନ ଉପାଖ୍ୟାନର ସରଳ ବିଷୟବସ୍ତୁକୁ ସେ ମାର୍ଜିତ ଓ ଉନ୍ନତ ଆକାର ଦେଇଥିଲେ । ଜଣେ ନାଟ୍ୟକାର ରୂପେ କାଳିଦାସଙ୍କ ଅପାର କୃତିତ୍ୱ ଏହି ନାଟକରେ ପ୍ରମାଣିତ ହୋଇଛି ।

ନାଟକର ବିଷୟବସ୍ତୁ ଥିଲି ଦୁଷ୍ମନ୍ତ-ଶକୁନ୍ତଳା ଆଖ୍ୟାନ । ମହର୍ଷି ବିଶ୍ୱାମିତ୍ରଙ୍କ ଔରସରୁ ଓ ସ୍ୱର୍ଗର ଅପ୍‌ସରା ମେନକାଙ୍କ ଗର୍ଭରୁ ଶକୁନ୍ତଳା ଜନ୍ମଲାଭ କରିଥିଲେ । ବିଶ୍ୱାମିତ୍ର ନିଜ ତପସ୍ୟା ପାଇଁ ମେନକାଙ୍କୁ ପରିତ୍ୟାଗ କରି ଚାଲିଯିବା ପରେ ମେନକା ମଧ୍ୟ ସଦ୍ୟଜାତ କନ୍ୟାଟିକୁ ଅରଣ୍ୟରେ ପରିତ୍ୟାଗ କରି ବିଦାୟ ନେଇଥିଲେ । ସେତେବେଳେ ଗୃଧ୍ରଜାତୀୟ ଗୋଟିଏ ପକ୍ଷୀ ବା ଶକୁନ୍ତ ନିଜର ପକ୍ଷ-ଚ୍ଛାୟା ଦ୍ୱାରା ଶିଶୁଟିର ଜୀବନ ରକ୍ଷା କରିଥିଲି । ପରେ ପରେ, ମହାମୁନି କଣ୍ୱ ଶିଶୁଟିକୁ ନେଇ ନିଜ ଆଶ୍ରମରେ ଲାଳନ ପାଳନ କରିଥିଲେ । ଶକୁନ୍ତ ପକ୍ଷୀ ଦ୍ୱାରା ରକ୍ଷା ପାଇଥିବା କନ୍ୟାର ନାମ ସେ ରଖିଥିଲେ ଶକୁନ୍ତଳା ।

ଅପୂର୍ବସୁନ୍ଦରୀ ଶକୁନ୍ତଳାଙ୍କର ଯୌବନାବସ୍ଥାରେ ଦିନେ ଅରଣ୍ୟ ମଧ୍ୟରେ ଶିକାର ପାଇଁ ଆସିଥିବା ମହାରାଜ ଦୁଷ୍ମନ୍ତଙ୍କ ଦୃଷ୍ଟି ତାଙ୍କ ଉପରେ

ପଡ଼ିଥିଲା । ସେତେବେଳେ କଣ୍ୱମୁନି ଆଶ୍ରମରେ ନ ଥିଲେ । ଆଶ୍ରମରେ ଶକୁନ୍ତଳା ରାଜାଙ୍କର ଯଥାଯୋଗ୍ୟ ପରିଚର୍ଯ୍ୟା କରିଥିଲେ । ଦୁଷ୍ମନ୍ତ ତାଙ୍କ ରୂପ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ନିଜର ଅଙ୍ଗୁରୀୟ ପ୍ରଦାନ ପୂର୍ବକ ଗାନ୍ଧର୍ବ ରୀତିରେ ବିବାହ କରିଥିଲେ । ତାହାପରେ ସେ ନିଜ ରାଜଧାନୀକୁ ପ୍ରସ୍ଥାନ କରିଥିଲେ ।

କଣ୍ୱମୁନି ଶେଷରେ ଶକୁନ୍ତଳାଙ୍କୁ ରାଜା ଦୁଷ୍ମନ୍ତଙ୍କ ନିକଟକୁ ପ୍ରେରଣ କଲେ । ସେତେବେଳେ ଶକୁନ୍ତଳା ଅନ୍ତଃସତ୍ତ୍ୱା ଥିଲେ । କିନ୍ତୁ, ଦୁର୍ବାସା ଋଷିଙ୍କ ଅଭିଶାପ ପାଇଁ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଚିହ୍ନିପାରି ନ ଥିଲେ । ଶକୁନ୍ତଳା ମଧ୍ୟ ବିବାହ-ଅଙ୍ଗୁରୀୟ ହଜାଇ ଦେଇଥିବାରୁ ରାଜାଙ୍କ ନିକଟରେ ତାଙ୍କ ବିବାହର ପ୍ରମାଣ ଦେଇ ପାରିଲେ ନାହିଁ । ଅପମାନିତ ଓ ଲଜ୍ଜିତ ଅବସ୍ଥାରେ ସେ ମହର୍ଷି କଶ୍ୟପଙ୍କ ଆଶ୍ରମକୁ ଆସିଥିଲେ । କିନ୍ତୁ ପରେ ପରେ ରାଜା ଯେତେବେଳେ ଦୈବାତ୍ ସେହି ଅଙ୍ଗୁରୀୟଟି ଦେଖିବାକୁ ପାଇଲେ ସେତେବେଳେ ତାଙ୍କ ସ୍ମୃତିପଟରେ ଅତୀତର ସବୁକଥା ପରିସ୍ଫୁଟ ହୋଇଉଠିଲା । ଗଭୀର ଅନୁତାପ ଓ ଦୁଃଖ ମଧ୍ୟରେ ଦୁଷ୍ମନ୍ତ ଶେଷରେ ଶକୁନ୍ତଳା ଓ ତାଙ୍କର ପୁତ୍ର ଭରତଙ୍କୁ ଖୋଜି ଖୋଜି ପାଇଥିଲେ ଏବଂ ପରମ ଆନନ୍ଦରେ ସେମାନଙ୍କୁ ଗ୍ରହଣ କରିଥିଲେ ।

ଏହି ସରଳ ଆଖ୍ୟାନଟିକୁ କାଳିଦାସ ତାଙ୍କ ପ୍ରତିଭା ବଳରେ ଗୋଟିଏ ଭାବ ଉଦ୍ଦୀପକ ଓ ମନୋମୁଗ୍ଧକର ନାଟକରେ ପରିଣତ କରିଥିଲେ । ସେଥିସହି ସମାଜ ପ୍ରତି ସେ ଉଚ୍ଚତର ନୈତିକ ଶିକ୍ଷା ମଧ୍ୟ ରଖି ଯାଇଥିଲେ । ମେନକାଙ୍କ କନ୍ୟା ରୂପସୀ ଶକୁନ୍ତଳା ଯେପରି ଭାବରେ ନିଜ ଅଭିଭାବକ କଣ୍ୱମୁନିଙ୍କ ବିନା ଅନୁମତିରେ ରାଜା ଦୁଷ୍ମନ୍ତଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ, ତାହାର ପରିଣାମ ତାଙ୍କୁ ଭୋଗ କରିବାକୁ ପଡ଼ିଲା । ଗଭୀର ଅପମାନ, ଲଜ୍ଜା ଓ ଦୁଃଖ ମଧ୍ୟରେ ତାଙ୍କର ବିତିଥିବା ଦିନଗୁଡ଼ିକ କାଳିଦାସ ଉଚ୍ଚତର ଦାର୍ଶନିକ ଦୃଷ୍ଟିରୁ ବର୍ଣ୍ଣନା କରିଛନ୍ତି । ସେହିପରି ନିଜର ଶୌର୍ଯ୍ୟ ଓ ଶକ୍ତି ଗର୍ବରେ ରାଜା ଦୁଷ୍ମନ୍ତ ସାଧାରଣ ସାମାଜିକ ଶାଳୀନତା ପ୍ରତି ଭ୍ରୂକ୍ଷେପ ନ କରି ଜଣେ ଋଷି-କନ୍ୟାଙ୍କୁ ଅଙ୍ଗୁରୀୟ ପ୍ରଦାନ ଦ୍ୱାରା ଯେପରି ଭାବରେ ବିବାହ କରିପାରିଲେ, ସେଥିପାଇଁ ତାଙ୍କୁ ମଧ୍ୟ ଗଭୀର ଅନୁତାପ ଓ ଦୁଃଖ ଭୋଗ କରିବାକୁ ହେଲା ।

ଏଥିସଙ୍ଗେ, କାଳିଦାସ ଦୁଷ୍ମନ୍ତ ଓ ଶକୁନ୍ତଳା ଉଭୟଙ୍କର ବଳିଷ୍ଠ, ହାର୍ଦ୍ଦିକ ଓ ନୀତ୍ୟାତ୍ମକ [illegible] । ସେମାନଙ୍କ

ମାର୍ଜିତ ମାନବୀୟ ପ୍ରଣୟ, ଦୁଃଖ ଓ ଶୋକ ମଧ୍ୟରେ ଅଗାଧ ଧୈର୍ଯ୍ୟ ଓ ସାହସ ଏବଂ ନିଜ ନିଜର ସାମୟିକ ଭୁଲ ପାଇଁ ଅନୁତାପ ଓ ଅନୁଶୋଚନା ମଧ୍ୟରେ ଶେଷରେ ମିଳନ ମଧ୍ୟରେ ଥିବା ପବିତ୍ର ମନୋଭାବ ଇତ୍ୟାଦି ବିଷୟ କାଳିଦାସ ନିଜ ବର୍ଣ୍ଣନା-ଶୈଳୀ ଦ୍ୱାରା ଅପୂର୍ବ ରୂପାୟନ କରି ପାରିଛନ୍ତି ।

ଏକ ସର୍ବାଙ୍ଗ ସୁନ୍ଦର ନାଟକ ରୂପେ 'ଶକୁନ୍ତଳା' ପାଶ୍ଚାତ୍ୟ ପଣ୍ଡିତମାନଙ୍କ ନିକଟରୁ ଭୂୟସୀ ପ୍ରଶଂସା ଲାଭ କରିଛି । ଇଉରୋପୀୟ କବିକୁଳଗୁରୁ ଗେଟେ ଏହି ନାଟକକୁ ଓଜସ୍ୱିନୀ ଭାଷାରେ ସମ୍ମାନ ଦେଇଛନ୍ତି । ଇଂରେଜ ପଣ୍ଡିତ ଉଇଲିୟମ୍ ଜୋନ୍ସ୍ କାଳିଦାସଙ୍କୁ ଇଂଲଣ୍ଡର ସର୍ବଶ୍ରେଷ୍ଠ ନାଟ୍ୟକାର ସେକ୍ସପିୟରଙ୍କ ସଙ୍ଗେ ତୁଳନା କରିଛନ୍ତି । ବିଶ୍ୱ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ନାଟକ ଭାବେ କାଳିଦାସଙ୍କ ଶକୁନ୍ତଳା ଖ୍ୟାତି ଅର୍ଜନ କରିଛି ।

ଗୁପ୍ତଯୁଗୀୟ ସଂସ୍କୃତ ସାହିତ୍ୟର ମହତ୍ତ୍ୱ ବୃଦ୍ଧି ପାଇଁ କାଳିଦାସଙ୍କ ରଚନାମାନ ଅନବଦ୍ୟ ଥିଲା । ତାଙ୍କ ବ୍ୟତୀତ, ଅନ୍ୟ କେତେଜଣ ପ୍ରଖ୍ୟାତ ଲେଖକଙ୍କ ରଚିତ ସାହିତ୍ୟ ଦ୍ୱାରା ସେକାଳର ସଂସ୍କୃତ ସାହିତ୍ୟ ସମୃଦ୍ଧ ହୋଇଥିଲା ।

**ଭାରବି**

କାଳିଦାସଙ୍କ କିଛି ସମୟ ପରେ ଭାରବି ତାଙ୍କର ପ୍ରସିଦ୍ଧ ମହାକାବ୍ୟ 'କିରାତାର୍ଜୁନୀୟ' ରଚନା କରିଥିଲେ । ମହାଭାରତର ବନପର୍ବରେ ଥିବା ଅର୍ଜୁନଙ୍କ କାହାଣୀକୁ ଭିତ୍ତିକରି ସେ ଏହି ଗ୍ରନ୍ଥ ଲେଖିଥିଲେ । ଏଥିରେ ପାଣ୍ଡବମାନଙ୍କର ବାରବର୍ଷ ପାଇଁ ଅରଣ୍ୟବାସ ବେଳେ ଯେଉଁସବୁ ଘଟଣା ଘଟିଥିଲା ତାହା ଉପରେ ଆଲୋକପାତ କରାଯାଇଛି । ଯୁଧିଷ୍ଠିରଙ୍କ ସତ୍ୟନିଷ୍ଠା, ବ୍ୟାସଙ୍କର ଉପଦେଶ, ଶିବଙ୍କ ନିକଟରୁ ଅର୍ଜୁନଙ୍କର ଦିବ୍ୟାସ୍ତ୍ର ଲାଭ ପାଇଁ ପ୍ରୟାସ, କିରାତ ରୂପରେ ଶିବଙ୍କ ଆବିର୍ଭାବ ଏବଂ ଅର୍ଜୁନଙ୍କୁ ଅସ୍ତ୍ରଦାନ ଇତ୍ୟାଦି ଘଟଣା ହେଉଛି ଏହି କାବ୍ୟର ବିଷୟବସ୍ତୁ ।

କିନ୍ତୁ ଏହି ସହଜ ବିଷୟକୁ କେନ୍ଦ୍ରକରି ଭାରବି ତାଙ୍କ ଅଦ୍ଭୁତ ବର୍ଣ୍ଣନା ଶକ୍ତିର ପରିଚୟ ଦେଇଥିଲେ । ହିମାଳୟ ଶିଖରରେ ଶରତକାଳୀନ ଦୃଶ୍ୟ, ଜଳ ଓ ସ୍ଥଳଭାଗରେ ଗନ୍ଧର୍ବ ଓ ଅପ୍ସରାମାନଙ୍କ ବିଳାସ କ୍ରୀଡ଼ା ଏବଂ

ଅରଣ୍ୟାଞ୍ଚଳର ପ୍ରାକୃତିକ ଶୋଭା ପ୍ରଭୃତି ହୃଦୟସ୍ପର୍ଶୀ ଭାବେ ବର୍ଣ୍ଣନା କରାଯାଇଛି । ଭାଷା ଓ ଶବ୍ଦ ପ୍ରୟୋଗର ଶୃଙ୍ଖଳା ପାଇଁ ଭାରବିଙ୍କ ରଚନା ପ୍ରଶଂସିତ ହୋଇଛି ।

**ଶୂଦ୍ରକ**

ଶୂଦ୍ରକ ହେଉଛନ୍ତି ଗୁପ୍ତଯୁଗର ଅନ୍ୟଜଣେ ଖ୍ୟାତନାମା ସାହିତ୍ୟିକ । ତାହାଙ୍କ ରଚିତ ନାଟକ 'ମୃଚ୍ଛକଟିକ' ସଂସ୍କୃତ ସାହିତ୍ୟର ଗୋଟିଏ ଅମୂଲ୍ୟ ଗ୍ରନ୍ଥ ରୂପେ ବିବେଚିତ ହୋଇଛି । କିମ୍ବଦନ୍ତୀ ଅନୁଯାୟୀ ଶୂଦ୍ରକ ଥିଲେ ଜଣେ ବ୍ରାହ୍ମଣ ରାଜା । ଋଗ୍ ବେଦ, ସାମ ବେଦ ଓ ଗଣିତ ଶାସ୍ତ୍ର ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଶିବଙ୍କ ବରପ୍ରାପ୍ତି ବଳରେ ସେ ନିଜର ପ୍ରତିଭାର ବିକାଶ କରିଥିଲେ । ରାଜା ଭାବରେ ସେ ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିବାକୁ ସମର୍ଥ ହୋଇଥିଲେ ଓ ପରେ ନିଜର ପୁତ୍ରଙ୍କ ହସ୍ତରେ ରାଜ୍ୟ ଅର୍ପଣ କରି ନିଜର ଏକଶତ ବର୍ଷ ବୟସରେ ଅଗ୍ନିପ୍ରବେଶ ପୂର୍ବକ ଇହଲୀଳା ସମ୍ବରଣ କରିଥିଲେ ।

ମୃଚ୍ଛକଟିକ ନାଟକରେ ଶୂଦ୍ରକ ଗତାନୁଗତିକ ବିଷୟମାନ ତ୍ୟାଗକରି ନୂତନ ବିଷୟବସ୍ତୁ ପ୍ରତି ଧ୍ୟାନ ଦେଇଥିଲେ । ମନୁଷ୍ୟ ଜୀବନକୁ ସେ ପ୍ରଶସ୍ତ ଓ ଗଭୀର ଦୃଷ୍ଟିଭଙ୍ଗୀରେ ଦେଖିଥିଲେ । ଅନେକପ୍ରକାର ଚରିତ୍ରର ଅବତାରଣା ଦ୍ୱାରା ସେ ତାଙ୍କ ନାଟକକୁ କ୍ଷିପ୍ର ଗତିରେ ଆଗେଇ ନେଇଥିଲେ । ରାଜାରାଣୀ-ମାନଙ୍କ କାହାଣୀ ପରିବର୍ତ୍ତେ ସେ ସାଧାରଣ ମନୁଷ୍ୟର ଜୀବନଯାତ୍ରା ଉପରେ ଲେଖନୀ ଚାଳନା କରିଥିଲେ । ସଂସ୍କୃତ ସାହିତ୍ୟରେ ଏପରି ବିଷୟର ନାଟକ ଏହା ପ୍ରଥମ ବୋଲି କୁହାଯାଇଛି ।

'ମୃଚ୍ଛକଟିକ' ଶବ୍ଦର ଅର୍ଥ ହେଉଛି କ୍ଷୁଦ୍ର-ମୃତ୍ତିକା-ଶକଟ । ନାୟିକାଙ୍କ ଅଳଙ୍କାରଗୁଡ଼ିକ ଗୋଟିଏ ଖେଳନା-ଶକଟ ମଧ୍ୟରେ ରହିଯିବା ପରେ ନାନା ପ୍ରକାର ଜଟିଳ ପରିସ୍ଥିତି ସୃଷ୍ଟି ହୋଇ ଶେଷରେ ନାୟକ-ନାୟିକାଙ୍କ ମିଳନ ଘଟିଲା । ଉଜ୍ଜୟିନୀ ନଗରୀର ଗଳି କନ୍ଦିରେ ଘଟୁଥିବା ମନୁଷ୍ୟର ଦୈନନ୍ଦିନ ଜୀବନ ଉପରେ ଦୃଶ୍ୟମାନ ବର୍ଣ୍ଣନା କରିବାକୁ ଯାଇ ନାଟ୍ୟକାର ସେଠାକାର ଚୋର ତସ୍କର, ଠକ, ପ୍ରବଞ୍ଚକ, ଜୁଆଖେଳାଳି, ରାଜନୈତିକ ଶଠ, ଶଇତାନ, ସାଧୁସନ୍ନ୍ୟାସୀ, ସଭାସଦ୍, ଆଳସ୍ୟପରାୟଣ ବ୍ୟକ୍ତି, ପୋଲିସ କର୍ମଚାରୀ, ଦାସଦାସୀ, ଦୁଷ୍ଟଚରିତ୍ର, ବ୍ୟଭିଚାରିଣୀ ଓ ବ୍ୟଭିଚାରୀ ପ୍ରଭୃତି ବିଭିନ୍ନ ଚରିତ୍ରର

ସମାବେଶରେ ସେ ତାଙ୍କର ଏହି ଅପୂର୍ବ ନାଟକ ରଚନା କରିଛନ୍ତି । କୌତୂହଳପ୍ରଦ ସାମାଜିକ ଅବସ୍ଥା ମଧ୍ୟରେ ନାୟକ-ନାୟିକାଙ୍କ ପ୍ରଣୟ ରୋମାଞ୍ଚକର ଭାବରେ ଆଗେଇ ଚାଲିଛି । ସାଧାରଣ ନରନାରୀଙ୍କ ପ୍ରୀତି ମଧ୍ୟକୁ ନାଟ୍ୟକାର ଗୋଟିଏ ଦେଶ ଓ ରାଜଧାନୀର ରାଜନୈତିକ ଷଡ଼ଯନ୍ତ୍ର ଓ ଅଭିସନ୍ଧି ଇତ୍ୟାଦି ଘଟଣାକୁ ଟାଣି ଆଣିଛନ୍ତି । ହାସ୍ୟରସ, କୌତୁକ, ଦୁର୍ଘଟଣା, ହତ୍ୟାକାଣ୍ଡ ଓ ଦରବାର ଦୃଶ୍ୟ ଦ୍ୱାରା ନାଟକଟିକୁ ରହସ୍ୟାବୃତ କରାଯାଇଛି । ଦର୍ଶକମାନଙ୍କ ଉତ୍କଣ୍ଠା ସୃଷ୍ଟି ପାଇଁ ଲେଖକ ଅନେକ ପ୍ରକାର କୌଶଳ ପ୍ରୟୋଗ କରିଛନ୍ତି । ବ୍ରାହ୍ମଣ ବା ତସ୍କରର ଚରିତ୍ର ସହ, ଆନନ୍ଦ ଓ ଦୁଃଖ, ହାସ୍ୟ ଓ କାରୁଣ୍ୟ ପ୍ରଭୃତିର ଦୃଶ୍ୟ ବହନ କରି ଏହି ନାଟକ ଅଭିନବ ଆକାର ଧାରଣ କରିଛି । କବିତ୍ୱ ଓ ଶିକ୍ଷାଦାନ ଦୃଷ୍ଟିରୁ ନାଟକଟି ମହତ୍ତ୍ୱପୂର୍ଣ୍ଣ ।

ଗୋଟିଏ ସାମାଜିକ ନାଟକ ରୂପେ ମୃଚ୍ଛକଟିକ ତତ୍କାଳୀନ ସମାଜର ଦୋଷ ଗୁଣ ଓ ଭଲ ମନ୍ଦର ପରିଚୟ ବହନ କରିଥାଏ । ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ ଜନ୍ମିଥିବା ଧନଶାଳୀ ନାୟକ ଓ ସାମାଜିକ ଦୃଷ୍ଟିରୁ ପତିତା ନାୟିକାଙ୍କ ମଧ୍ୟରେ ପ୍ରଣୟକୁ କେନ୍ଦ୍ରକରି ଶୂଦ୍ରକ ଯେଉଁ ନାଟକ ଲେଖିଥିଲେ ତାହା ଯେକୌଣସି ସମୟର ବାସ୍ତବ ଚିତ୍ର ରୂପେ ବିବେଚିତ ହୋଇପାରିବ ।

ମୃଚ୍ଛକଟିକ ବ୍ୟତୀତ ଶୂଦ୍ରକଙ୍କର ସଂସ୍କୃତ ସାହିତ୍ୟକୁ ଅନ୍ୟ କେତେକ ମୂଲ୍ୟବାନ ଅବଦାନ ରହିଅଛି ।

**ବିଶାଖଦତ୍ତ**

ଗୁପ୍ତଯୁଗର ଅନ୍ୟ ଜଣେ ସାହିତ୍ୟସ୍ରଷ୍ଟା ଥିଲେ ବିଶାଖଦତ୍ତ । ତାହାଙ୍କ ରଚିତ 'ମୁଦ୍ରା-ରାକ୍ଷସ' ହେଉଛି ଏକ ପ୍ରସିଦ୍ଧ ନାଟକ । କାହାଣୀ, ବର୍ଣ୍ଣନା ଭଙ୍ଗୀ ଓ ଉପସ୍ଥାପନା ଦୃଷ୍ଟିରୁ ଏହି ନାଟକ ଅନ୍ୟାନ୍ୟ ସଂସ୍କୃତ ନାଟକଠାରୁ ଭିନ୍ନ ଆକାର ଧାରଣ କରିଛି । ନାୟକ-ନାୟିକା ମଧ୍ୟରେ ଚିରାଚରିତ ପ୍ରଣୟ କିମ୍ବା କଳ୍ପନାପ୍ରସୂତ ବର୍ଣ୍ଣନା ଗୁଡ଼ିକ ବାଦ୍ ଦେଇ ଏହି ନାଟକ ରଚିତ ହୋଇଛି । ମୁଖ୍ୟତଃ, ଏହା ଗୋଟିଏ ରାଜନୈତିକ ନାଟକ । ଏଥିରେ କୌଣସି ନାୟିକାର ଭୂମିକା ନାହିଁ । ନାରୀ ଚରିତ୍ର ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇ ନାହିଁ । ଧର୍ମୀୟ ବା ନୈତିକ ଭାବଧାରା ପ୍ରତି ମଧ୍ୟ ଲେଖକ ଆଗ୍ରହ ଦେଖାଇ ନାହାନ୍ତି । ରାଜନୀତିକୁ ଗୋଟିଏ କଠୋର କର୍ତ୍ତବ୍ୟ ରୂପେ ଦେଖାଇବାକୁ ଆଜି

ନାଟ୍ୟକାର ତାଙ୍କ ରଚନାରେ ମନୁଷ୍ୟର କର୍ତ୍ତବ୍ୟବୋଧ, କାର୍ଯ୍ୟସିଦ୍ଧି ପାଇଁ ଶଠତା ଓ କୁଟିଳତା, ଆଦର୍ଶ ପ୍ରତି ଗଭୀର ଅନୁରକ୍ତି ଓ ନିଃସ୍ୱାର୍ଥପର କର୍ମ ପ୍ରେରଣା ପ୍ରଭୃତିର ଆବଶ୍ୟକତା ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି ।

ଅତୀତ କାଳର ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ଓ ତାହାଙ୍କ ବିଚକ୍ଷଣ ମନ୍ତ୍ରୀ ତଥା ଗୁରୁ ଚାଣକ୍ୟଙ୍କ ଐତିହାସିକ ସମ୍ପର୍କ ତଥା ରାଜନୀତିକୁ ପୃଷ୍ଠଭୂମିରେ ରଖି ବିଶାଖଦତ୍ତ 'ମୁଦ୍ରା-ରାକ୍ଷସ' ନାଟକ ରଚନା କରିଥିଲେ । ନିଜ କୂଟନୀତି ବଳରେ ଚାଣକ୍ୟ ମଗଧ ସାମ୍ରାଜ୍ୟର ନନ୍ଦ ରାଜାଙ୍କୁ ବିନାଶ କରି ଚନ୍ଦ୍ରଗୁପ୍ତଙ୍କୁ ପାଟଳିପୁତ୍ରର ରାଜସିଂହାସନରେ ବସାଇ ଥିଲେ । ସେଥିରେ କ୍ରୋଧାନ୍ୱିତ ହୋଇ ନନ୍ଦ ରାଜାଙ୍କର ରାକ୍ଷସ ନାମକ ଜନୈକ ମନ୍ତ୍ରୀ ଚନ୍ଦ୍ରଗୁପ୍ତଙ୍କୁ ଧ୍ୱଂସ କରିବା ପାଇଁ ଏବଂ ପୁନର୍ବାର ନନ୍ଦ ରାଜବଂଶକୁ ପ୍ରତିଷ୍ଠା କରିବା ପାଇଁ ଷଡ଼ଯନ୍ତ୍ର ଆରମ୍ଭ କରିଥିଲେ । ତାହା ଦେଖି ଚାଣକ୍ୟ ତାଙ୍କର ଅସାଧାରଣ କୂଟନୈତିକ କୌଶଳ ପ୍ରୟୋଗ କରି ରାକ୍ଷସଙ୍କ ଷଡ଼ଯନ୍ତ୍ରକୁ ବ୍ୟର୍ଥ କରିବା ପାଇଁ ଲାଗି ପଡ଼ିଥିଲେ । ପ୍ରଖର ବୁଦ୍ଧି ପ୍ରୟୋଗ ଦ୍ୱାରା ଶେଷରେ ସେ ରାକ୍ଷସଙ୍କୁ ଅସହାୟ ଅବସ୍ଥାକୁ ଆଣି ପାରିଥିଲେ । କିନ୍ତୁ ରାକ୍ଷସଙ୍କର ଦକ୍ଷତା ଓ ପ୍ରଭୁଭକ୍ତିର ପରାକାଷ୍ଠା ଦେଖି ତାଙ୍କୁ ଶେଷରେ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ଜଣେ ଅମାତ୍ୟ ରୂପେ ନିଯୁକ୍ତ କରାଇ ଥିଲେ । ତଦ୍ଦ୍ୱାରା, ମୌର୍ଯ୍ୟ ସିଂହାସନ ପ୍ରତି ଦେଖା ଦେଇଥିବା ବିପଦ ଉଭେଇ ଯାଇଥିଲା ଓ ଚନ୍ଦ୍ରଗୁପ୍ତଙ୍କ ଶାସନ ଦୃଢ଼ୀଭୂତ ହୋଇଥିଲା । ଏହା ହିଁ ହେଉଛି 'ମୁଦ୍ରା-ରାକ୍ଷସ' ନାଟକର ବିଷୟବସ୍ତୁ ।

କିନ୍ତୁ ବିଷୟବସ୍ତୁ ସହଜ ହେଲେ ମଧ୍ୟ ଲେଖକଙ୍କ ବଳିଷ୍ଠ ଲେଖନୀ ଦ୍ୱାରା ଏକ ଉତ୍କଣ୍ଠାପୂର୍ଣ୍ଣ ଓ ଚମତ୍କାର ପରିବେଶ ମଧ୍ୟ ଦେଇ ନାଟକର ଦୃଶ୍ୟ ଗୁଡ଼ିକ ଉପସ୍ଥାପନ କରାଯାଇଛି । ପରାଜିତ ନନ୍ଦବଂଶ ପ୍ରତି ରାକ୍ଷସଙ୍କ ଆନୁଗତ୍ୟ ଏବଂ ସେଥିପାଇଁ ମୌର୍ଯ୍ୟ ରାଜତ୍ୱ ବିରୁଦ୍ଧରେ ତାଙ୍କର ଗଭୀର ଷଡ଼ଯନ୍ତ୍ର ନାଟକଟିକୁ ରୋମାଞ୍ଚକର କରିଛି । ସେହିପରି ମହାମତି ଚାଣକ୍ୟଙ୍କର ପ୍ରଖର କୂଟବୁଦ୍ଧି ଓ ସାମ୍ରାଜ୍ୟ ସୁରକ୍ଷାର ଲକ୍ଷ୍ୟସିଦ୍ଧି ପାଇଁ କଠୋର ପଦକ୍ଷେପ-ମାନ ନାଟକଟିକୁ ଉଦ୍‌ବେଗମୟ କରିଛି । ଉଭୟ ଚାଣକ୍ୟ ଓ ରାକ୍ଷସଙ୍କର ବୁଦ୍ଧି, ଷଡ଼ଯନ୍ତ୍ରପୂର୍ଣ୍ଣ କାର୍ଯ୍ୟକଳାପ ଦ୍ୱାରା ନାଟକର ଦୃଶ୍ୟଗୁଡ଼ିକ ରହସ୍ୟାବୃତ ହୋଇଛି ।

ଚନ୍ଦ୍ରଗୁପ୍ତ ଓ ଚାଣକ୍ୟଙ୍କ ମଧ୍ୟରେ କୃତ୍ରିମ କଳହ ଓ ଛଳନାପୂର୍ଣ୍ଣ ଦ୍ୱନ୍ଦ୍ୱ ସୃଷ୍ଟି କରି ଲେଖକ ରାକ୍ଷସଙ୍କୁ ଚାଣକ୍ୟଙ୍କ କୂଟନୀତି ଆଗରେ ପରାଭୂତ କରାଇ ପାରିଛନ୍ତି । ନାଟକର ବିଭିନ୍ନ ଚରିତ୍ର ମଧ୍ୟରେ କଥୋପକଥନ ଗୁଡ଼ିକ ଓଜସ୍ୱୀ ଓ ନାଟକୀୟ ଶୈଳୀରେ ଲିଖିତ ହୋଇଛି । ତେଣେ, ମନୁଷ୍ୟ ଚରିତ୍ରର ବୈଚିତ୍ର୍ୟ ଓ ମହତ୍ତ୍ୱ ଦେଖାଇବାକୁ ଯାଇ ନାଟ୍ୟକାର ନିଜର ଅସାଧାରଣ ଦକ୍ଷତାର ପରିଚୟ ଦେଇଛନ୍ତି । ଉଦାହରଣ ସ୍ୱରୂପ : ଚାଣକ୍ୟ ଓ ରାକ୍ଷସଙ୍କ ଚରିତ୍ର ମଧ୍ୟରେ ଥିବା ପାର୍ଥକ୍ୟ ଓ ସାମଞ୍ଜସ୍ୟ ବିଚାର କଲେ ଲେଖକଙ୍କ ପ୍ରତିଭା ଜାଣି ହେବ । ସେହି ଉଭୟ ନାୟକ ଥିଲେ ବିଚକ୍ଷଣ ରାଜନୀତିଜ୍ଞ, ସାହସୀ ଓ ଧୁରନ୍ଧର ବ୍ୟକ୍ତି । ପୁଣି ଉଭୟେ ଥିଲେ ନିଃସ୍ୱାର୍ଥପର ଏବଂ କର୍ତ୍ତବ୍ୟପରାୟଣ ମନୁଷ୍ୟ । ଲକ୍ଷ୍ୟସିଦ୍ଧି ପାଇଁ ଉଭୟଙ୍କର ଥିଲା ଅଦମ୍ୟ ପ୍ରେରଣା ଓ ଅସମ୍ଭବ ସଂକଳ୍ପ । ଅଥଚ, ଉଭୟଙ୍କର ଚରିତ୍ର ମଧ୍ୟରେ ଥିଲା ଗଭୀର ପାର୍ଥକ୍ୟ । ଚାଣକ୍ୟ ଥିଲେ କଠୋର, ରାକ୍ଷସ ଥିଲେ କୋମଳ । ଚାଣକ୍ୟ ଥିଲେ ଦୃଢ଼ମନା, ଆତ୍ମ-ବିଶ୍ୱାସୀ ଓ ସଦା ସତର୍କ ବ୍ୟକ୍ତି । ରାକ୍ଷସ ଥିଲେ ଭାବପ୍ରବଣ, ଚପଳମନା ଓ ଅସାବଧାନ । ଚାଣକ୍ୟ କାହାରିକୁ ବିଶ୍ୱାସ କରୁ ନ ଥିଲେ କିମ୍ବା କ୍ଷମା ଦେଉ ନ ଥିଲେ । କିନ୍ତୁ ରାକ୍ଷସ ଥିଲେ ସରଳବିଶ୍ୱାସୀ ଓ କ୍ଷମାଶୀଳ । ଚାଣକ୍ୟଙ୍କୁ ସମସ୍ତେ ଭୟ କରୁଥିଲେ, ରାକ୍ଷସଙ୍କୁ ସମସ୍ତେ ଭଲ ପାଉଥିଲେ । ଚାଣକ୍ୟଙ୍କ ମନରେ ଚନ୍ଦ୍ରଗୁପ୍ତଙ୍କ ପ୍ରତି ଶ୍ରଦ୍ଧା ବା ମମତା ନ ଥିଲା, ଥିଲା କେବଳ ତାଙ୍କ ସିଂହାସନ ଓ ସାମ୍ରାଜ୍ୟ ପ୍ରତି ଅବାଧ କର୍ତ୍ତବ୍ୟବୋଧ । ରାକ୍ଷସଙ୍କ ମନରେ ଥିଲା ତାଙ୍କର ପ୍ରଭୁଙ୍କ ପ୍ରତି ଅଶେଷ ଅନୁରକ୍ତି, ଭକ୍ତି ଓ ସମ୍ବେଦନା ।

ନାଟକର ବିଶେଷତ୍ୱ ହେଉଛି ଯେ, ଚାଣକ୍ୟ ଜଣେ ଦୁରନ୍ତ ରାଜନୀତିଜ୍ଞ ଓ ପରମ ଶତ୍ରୁ ହେଲେ ମଧ୍ୟ, ତାଙ୍କ ଶତ୍ରୁଙ୍କ ନିକଟରେ ଥିବା ଆଦର୍ଶ ଗୁଣଗୁଡ଼ିକୁ ସମ୍ମାନ ଦେବାକୁ ଜାଣିଥିଲେ । ସେଥିପାଇଁ ସେ ଛଳେବଳେ କୌଶଳେ ରାକ୍ଷସଙ୍କୁ ଚନ୍ଦ୍ରଗୁପ୍ତଙ୍କ ପକ୍ଷକୁ ଟାଣି ଆଣିବା ପାଇଁ ଦାରୁଣ ଓ ସାଙ୍ଘାତିକ ଷଡ଼ଯନ୍ତ୍ର କରିଥିଲେ । ରାକ୍ଷସ ଶେଷରେ ନିଜର ସୁଗୁଣମାନଙ୍କର ଶିକାର ହୋଇଥିଲେ । ତାଙ୍କର ପରାଜୟ ଦ୍ୱାରା ସେ ଅନ୍ୟମାନଙ୍କର ସମ୍ବେଦନା ଲାଭ କରିପାରିଲେ ।

ମନୁଷ୍ୟର ରାଜନୈତିକ ଚରିତ୍ରର ଗଭୀର ବିଶ୍ଳେଷଣ ଦ୍ୱାରା ବିଶାଖଦତ୍ତ ତାଙ୍କ ନାଟକକୁ ବାସ୍ତବ ରୂପ ଦେଇଛନ୍ତି । ସେଥିପାଇଁ 'ମୁଦ୍ରା-ରାକ୍ଷସ' **ନାଟକର ମହତ୍ତ୍ୱ ଚିରସ୍ଥାୟୀ ହୋଇଛି ।**

**ଭର୍ତ୍ତୃହରି**

ସେକାଳର ଅନ୍ୟ ଜଣେ ସ୍ୱନାମଧନ୍ୟ କବି ଥିଲେ ଭର୍ତ୍ତୃହରି । ଜନଶ୍ରୁତି ଅନୁସାରେ ସେ ଥିଲେ ଜଣେ ରାଜା । କିନ୍ତୁ ସଂସାର ପ୍ରତି ବିତୃଷ୍ଣ ହୋଇ ସେ ସନ୍ନ୍ୟାସବ୍ରତ ଗ୍ରହଣ କରିଥିଲେ । ତାହାଙ୍କ ରଚିତ 'ଶୃଙ୍ଗାର ଶତକ', 'ନୀତି ଶତକ' ଓ 'ବୈରାଗ୍ୟ ଶତକ' ନାମକ ତିନିଗୋଟି ଗ୍ରନ୍ଥ ସଂସ୍କୃତ ସାହିତ୍ୟ ପ୍ରତି ମହାର୍ଘ ଅବଦାନ ରୂପେ ପରିଚିତ । ଶୃଙ୍ଗାର ଶତକରେ କବି ସାଂସାରିକ କାମନା ବାସନା ଓ ମାୟା ମୋହ ପ୍ରଭୃତି ବିଷୟ ପ୍ରତି ଗୁରୁତ୍ୱ ଦେଇଛନ୍ତି । କିନ୍ତୁ ସେଥିମଧ୍ୟରେ ତାଙ୍କର ଉଚ୍ଚତର ଦାର୍ଶନିକ ଚିନ୍ତାଧାରା ପ୍ରକଟିତ ହୋଇଛି । ପ୍ରେମ ମଧ୍ୟରେ ସେ ଦେଖୁଛନ୍ତି ଉଭୟ ଆନନ୍ଦ ଓ ବିଷାଦ, ସୁଖ ଓ ଦୁଃଖ, ଶାନ୍ତି ଓ ଅଶାନ୍ତି, ଆକର୍ଷଣ ଓ ଘୃଣା ଏବଂ ଶେଷରେ ଅତ୍ୟଧିକ ମୋହ ମଧ୍ୟରୁ ସେ ପାଇଛନ୍ତି ବୈରାଗ୍ୟର ସ୍ୱାଦ ।

ତାଙ୍କ ନୀତି ଶତକରେ ଭର୍ତ୍ତୃହରି ମନୁଷ୍ୟ ଜାତି ପ୍ରତି ନୈତିକ ଶିକ୍ଷା ରଖି ଯାଇଛନ୍ତି । ସେଥିରେ ସେ ନୀତିବାକ୍ୟମାନ ଉଲ୍ଲେଖ କରିବା ସଙ୍ଗେ ସାଂସାରିକ ଜୀବନରେ ଘଟୁଥିବା ନୀତିହୀନ କାର୍ଯ୍ୟମାନ ପ୍ରତି ଧ୍ୟାନ ଆକର୍ଷଣ କରିଛନ୍ତି । ରାଜା ଓ ଶାସକମାନଙ୍କର ଔଦ୍ଧତ୍ୟ, ଧନଶାଳୀମାନଙ୍କର ଅହଂଭାବ, ପଦାନତମାନଙ୍କର ଅପମାନ, ଭ୍ରାନ୍ତ ଧାରଣା ଦ୍ୱାରା ସମାଜରେ ନୀତି ଓ ସଂସ୍କୃତି ପ୍ରତି ବିରୁଦ୍ଧାଚରଣ, ଦୁଷ୍ଟ ଓ ଅଜ୍ଞମାନଙ୍କ ଦ୍ୱାରା ଶିଷ୍ଟ ଓ ବିଜ୍ଞମାନଙ୍କ ପ୍ରତି ଅବଜ୍ଞା ପ୍ରଭୃତି ଦୁଃଖଦାୟକ ବିଷୟମାନ ଏହି ଶତକରେ ସ୍ଥାନ ପାଇଛି । କବି ଜାଣିଥିଲେ ଯେ, ତାଙ୍କର ନୀତି ବ୍ୟାଖ୍ୟା ଦ୍ୱାରା କେହି ପ୍ରଭାବିତ ହେବେ ନାହିଁ । ତେଣୁ ସେ ଦୁଃଖିତ ମନରେ ଲେଖିଥିଲେ "ଯେଉଁମାନେ ମୋତେ ବୁଝିବା ପାଇଁ କ୍ଷମ, ସେମାନେ ଈର୍ଷାକାତର; ଯେଉଁମାନେ କ୍ଷମତା-ହୀନ ସେମାନେ ନିଜ ଗର୍ବ ପାଇଁ ବୁଝିବାକୁ ଅକ୍ଷମ; ଅନ୍ୟମାନେ ଅଜ୍ଞତା ମଧ୍ୟରେ ନିମଜ୍ଜିତ; ଅତଏବ, ମୋର ସମସ୍ତ ଉତ୍ତମ କଥା ମୋ ନିଜ ମଧ୍ୟରେ ହିଁ ଜରାଜୀର୍ଣ୍ଣ ଅବସ୍ଥାକୁ ଆସି ଯାଇଛି ।"

ବୈରାଗ୍ୟ ଶତକ ଗ୍ରନ୍ଥରେ ଭର୍ତ୍ତୃହରି ତାଙ୍କ ପ୍ରାଣର ଉଦ୍‌ବେଗପୂର୍ଣ୍ଣ ବିତୃଷ୍ଣା ବିଷୟ ବର୍ଣ୍ଣନା କରିଛନ୍ତି । କିମ୍ବଦନ୍ତୀ ଅନୁଯାୟୀ ରାଜ୍ୟ ଭୋଗ ଓ ଆଶ୍ରମ ଜୀବନ ମଧ୍ୟରେ ଭର୍ତ୍ତୃହରି ସାତଥର ପାଇଁ ନିଜକୁ ଅଦଳ ବଦଳ

କରିଥିଲେ । ଏହା ଯଦି ସତ୍ୟ ହୋଇଥାଏ, ତେବେ ସାଂସାରିକ ମୋହ ଓ ବୈରାଗ୍ୟ, ଏହି ଉଭୟ ବିଷୟ ଉପରେ ସେ ପ୍ରଗାଢ଼ ଅଭିଜ୍ଞତା ଲାଭ କରିଥିବା ସମ୍ଭବ । କିନ୍ତୁ ଶେଷରେ ସେ ବୈରାଗ୍ୟ ପ୍ରତି ଆଗ୍ରହ ପ୍ରକାଶ ଦ୍ୱାରା 'ବୈରାଗ୍ୟ ଶତକ' ଲେଖିଥିଲେ । ଜଣେ ଆଦର୍ଶବାଦୀ ବ୍ୟକ୍ତି ଭାବରେ ସେ ମନୁଷ୍ୟ ଜୀବନକୁ ଯେପରି ଉନ୍ନତ ଭାବରେ ଦେଖିବାକୁ ଚାହୁଁଥିଲେ, ପ୍ରକୃତ ପକ୍ଷେ ଠିକ୍ ତାହାର ବିପରୀତ ଗୁଣାବଳୀ ଦେଖିଥିଲେ । ମନୁଷ୍ୟର ଅପବିତ୍ର ମନୋଭାବ ଦେଖି ପବିତ୍ରତା ପ୍ରତି ତାଙ୍କର ରହିଥିବା ବିଶ୍ୱାସ ସେ ହରାଇ ବସିଥିଲେ । ଅର୍ଥ ପିପାସା ଓ ଭୋଗ-ଲାଳସା ଯୋଗୁଁ ମନୁଷ୍ୟର ଅଧଃପତନ ତାଙ୍କୁ ବ୍ୟଥିତ କରିଥିଲା । ସଂସାରର ଅସାରତା ପ୍ରମାଣ କରିବାକୁ ଯାଇ ଭର୍ତ୍ତୃହରି ଜରା, ବ୍ୟାଧି ଓ ମୃତ୍ୟୁ ପ୍ରଭୃତି ଅବଶ୍ୟମ୍ଭାବୀ ପରିଣାମଗୁଡ଼ିକୁ ବର୍ଣ୍ଣନା କରିଥିଲେ । ତାଙ୍କ ବୈରାଗ୍ୟ ଶତକ ହେଉଛି ଅନାସକ୍ତ ଜୀବନଯାପନ ପାଇଁ ବହୁମୂଲ୍ୟ ଉପଦେଶାବଳୀ ।

ଉପର ବର୍ଣ୍ଣିତ ତିନି ଶତକ ବ୍ୟତୀତ ଭର୍ତ୍ତୃହରି ଅନ୍ୟାନ୍ୟ ଅନେକ ଗ୍ରନ୍ଥ ରଚନା କରିଥିଲେ ।

**ପଞ୍ଚତନ୍ତ୍ର**

ଗୁପ୍ତଯୁଗର ନାନାବିଧ ସାହିତ୍ୟ ମଧ୍ୟରେ ସଂସ୍କୃତରେ ଲିଖିତ 'ପଞ୍ଚତନ୍ତ୍ର' ହେଉଛି ସର୍ବାଧିକ ଜନପ୍ରିୟ ସାହିତ୍ୟ । ଏଥିରେ ବିଭିନ୍ନ ଗଳ୍ପମାନ ସ୍ଥାନ ପାଇଛି । ଜୀବଜନ୍ତୁଗୁଡ଼ିକୁ ମନୁଷ୍ୟ ଚରିତ୍ର ରୂପେ ବ୍ୟବହାର କରି ଗଳ୍ପଗୁଡ଼ିକ ରଚନା କରାଯାଇଥିଲା । ପ୍ରତ୍ୟେକ ଗଳ୍ପରେ ଅଦ୍ଭୁତ ଚତୁରୀ ଦେଖିବାକୁ ମିଳେ । ସେଥିସଙ୍ଗେ, ପ୍ରତ୍ୟେକ ଗଳ୍ପରେ ଶିକ୍ଷଣୀୟ ଉପଦେଶମାନ ରହିଛି । ଗଳ୍ପଗୁଡ଼ିକ ଏପରି ସୁନ୍ଦର ଓ ସରଳ ଯେ, ସାଧାରଣ ଲୋକଙ୍କ ପକ୍ଷରେ ତାହାର ଅର୍ଥ ବୁଝିବା ସହଜ ହୋଇଛି । 'ପଞ୍ଚତନ୍ତ୍ର'ର ଗଳ୍ପମାନ ପ୍ରକୃତ ପକ୍ଷେ ଉପକଥା ବା ନୀତିକଥା । କୋମଳମତି ବାଳକ ବାଳିକାମାନଙ୍କ ମନ ସ୍ପର୍ଶ କରିବା ପାଇଁ ଗଳ୍ପଗୁଡ଼ିକ ଅତିଶୟ ଉପଯୋଗୀ । ସେଗୁଡ଼ିକ ଗଦ୍ୟ ଆକାରରେ ଲେଖା ଯାଇଥିଲା ।

'ପଞ୍ଚତନ୍ତ୍ର'ର ଲେଖକ ଥିଲେ ବିଷ୍ଣୁଶର୍ମା । ତାହାଙ୍କ ପ୍ରକୃତ ଜୀବନ ପରିଚୟ ଜଣାଯାଏ ନାହିଁ । କିମ୍ବଦନ୍ତୀ ଅନୁସାରେ ସେ ଥିଲେ ଜଣେ ଜ୍ଞାନୀ

ବ୍ରାହ୍ମଣ । ଅମରଶକ୍ତି ନାମଧେୟ ଦାକ୍ଷିଣାତ୍ୟର ଜଣେ ରାଜାଙ୍କ ନିର୍ବୋଧ ପୁତ୍ରମାନଙ୍କୁ ଗଳ୍ପ ମାଧ୍ୟମରେ ସେ ଜ୍ଞାନ ଦାନ କରିଥିଲେ ।

କାଳକ୍ରମେ 'ପଞ୍ଚତନ୍ତ୍ର'ର ଗଳ୍ପମାନ ଭାରତ ବାହାରେ ପ୍ରସାର ଲାଭ କରିଥିଲା । ଇଉରୋପ ମହାଦେଶର ଅଧିକାଂଶ ରାଜ୍ୟରେ ଏହା ବିଶେଷ ଆଦର ପାଇଥିଲା । ପୃଥିବୀର ପଚାଶରୁ ଅଧିକ ସଂଖ୍ୟକ ଭାଷାରେ 'ପଞ୍ଚତନ୍ତ୍ର'ର ଅନୁବାଦ ଦେଖିବାକୁ ମିଳେ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସବୁଆଡ଼େ ଏହି ଗ୍ରନ୍ଥ ଅଦ୍ଭୁତ ଭାବେ ଲୋକପ୍ରିୟ ହୋଇଥିଲା । ବିଶ୍ୱ-ସାହିତ୍ୟକୁ ପଞ୍ଚତନ୍ତ୍ରର ଗଳ୍ପମାନ ହେଉଛି ଭାରତୀୟ ସାହିତ୍ୟର ଗୋଟିଏ ସୁମହାନ ଦାନ ।

**ଅନ୍ୟାନ୍ୟ ସାହିତ୍ୟ**

ଉପରନାମିତ କବି ଓ ସାହିତ୍ୟିକମାନଙ୍କ ବ୍ୟତୀତ ଗୁପ୍ତଯୁଗରେ ଏବଂ ସେହି ଯୁଗ ପରେ ଅନ୍ୟ ଲେଖକମାନେ ସଂସ୍କୃତ ସାହିତ୍ୟର ବହୁ ବୃଦ୍ଧି କରିଥିଲେ । ଗୁପ୍ତଯୁଗରେ ଯେଉଁ ଧର୍ମୀୟ ଜାଗରଣ ଦେଖିବାକୁ ମିଳିଥିଲା ତାହାର ଫଳ ସ୍ୱରୂପ ଅନେକାନେକ ଶାସ୍ତ୍ର ଓ ପୁରାଣ ରଚିତ ହୋଇଥିଲା । ପୂର୍ବବର୍ତ୍ତୀ ଯୁଗରେ ଲିଖିତ ପୁରାଣମାନଙ୍କର ଏହି ଯୁଗରେ ପୂର୍ଣ୍ଣତାପ୍ରାପ୍ତି ଘଟିଥିଲା । ବ୍ରାହ୍ମଣ୍ୟ ହିନ୍ଦୁ ଧର୍ମ ବ୍ୟତୀତ ବୌଦ୍ଧ ଧର୍ମ ସମ୍ବନ୍ଧରେ ମଧ୍ୟ ମୂଲ୍ୟବାନ ଗ୍ରନ୍ଥମାନ ଲିଖିତ ହୋଇଥିଲା । ଅଶ୍ୱଘୋଷ, ଅସଙ୍ଗ, ବସୁବନ୍ଧୁ ଓ ଦିଙ୍ଗ୍‌ନାଗ ପ୍ରଭୃତି ବୌଦ୍ଧ ପଣ୍ଡିତମାନେ ବୌଦ୍ଧ ସାହିତ୍ୟର ଅଶେଷ ଉନ୍ନତି ସାଧନ କରିଥିଲେ ।

ଗୁପ୍ତଯୁଗରେ ଭାରତୀୟ ଦର୍ଶନ ଉପରେ ଅନେକ ଗ୍ରନ୍ଥ ରଚିତ ହୋଇ-ଥିଲା । ବିଜ୍ଞାନ ବିଷୟରେ ମହାମନୀଷୀ ଆର୍ଯ୍ୟଭଟ୍ଟ ତାହାଙ୍କ ସୁପ୍ରସିଦ୍ଧ ଗ୍ରନ୍ଥ 'ଆର୍ଯ୍ୟଭଟ୍ଟୀୟମ୍' ପ୍ରଣୟନ କରିଥିଲେ । ସେଥିରେ ସେ ଅଙ୍କ, ବୀଜଗଣିତ ଓ ଜ୍ୟାମିତି ବିଷୟମାନଙ୍କରେ ଉଚ୍ଚାଙ୍ଗ ସିଦ୍ଧାନ୍ତମାନ ଦେଇ ଯାଇଥିଲେ । ତାହାଙ୍କ ଲିଖିତ 'ସୂର୍ଯ୍ୟ ସିଦ୍ଧାନ୍ତ' ଗ୍ରନ୍ଥରେ ସେ ସୂର୍ଯ୍ୟ ଓ ଚନ୍ଦ୍ରଗ୍ରହଣର ବୈଜ୍ଞାନିକ କାରଣମାନ ଦର୍ଶାଇ ଥିଲେ । ସେ ପ୍ରମାଣ କରିଥିଲେ ଯେ, ପୃଥିବୀ ହେଉଛି ଗୋଲାକାର ଓ ସୂର୍ଯ୍ୟର ଚାରିପାଖରେ ପୃଥିବୀ ପ୍ରଦକ୍ଷିଣ କରୁଛି ।

ଗୁପ୍ତଯୁଗର ଅନ୍ୟତମ ବିଖ୍ୟାତ ବୈଜ୍ଞାନିକ ଥିଲେ 'ବରାହ ମିହିର' । ସେ 'ବୃହତ୍ ସଂହିତା' ନାମକ ଗ୍ରନ୍ଥ ରଚନା କରିଥିଲେ । ସେଥିରେ ସେ

ଜ୍ୟୋତିର୍ବିଦ୍ୟା, ଉଦ୍ଭିଦ ବିଦ୍ୟା ଓ ଭୂଗୋଳ ବିଷୟରେ ବୈଜ୍ଞାନିକ ତଥ୍ୟମାନ ବର୍ଣ୍ଣନା କରିଥିଲେ । ତାହାଙ୍କ ଅନ୍ୟ ଗ୍ରନ୍ଥମାନଙ୍କ ମଧ୍ୟରେ 'ବୃହତ୍ ଜାତକ', 'ଲଘୁ ଜାତକ' ଓ 'ପଞ୍ଚ ସିଦ୍ଧାନ୍ତିକା' ପ୍ରସିଦ୍ଧ ଅଟେ । ସେ ସଂସ୍କୃତ ଭାଷାରେ ଧୂରନ୍ଧର ଥିଲେ ଓ କବିତା ରଚନା କରିଥିଲେ ।

ବହୁବିଧ ସାହିତ୍ୟିକ କୃତିତ୍ୱ ପାଇଁ ଗୁପ୍ତଯୁଗର ସଂସ୍କୃତ ମହୀୟସୀ ହୋଇଛି । ସଂସ୍କୃତ ସାହିତ୍ୟର ସେହି ସୁବର୍ଣ୍ଣଯୁଗରେ ଯେଉଁ ଗ୍ରନ୍ଥମାନ ଆତ୍ମପ୍ରକାଶ କରିଥିଲା ସେସବୁର ପ୍ରଭାବ ଭବିଷ୍ୟତ ଯୁଗର ସାହିତ୍ୟକୁ ପ୍ରଭାବିତ କରିଥିଲା । ସେ ଯୁଗର ପ୍ରସିଦ୍ଧ ରଚନାମାନ ଆଜି ପର୍ଯ୍ୟନ୍ତ ଆଦୃତ ହୋଇ ଆସିଛି ।

## ପଞ୍ଚମ ଅଧ୍ୟାୟ

# ଭାରତୀୟ ସଂସ୍କୃତି ଉପରେ ଇସଲାମ ଧର୍ମର ପ୍ରଭାବ

## ( Impact of Islam on Indian Culture )

### ହଜରତ୍ ମହମ୍ମଦ ଓ ଇସଲାମ ଧର୍ମର ଅଭ୍ୟୁଦୟ

ଆରବ ଦେଶର ମକ୍କା ନଗରରେ ୫୭୦ ଖ୍ରୀଷ୍ଟାବ୍ଦରେ ଇସଲାମ ଧର୍ମର ପ୍ରବର୍ତ୍ତକ ମହମ୍ମଦ ଜନ୍ମଗ୍ରହଣ କରିଥିଲେ । ସେକାଳରେ ଆରବ ଦେଶର ଅଧିବାସୀମାନେ କୌଣସି ପ୍ରକାର ଉଚ୍ଚତର ଧର୍ମମତ ଦ୍ୱାରା ପ୍ରଭାବିତ ହୋଇ ନ ଥିଲେ । ଧର୍ମ ନାମରେ ଅନେକ ପ୍ରକାର କୁସଂସ୍କାର ପ୍ରଚଳିତ ଥିଲା । ଅନ୍ଧବିଶ୍ୱାସ ମଧ୍ୟରେ ଲୋକମାନେ ଅବାନ୍ତର କାର୍ଯ୍ୟକଳାପରେ ଲିପ୍ତ ଥିଲେ । ଆଧ୍ୟାତ୍ମିକ ଚିନ୍ତାଧାରା ସେମାନଙ୍କୁ ସ୍ପର୍ଶ କରି ନ ଥିଲା । ପ୍ରାଚୀନ ପାରସ୍ୟର ପାର୍ସି ଧର୍ମ ଓ ପରବର୍ତ୍ତୀ ସମୟର ଖ୍ରୀଷ୍ଟଧର୍ମର ପ୍ରଭାବ ପାଖରୁ ଆରବମାନେ ଅନେକ ଦୂରରେ ଥିଲେ ।

ବାଳକ ଅବସ୍ଥାରେ ମହମ୍ମଦ ଦୂରଦୂରାନ୍ତ ସ୍ଥାନମାନଙ୍କୁ ଯିବାପାଇଁ ସୁଯୋଗ ପାଇଥିଲେ । ତଦ୍ୱାରା ତାଙ୍କର ଅଭିଜ୍ଞତା ଓ ଜ୍ଞାନ ବୃଦ୍ଧି ପାଇଥିଲା । କ୍ରମେ କ୍ରମେ ତାଙ୍କ ନିକଟରେ ଆଧ୍ୟାତ୍ମିକ ଗୁଣମାନ ପ୍ରକାଶ ପାଇଲା । ସେ ଗଭୀର ଧର୍ମଭାବ ମଧ୍ୟରେ ନିମଜ୍ଜିତ ରହୁଥିଲେ । ଆରବମାନଙ୍କ ଅଜ୍ଞତା ଓ ଅନ୍ଧବିଶ୍ୱାସ ଦେଖି ତାଙ୍କ ମନ ବ୍ୟଥିତ ହୋଇଉଠିଥିଲା । ସେଥିପାଇଁ ସେ ପ୍ରକୃତ ସତ୍ୟର ସନ୍ଧାନ ପାଇଁ ଚିନ୍ତାମଗ୍ନ ରହୁଥିଲେ ।

ଶେଷରେ ମହମ୍ମଦ ତାଙ୍କର ୪୦ ବର୍ଷ ବୟସ ବେଳେ ସ୍ୱର୍ଗୀୟ ବାଣୀ ପ୍ରାପ୍ତ ହେଲେ । ମକ୍କା ନଗରୀ ନିକଟରେ ହୀରା ନାମକ ପାହାଡ଼ ଉପରେ ଧ୍ୟାନମଗ୍ନ ଥିବା ଅବସ୍ଥାରେ ତାଙ୍କର ଦିବ୍ୟଜ୍ଞାନ ଲାଭ ହେଲା । ସେହି ସମୟରୁ ସେ ନିଜର ଆବିଷ୍କୃତ ସତ୍ୟମାନ ଏକ ନୂତନ ଧର୍ମ ଆକାରରେ ପ୍ରଚାର

କରିବାକୁ ଲାଗିଲେ । ସବୁପ୍ରକାର ବାଧାବିଘ୍ନ ଅତିକ୍ରମ କରି ସେ ପ୍ରଚାର କାର୍ଯ୍ୟରେ ସଫଳତା ଲାଭ କଲେ । ଖ୍ରୀଷ୍ଟ ଅବ୍ଦ ୬୩୨ରେ ମହମ୍ମଦ ଇହଲୀଳା ସମ୍ବରଣ କରିଥିଲେ ।

ମହମ୍ମଦଙ୍କ ପ୍ରବର୍ତ୍ତିତ ଧର୍ମ ଇସଲାମ ଧର୍ମ ନାମରେ ପ୍ରସିଦ୍ଧ । ଇସଲାମ ଶବ୍ଦର ଅର୍ଥ ହେଉଛି "ଈଶ୍ୱରଙ୍କ ନିକଟରେ ଆତ୍ମସମର୍ପଣ" । ଇସଲାମ ଧର୍ମାବଲମ୍ବୀମାନେ ମୁସଲିମ ବା ମୁସଲମାନ ନାମରେ ପରିଚିତ । ମୁସଲିମ ଶବ୍ଦର ଅର୍ଥ : "ଈଶ୍ୱରଙ୍କ ଶରଣାଗତ" ।

ଇସଲାମ ଧର୍ମର ମୂଳତତ୍ତ୍ୱ ହେଉଛି ସରଳ ଓ ସହଜ । "ଈଶ୍ୱର ଏକ ଏବଂ ଅଦ୍ୱିତୀୟ ଓ ମହମ୍ମଦ ହେଉଛନ୍ତି ଈଶ୍ୱରଙ୍କ ପ୍ରେରିତ ପୁରୁଷ", ଏହାହିଁ ହେଲା ସେହି ଧର୍ମର ସାର ବିଶ୍ୱାସ । ମହମ୍ମଦଙ୍କ ବାକ୍ୟମାନ "କୋରାଣ" ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇଛି ।

ମୁସଲମାନମାନେ ଚାରିଗୋଟି ଧର୍ମକାର୍ଯ୍ୟ ପାଳନ କରିବାପାଇଁ ନିର୍ଦ୍ଦେଶ ପାଇଥିଲେ । ତାହା ହେଲା, ନମାଜ, ଜାକାତ୍, ରମଜାନ ଓ ହାଜ୍ । ଅର୍ଥାତ୍—ପ୍ରାର୍ଥନା, ଦାନ, ଧର୍ମୀୟ ଉପବାସ ପାଳନ ଓ ତୀର୍ଥଯାତ୍ରା । ପ୍ରତ୍ୟେକ ଦିନ ପାଞ୍ଚଥର ନମାଜ ପଢ଼ିବା ବା ପ୍ରାର୍ଥନା କରିବା, ଦରିଦ୍ରକୁ ଦାନ ଦେବା, ଯେଉଁ ମାସ ମହମ୍ମଦ ଦିବ୍ୟଜ୍ଞାନ ପାଇଥିଲେ ବର୍ଷ ମଧ୍ୟରେ ସେହି ମାସଟି ପ୍ରଭାତରୁ ସନ୍ଧ୍ୟା ପର୍ଯ୍ୟନ୍ତ ଉପବାସ ପାଳନ କରିବା, ଏବଂ ପବିତ୍ର ମକ୍‌କାଠାକୁ ହାଜ୍ ବା ତୀର୍ଥଯାତ୍ରାରେ ଯିବା ହେଉଛି ପ୍ରତ୍ୟେକ ମୁସଲମାନଙ୍କ ପକ୍ଷରେ ଧର୍ମଗତ କର୍ତ୍ତବ୍ୟ ।

ଇସଲାମ ଧର୍ମର ଏହିସବୁ ସରଳ ନୀତି ଲୋକମାନଙ୍କୁ ଆକୃଷ୍ଟ କରିଥିଲା । ଶୀଘ୍ର ଶୀଘ୍ର ଆରବ ଦେଶ ଓ ଆରବ ବାହାରେ ଥିବା ଅନ୍ୟ ଦେଶଗୁଡ଼ିକରେ ଇସଲାମ ଧର୍ମ ତୀବ୍ର ଗତିରେ ପ୍ରସାର ଲାଭ କଲା ।

ମହମ୍ମଦଙ୍କ ପରେ 'ଖାଲିଫା' ଉପାଧିଧାରୀ ଧର୍ମଗୁରୁମାନେ ଇସଲାମ ଧର୍ମର ପ୍ରସାର ପାଇଁ ନେତୃତ୍ୱ ନେଇଥିଲେ । ଧର୍ମ ପ୍ରଚାର ସଙ୍ଗେ ସେମାନେ ସାମ୍ରାଜ୍ୟ ବିସ୍ତାର ପାଇଁ ଲାଗି ପଡ଼ିଥିଲେ । ମହମ୍ମଦଙ୍କ ମୃତ୍ୟୁର ଏକଶହ ବର୍ଷ ମଧ୍ୟରେ ମୁସଲମାନ ସାମ୍ରାଜ୍ୟ ଆରବ ଦେଶ ପାଖରୁ ସୁଦୂର ସ୍ପେନ ଦେଶ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା ।

**ଭାରତରେ ଇସଲାମ ଧର୍ମର ପ୍ରବେଶ ଓ ପ୍ରସାର**

ମହମ୍ମଦଙ୍କ ଅଳ୍ପକାଳ ପରେ ପ୍ରଥମେ ଆରବ ବଣିକମାନେ ଭାରତକୁ ଇସଲାମ ଧର୍ମ ଆନୟନ କରିଥିଲେ । ସେମାନେ ଗରମ ମସଲା, ହାତୀ-ଦାନ୍ତ, ମୂଲ୍ୟବାନ ହୀରା ଓ ମଣି ପ୍ରଭୃତି ନାନାପ୍ରକାର ଜିନିଷ ନେବାପାଇଁ ଦକ୍ଷିଣ ଭାରତର ମାଳାବାର ଉପକୂଳକୁ ଆସୁଥିଲେ । ସେସବୁ ପଦାର୍ଥ ନେଇ ସେମାନେ ଇଉରୋପୀୟ ବଜାରରେ ବିକ୍ରି କରୁଥିଲେ । ମାଳାବାର ଅଞ୍ଚଳର ହିନ୍ଦୁ ରାଜାମାନେ ସେହି ବଣିକମାନଙ୍କୁ ବାଣିଜ୍ୟ ପାଇଁ ଅନୁମତି ଦେଉଥିଲେ । କ୍ରମେ କ୍ରମେ ଆରବ ବଣିକମାନଙ୍କୁ ଏ ଦେଶରେ ରହିବାପାଇଁ ରାଜାମାନେ ଅନୁମତି ଦେଇଥିଲେ । ସେହିମାନେ ପୁଣି ହିନ୍ଦୁ ରାଜାମାନଙ୍କ ଅନୁମତି ସହ ଲୋକଙ୍କ ମଧ୍ୟରେ ଇସଲାମ ଧର୍ମ ପ୍ରଚାର କରିଥିଲେ । ହିନ୍ଦୁ ସମାଜର ସହନଶୀଳତା ପାଇଁ ନୂତନ ଧର୍ମ ପ୍ରତି କେହି ବିରୁଦ୍ଧାଚରଣ କରି ନ ଥିଲେ । ମାଳାବାର ଉପକୂଳର କେତେକ ସ୍ଥାନରେ ଆରବ ମୁସଲମାନ ଓ ହିନ୍ଦୁମାନଙ୍କ ଏକତ୍ର ସହାବସ୍ଥାନ ଦ୍ୱାରା ନୂତନ ବସତିମାନ ସ୍ଥାପିତ ହୋଇ ଯାଇଥିଲା । ସେହିସବୁ ବସତିରେ ଉଭୟ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ଥିବା ଦେଖାଯାଇଥିଲା ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ଆରମ୍ଭ କାଳରେ ମହମ୍ମଦ ବିନ କାଶିମ ଭାରତର ସିନ୍ଧୁ ଅଞ୍ଚଳ ଅଧିକାର କରିଥିଲେ । ସେଥିସଙ୍ଗେ କେତେକ ଆରବ ମୁସଲମାନ ସ୍ଥାୟୀ ଭାବରେ ସେହି ଅଞ୍ଚଳରେ ରହି ଯାଇଥିଲେ । ଆରବ ଅଧିକାର ଅତିଶୟ ଅଳ୍ପସ୍ଥାୟୀ ହୋଇଥିଲେ ମଧ୍ୟ ଯେଉଁ ମୁସଲମାନମାନେ ସେଠାରେ ରହିଗଲେ, ସେମାନେ ଭାରତୀୟ ସଂସ୍କୃତି ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲେ ।

ଆରବମାନଙ୍କ ଆଗମନ ପରେ ପ୍ରାୟ ଅଢ଼େଇ ଶହ ବର୍ଷ ପର୍ଯ୍ୟନ୍ତ ମୁସଲମାନମାନେ ଆଉ ଭାରତ ଆକ୍ରମଣ କରି ନ ଥିଲେ । ତା'ପରେ, ଗଜନୀ ରାଜ୍ୟର ରାଜା ସୁଲତାନ ମାମୁଦ୍ ବାରମ୍ବାର ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳ ଆକ୍ରମଣ କରିଥିଲେ । ଖ୍ରୀଷ୍ଟାବ୍ଦ ୧୦୦୦ ମସିହାରୁ ଆରମ୍ଭ କରି ୧୦୨୭ ପର୍ଯ୍ୟନ୍ତ ୨୭ ବର୍ଷ ସମୟ ମଧ୍ୟରେ ସେ ୧୭ ଥର ଆକ୍ରମଣ କରିଥିଲେ । ଭାରତରେ ରାଜ୍ୟ ସ୍ଥାପନ ପାଇଁ ତାଙ୍କର ଇଚ୍ଛା ନ ଥିଲା । ସେ କେବଳ ଏ ଦେଶର ଅଗାଧ

ଧନ ସମ୍ପତ୍ତି ଅପହରଣ କରିବା ପାଇଁ ବାରମ୍ବାର ଆକ୍ରମଣ ଚଳାଇ ଥିଲେ । ନିଜର ସୈନ୍ୟମାନଙ୍କ ମନରେ ଉତ୍ତେଜନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ଜଣାଇ ଥିଲେ ଯେ, ଭାରତରେ ଇସଲାମ ଧର୍ମ ପ୍ରସାର କରିବା ହେଉଛି ତାଙ୍କର ଲକ୍ଷ୍ୟ । କିନ୍ତୁ ପ୍ରକୃତ ପକ୍ଷରେ ଲୁଣ୍ଠନ ଓ ଧ୍ୱଂସ କାର୍ଯ୍ୟ ହିଁ ଥିଲା ତାଙ୍କର ଉଦ୍ଦେଶ୍ୟ । ବଳପୂର୍ବକ ଇସଲାମ ଧର୍ମ ପ୍ରସାର କରିବା ପାଇଁ ସେ ଇଚ୍ଛା ପ୍ରକାଶ କରିଥିବାରୁ ହିନ୍ଦୁମାନଙ୍କ ମନରେ ସେହି ଧର୍ମ ପ୍ରତି ବିତୃଷ୍ଣା ଜାତ ହୋଇଥିଲା । ଫଳରେ ସୁଲତାନ ମାମୁଦ୍‌ଙ୍କ କାର୍ଯ୍ୟକଳାପ ଇସଲାମ ଧର୍ମର ଅପକାର ସାଧନ କରିଥିଲା ।

ମାମୁଦ୍‌ଙ୍କ ପରେ ପ୍ରାୟ ଦୁଇ ଶତାବ୍ଦୀ ସମୟ ବିତି ଯାଇଥିଲା । ତାହା-ପରେ ମହମ୍ମଦ ଘୋରି ଭାରତ ଆକ୍ରମଣ କରିଥିଲେ । ତରୌରି ନାମକ ଯୁଦ୍ଧ କ୍ଷେତ୍ରରେ ୧୧୯୨ ଖ୍ରୀଷ୍ଟାବ୍ଦରେ ଜୟଲାଭ କରି ସେ ଦିଲ୍ଲୀ ଅଧିକାର କରିଥିଲେ । ସେହି ସମୟରୁ ଦିଲ୍ଲୀଠାରେ ମୁସଲମାନ ସାମ୍ରାଜ୍ୟର ଉତ୍ଥାନ ଘଟିଲା । ଘୋରିଙ୍କ ପରେ ତାଙ୍କର ସେନାପତି କୁତବଉଦ୍ଦୀନ ଏବଂ ତାହାଙ୍କ ପରେ ଇଲ୍‌ତୁତ୍‌ମିସ୍ ଦିଲ୍ଲୀଠାରୁ ମୁସଲମାନ ସାମ୍ରାଜ୍ୟ ବିସ୍ତାର କଲେ । ଗୋଟିକ ପରେ ଗୋଟିଏ ମୁସଲମାନ ରାଜବଂଶର ରାଜତ୍ୱ ଆଗେଇ ଚାଲିଲା । ସେଥିସଙ୍ଗେ ଭାରତରେ ଇସଲାମ ଧର୍ମର ପ୍ରସାର ଦେଖିବାକୁ ମିଳିଲା । ୧୨୦୬ ଖ୍ରୀଷ୍ଟାବ୍ଦରୁ ୧୫୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦାସବଂଶ, ଖିଲଜି ବଂଶ, ତୋଗଲକ୍ ବଂଶ, ସୈୟଦ ବଂଶ ଓ ଲୋଦୀ ବଂଶର ସୁଲତାନମାନେ ଶାସନ କରିଥିଲେ । ସେହି ସମୟକୁ ତୁର୍କ-ଆଫଗାନ ଶାସନକାଳ ବୋଲି କୁହାଯାଇଛି ।

୧୫୨୬ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ପାନିପଥ ଯୁଦ୍ଧକ୍ଷେତ୍ରରେ ଦିଲ୍ଲୀର ଶେଷ ସୁଲତାନ ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ବାବର ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ । ସେହି ସମୟରୁ ମୋଗଲ ବାଦଶାହମାନଙ୍କର ରାଜତ୍ୱକାଳ ଆରମ୍ଭ ହୋଇଥିଲା । ୧୫୨୬ ରୁ ୧୭୦୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ଭାରତରେ ୬ ଜଣ ପ୍ରଖ୍ୟାତ ମୋଗଲ ସମ୍ରାଟ ଶାସନ କରିଥିଲେ । ସେମାନେ ଥିଲେ ବାବର, ହୁମାୟୁନ, ଆକବର, ଜାହାଙ୍ଗୀର, ଶାହଜାହାନ ଓ ଆଉରଙ୍ଗଜେବ । ସେମାନଙ୍କ ପରେ ଦୁର୍ବଳ ମୋଗଲ ସମ୍ରାଟମାନେ ବିଶାଳ ମୋଗଲ ସାମ୍ରାଜ୍ୟକୁ ରକ୍ଷା କରିପାରିଲେ ନାହିଁ । ତେଣୁ କ୍ରମଶଃ ମୋଗଲ ସାମ୍ରାଜ୍ୟର ବିଲୟ ଘଟିଲା ।

ପାଞ୍ଚଶହ ବର୍ଷରୁ ଊର୍ଦ୍ଧ୍ୱ କାଳ ଥିଲା ସମଗ୍ର ମୁସଲମାନ ରାଜତ୍ୱର ସମୟ । ସେହି ଦୀର୍ଘ ସମୟ ମଧ୍ୟରେ ଭାରତୀୟ ସଂସ୍କୃତିର ବିଭିନ୍ନ କ୍ଷେତ୍ରରେ ଇସଲାମ ଧର୍ମର ପ୍ରଭାବ ପରିଲକ୍ଷିତ ହୋଇଥିଲା ।

**ହିନ୍ଦୁ-ମୁସଲମାନ ସହାବସ୍ଥାନ**

ପ୍ରାଚୀନ ଯୁଗରେ ଭାରତକୁ ଯେଉଁ ବୈଦେଶିକ ଜାତିମାନେ ଆସିଥିଲେ, ସେମାନେ ଭାରତୀୟ ସମାଜରେ ମିଶି ଯାଇଥିଲେ ଓ ଏ ଦେଶର ଧର୍ମ ଗ୍ରହଣ କରି ନେଇଥିଲେ । ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଶକ, କୁଷାଣ ଓ ହୂଣ ଜାତିର ମନୁଷ୍ୟ । ମଧ୍ୟଯୁଗରେ ଯେଉଁ ମୁସଲମାନମାନେ ଏ ଦେଶକୁ ଆସିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଆରବ, ତୁର୍କ ଓ ଆଫଗାନ ଜାତୀୟ ମନୁଷ୍ୟ । କାଳକ୍ରମେ ପାରସିକ, ଆବସିନୀୟ ଓ ମଙ୍ଗୋଲ ଜାତୀୟ ମୁସଲମାନମାନେ ମଧ୍ୟ ଏ ଦେଶକୁ ଆସିଥିଲେ । ତେଣେ, ହିନ୍ଦୁମାନଙ୍କ ମଧ୍ୟରୁ କେତେକେ ଇସଲାମ ଧର୍ମ ଗ୍ରହଣ କରିଥିଲେ । ବିଦେଶାଗତ ଓ ହିନ୍ଦୁ ଧର୍ମାନ୍ତରିତ ମୁସଲମାନମାନେ ଭାରତରେ ଚିରଦିନ ପାଇଁ ସ୍ଥାୟୀ ଅଧିବାସୀ ରୂପେ ରହିଲେ ।

ଭାରତୀୟ ସମାଜରେ ହିନ୍ଦୁମାନେ ହିଁ ଯଥେଷ୍ଟ ଭାବେ ସଂଖ୍ୟାବହୁଳ ଥିଲେ; କିନ୍ତୁ ମୁସଲମାନମାନେ ସଂଖ୍ୟାରେ ଅତି ଅଳ୍ପ ଥିଲେ ମଧ୍ୟ ଗୋଟିଏ ନୂତନ ସମ୍ପ୍ରଦାୟ ରୂପେ ରହିଲେ ଓ ନିଜର ଧର୍ମ ପାଳନ କଲେ । ପ୍ରଥମେ ପ୍ରଥମେ ହିନ୍ଦୁମାନେ ମୁସଲମାନମାନଙ୍କୁ ବିଦ୍ୱେଷ କରୁଥିଲେ, ସେମାନଙ୍କୁ ଅପବିତ୍ର ବୋଲି ଭାବୁଥିଲେ ଓ ସେମାନଙ୍କ ସହିତ ବିଶେଷ ସମ୍ପର୍କ ରଖୁ ନ ଥିଲେ । ମୁସଲମାନମାନେ ମଧ୍ୟ ହିନ୍ଦୁମାନଙ୍କର ମୂର୍ତ୍ତିପୂଜା ଓ ବହୁ ଦେବଦେବୀ ବିଶ୍ୱାସ ଦେଖି ସେମାନଙ୍କୁ ଉତ୍ତମ ଚକ୍ଷୁରେ ଦେଖୁ ନ ଥିଲେ । ଫଳରେ, ଉଭୟ ସମ୍ପ୍ରଦାୟ ମଧ୍ୟରେ ସୁସମ୍ପର୍କ ନ ଥିଲା ।

କିନ୍ତୁ ଗୋଟିଏ ସମାଜ ମଧ୍ୟରେ ଉଭୟ ସମ୍ପ୍ରଦାୟର ସହାବସ୍ଥାନ ଦୃଷ୍ଟିରୁ କ୍ରମେ କ୍ରମେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସହଯୋଗ ବୃଦ୍ଧି ପାଇଲା । ତଦ୍ଦ୍ୱାରା ସଂସ୍କୃତିର ବିଭିନ୍ନ କ୍ଷେତ୍ରରେ ଇସଲାମୀୟ ପ୍ରଭାବ ଦେଖିବାକୁ ମିଳିଲା । ସାମାଜିକ ଜୀବନ, ସାହିତ୍ୟ, ସ୍ଥାପତ୍ୟ ଓ ଧର୍ମୀୟ ଚିନ୍ତାଧାରା କ୍ଷେତ୍ରରେ ଇସଲାମୀୟ ସଂସ୍କୃତିର ଗଭୀର ଅଧିକ ପ୍ରଭାବ ପରିଲକ୍ଷିତ ହେଲା । ହିନ୍ଦୁ ସଂସ୍କୃତିର

ପ୍ରଭାବ ଦ୍ୱାରା ମୁସଲମାନ ସମ୍ପ୍ରଦାୟ ଉପକୃତ ହେବା ସଙ୍ଗେ, ହିନ୍ଦୁମାନେ ମଧ୍ୟ ମୁସଲମାନ ସଂସ୍କୃତି ପ୍ରତି ଆକୃଷ୍ଟ ହେଲେ । କୌଣସି କୌଣସି କ୍ଷେତ୍ରରେ ମନ୍ଦ ପ୍ରଭାବ ମଧ୍ୟ ଦେଖିବାକୁ ମିଳିଥିଲା । କିନ୍ତୁ ମଧ୍ୟଯୁଗୀୟ ଅବସ୍ଥା ଦୃଷ୍ଟିରୁ ସେପରି ପ୍ରଭାବମାନ ସ୍ୱାଭାବିକ ଥିଲା ବୋଲି କୁହାଯାଏ ।

କେହି କେହି ଐତିହାସିକଙ୍କ ମତରେ, ଇସଲାମ ଧର୍ମ ଭାରତରେ ଭାରତୀୟତ୍ୱ ଗ୍ରହଣ କରି ନେଇଥିଲା । ଅନ୍ୟ କେତେକଙ୍କ ମତରେ, ଇସଲାମୀୟ ସଂସ୍କୃତି ଦ୍ୱାରା ଭାରତୀୟ ସଂସ୍କୃତି ବିଶେଷ ଭାବେ ପ୍ରଭାବିତ ହୋଇଥିଲା । ଅପର କେତେକଙ୍କ ମତରେ, ଉଭୟ ସଂସ୍କୃତି ପରସ୍ପର ଦ୍ୱାରା ପ୍ରଭାବିତ ହୋଇଥିଲା ।

ଉଭୟ ସଂସ୍କୃତି ମଧ୍ୟରେ ଭାବ ଆଦାନ ପ୍ରଦାନ କିପରି ଭାବରେ ଗତି କରିଥିଲା ତାହାର ସଂକ୍ଷିପ୍ତ ସୂଚନା ନିମ୍ନରେ ଦିଆଗଲା ।

**ଇସଲାମୀୟ ଚିନ୍ତାଧାରା ଉପରେ ଭାରତୀୟ ପ୍ରଭାବ**

ଅଷ୍ଟମ ଶତାବ୍ଦୀର ଆରମ୍ଭ କାଳରେ (ଖ୍ରୀଷ୍ଟାବ୍ଦ ୭୧୧) ମହମ୍ମଦ ବିନ କାଶିମ ଯେତେବେଳେ ସିନ୍ଧୁ ଅଞ୍ଚଳରେ ଆରବ ଅଧିକାର ସ୍ଥାପନ କଲେ, ସେତେବେଳେ ଆରବମାନେ ଭାରତୀୟ ସଂସ୍କୃତିର ବିଶିଷ୍ଟତା ଦେଖି ବିସ୍ମିତ ହୋଇଥିଲେ । ମୁସଲମାନମାନଙ୍କ ସର୍ବପ୍ରଧାନ ଧର୍ମୀୟ ବିଶ୍ୱାସ ହେଉଛି, ଈଶ୍ୱର ହେଉଛନ୍ତି ଏକ ଏବଂ ଅଦ୍ୱିତୀୟ । ଆରବମାନେ ଦେଖିଲେ ଯେ, ହିନ୍ଦୁ ଦର୍ଶନରେ ସେହି ଏକେଶ୍ୱରବାଦକୁ ପ୍ରାଧାନ୍ୟ ଦିଆଯାଇଛି । ସେହି ବିଶ୍ୱାସ ସହିତ ହିନ୍ଦୁମାନେ ପୁଣି ଉଚ୍ଚତର ଆଧ୍ୟାତ୍ମିକ ତତ୍ତ୍ୱମାନ ଯୋଗ କରିଛନ୍ତି । ସେହି ତତ୍ତ୍ୱମାନ ଆରବମାନଙ୍କୁ ମହତ୍ତ୍ୱପୂର୍ଣ୍ଣ ବୋଧ ହେଲା । ମହମ୍ମଦ ବିନ କାଶିମ ହିନ୍ଦୁମାନଙ୍କର ଆରାଧନା ସ୍ଥାନଗୁଡ଼ିକରେ ହସ୍ତକ୍ଷେପ କରି ନ ଥିଲେ । ସେ କହିଥିଲେ, "ହିନ୍ଦୁସ୍ଥାନର ମନ୍ଦିର-ରାଜି ହେଉଛି ଖ୍ରୀଷ୍ଟିୟାନମାନଙ୍କର ଗୀର୍ଜା, ଇହୁଦୀମାନଙ୍କର ସିନାଗଗ୍ ଓ ପାରସିକ ମାଗିମାନଙ୍କର ଅଗ୍ନି-ମନ୍ଦିର ସଦୃଶ ।" ଆରବମାନେ ହିନ୍ଦୁମାନଙ୍କର ସଙ୍ଗୀତ, ସ୍ଥାପତ୍ୟ, ଚିତ୍ରକଳା, ଦର୍ଶନ ଓ ଚିକିତ୍ସା ବିଜ୍ଞାନ ପ୍ରତି ଆକୃଷ୍ଟ ହୋଇଥିଲେ ।

ସେ କାଳରେ ଚିକିତ୍ସା ବିଜ୍ଞାନରେ ହିନ୍ଦୁମାନେ ଏତେଦୂର ଉନ୍ନତ ଥିଲେ ଯେ, ଥରେ ଖାଲିଫା ହାରୁନ ନିଜର ଏକ ଦୁରାରୋଗ୍ୟ ଓ ଯନ୍ତ୍ରଣାଦାୟକ ବ୍ୟାଧିରୁ ରକ୍ଷା ପାଇବା ପାଇଁ ଜଣେ ଭାରତୀୟ ଚିକିତ୍ସକଙ୍କୁ ନିଜ ରାଜଧାନୀକୁ

ଆମନ୍ତ୍ରଣ କରି ନେଇଥିଲେ । ଖଲିଫାଙ୍କ ରାଜଧାନୀ ବାଗଦାଦ୍ ନଗରୀରେ ଭାରତୀୟ ଜ୍ଞାନୀମାନଙ୍କର ପୃଷ୍ଠପୋଷକତା କରାଯାଇଥିଲା । ସେଥିସଙ୍ଗେ, ହିନ୍ଦୁ ଗ୍ରନ୍ଥଗୁଡ଼ିକ ନାମ ଆରବ ଜଗତରେ ପ୍ରବେଶ କରିଥିଲା । ବ୍ରହ୍ମଗୁପ୍ତଙ୍କ ଲିଖିତ 'ବ୍ରହ୍ମ ସିଦ୍ଧାନ୍ତ' ଗ୍ରନ୍ଥଟିକୁ ଆରବୀୟ ଭାଷାରେ ଅନୁବାଦ କରାଯାଇଥିଲା । ସେଥିରୁ ଆରବମାନେ ଗଣିତ ଜ୍ୟୋତିଷ ଶିକ୍ଷା କରିଥିଲେ ।

ତେଣେ, ଆରବ ଶାସକମାନେ ସିନ୍ଧୁ ଦେଶରେ ସେମାନଙ୍କ ବ୍ରାହ୍ମଣ କର୍ମଚାରୀମାନଙ୍କ ନିକଟରୁ ଶାସନପଦ୍ଧତିମାନ ଶିକ୍ଷା କରିଥିଲେ । ଏ ଦେଶର ବ୍ରାହ୍ମଣ ଓ ବୌଦ୍ଧ ପଣ୍ଡିତମାନଙ୍କ ପାଖରୁ ଆରବମାନେ ଦର୍ଶନ, ଜ୍ୟୋତିର୍ବିଦ୍ୟା, ଗଣିତ, ଆୟୁର୍ବେଦ ଓ ରସାୟନ ବିଦ୍ୟା ବିଷୟରେ ଜ୍ଞାନଲାଭ କରିଥିଲେ । ପାଶ୍ଚାତ୍ୟ ପଣ୍ଡିତ ହ୍ୟାଭେଲ (Havell) ଯଥାର୍ଥଭାବେ କହିଛନ୍ତି, "ଗ୍ରୀସ୍ ନୁହେଁ, ଭାରତ ହିଁ ଇସଲାମ ଧର୍ମକୁ ତାହାର କୈଶୋର ବୟସର ଧାରଣାଲାଭ କାଳରେ ଦର୍ଶନ ଓ ନିଗୂଢ଼ ଧର୍ମୀୟ ଆଦର୍ଶମାନ ଶିକ୍ଷା ଦେଇଥିଲା ଏବଂ ସାହିତ୍ୟ, କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ଭାରତର ବିଲକ୍ଷଣ ଭାବଧାରା ଦ୍ୱାରା ଅନୁପ୍ରାଣିତ କରିଥିଲା ।"

ଆରବ ପଣ୍ଡିତମାନେ ସେମାନଙ୍କ ସଂସ୍କୃତି ପ୍ରତି ଭାରତର ଅବଦାନ ବିଷୟ ମୁକ୍ତ କଣ୍ଠରେ ସ୍ୱୀକାର କରି ଯାଇଥିଲେ । ଉଦାହରଣ ସ୍ୱରୂପ,— ନବମ ଶତାବ୍ଦୀରେ ଆରବ ଲେଖକ ଆଲ୍ ଜାହିଜ୍ (Al-Jahiz, A. D. 869) ଲେଖିଥିଲେ, "ହିନ୍ଦୁମାନେ ଫଳିତ ଜ୍ୟୋତିଷ ଓ ଗଣିତ ବିଦ୍ୟାରେ ଶ୍ରେଷ୍ଠତା ଲାଭ କରିଛନ୍ତି । ସେମାନଙ୍କର ବିଶେଷତ୍ୱପୂର୍ଣ୍ଣ ଲିପି ରହିଛି । ସେମାନେ ଚିକିତ୍ସା ବିଜ୍ଞାନରେ ଉତ୍କୃଷ୍ଟ ଏବଂ ସେହି ବିଦ୍ୟାରେ ଆଶ୍ଚର୍ଯ୍ୟଜନକ ଗୁପ୍ତ ରହସ୍ୟ ଜାଣିଛନ୍ତି । ବିଶେଷତଃ, ଅତି ଭୟଙ୍କର ବ୍ୟାଧିଗୁଡ଼ିକରେ ସର୍ବାଧିକ ବ୍ୟବହୃତ ହେଉଥିବା ପ୍ରତିକାର ସମ୍ପର୍କରେ ଅବଗତ ଅଛନ୍ତି । ସେମାନେ ଭାସ୍କର୍ଯ୍ୟ, ଚିତ୍ର ଓ ସ୍ଥାପତ୍ୟ ଇତ୍ୟାଦି କଳାର ପୂର୍ଣ୍ଣତା ସାଧନ କରିଛନ୍ତି । ସେମାନେ ଶତରଞ୍ଜି ଖେଳର ଉଦ୍ଭାବକ ଅଟନ୍ତି । ସେମାନେ ଉତ୍ତମ ତରବାରି ତିଆରି କରନ୍ତି ଓ ଅସି ଚାଳନର ସବୁ ପ୍ରକାର କୌଶଳ ଜାଣନ୍ତି । ସେମାନେ ମନ୍ତ୍ର ଜାଣନ୍ତି, ଯାହା ବଳରେ ଶରୀରରୁ ବିଷ ଓ ଯନ୍ତ୍ରଣା ଅପସାରଣ କରାଯାଏ । ସେମାନଙ୍କ ସଙ୍ଗୀତ ଆନନ୍ଦଦାୟକ ଓ ସେମାନେ ବହୁ ପ୍ରକାର ନୃତ୍ୟ ଜାଣନ୍ତି । ଖଲିଫାଙ୍କ

ଆସେମ ଖାଲିଲ୍-ଓ୍ୱା-ଦ୍ୱିମନା (Khalilah-Wa-Dimnab) ନାମକ ଗ୍ରନ୍ଥ ଗ୍ରହଣ କରିଛୁଁ । ଏହି ଲୋକମାନଙ୍କର ବିଚାରଶକ୍ତି ରହିଛି ଓ ସେମାନେ ସାହସୀ ।"

ୟାକୁବି (Yaquibi, A.D. 895) ନାମକ ଅନ୍ୟଜଣେ ମୁସଲମାନ ପଣ୍ଡିତ ନବମ ଶତାବ୍ଦୀର ଶେଷ ସମୟରେ ଲେଖିଥିଲେ "ବୁଦ୍ଧି ଓ ଚିନ୍ତାଶକ୍ତିରେ ହିନ୍ଦୁମାନେ ଅନ୍ୟ ସମସ୍ତ ଜାତି ଅପେକ୍ଷା ଉନ୍ନତତର । ସେମାନେ ଗଣିତ ଜ୍ୟୋତିଷ ଓ ଫଳିତ ଜ୍ୟୋତିଷରେ ଅନ୍ୟ ଯେକୌଣସି ଜାତି ଅପେକ୍ଷା ଅଧିକତର ନିର୍ଭୁଲ । ସେମାନଙ୍କ ଧୀଶକ୍ତିର ଏକ ଉତ୍ତମ ପ୍ରମାଣ ହେଉଛି 'ବ୍ରହ୍ମ ସିଦ୍ଧାନ୍ତ'; ଏହି ଗ୍ରନ୍ଥ ଦ୍ୱାରା ଗ୍ରୀକ୍ ଓ ପାରସିକମାନେ ମଧ୍ୟ ଲାଭବାନ ହୋଇଛନ୍ତି ।"

କିନ୍ତୁ ପରବର୍ତ୍ତୀ କାଳର ପ୍ରସିଦ୍ଧ ଆରବ ଐତିହାସିକ କାଜି ସୈୟଦ (Qazi S'aid) ଲେଖିଥିଲେ, "ହିନ୍ଦୁମାନେ ବିଦ୍ୟା ଓ ଜ୍ଞାନର ରକ୍ଷକ ରୂପେ ସବୁ ସମୟରେ ଅନ୍ୟ ସମସ୍ତଙ୍କ ଦ୍ୱାରା ଉଚ୍ଚ ବିବେଚିତ ହୋଇ ଆସିଛନ୍ତି । ଈଶ୍ୱରଙ୍କ ସମ୍ବନ୍ଧରେ ସେମାନଙ୍କ ଜ୍ଞାନ ନିଶ୍ଚିତ ଭାବେ ଈଶ୍ୱରଙ୍କ ଏକତ୍ୱ ଓ ପବିତ୍ରତା ପ୍ରତିପାଦନ କରିଛି । ସେମାନଙ୍କ ପକ୍ଷରେ ଜୀବହତ୍ୟା ବା ଜୀବହିଂସା ହେଉଛି ଗୋଟିଏ ପାପ ।"

ଭାରତୀୟ ହିନ୍ଦୁ ସଂସ୍କୃତି ଭାରତ ବାହାରେ ଥିବା ଇସଲାମୀୟ ଦେଶ-ଗୁଡ଼ିକ ଉପରେ ପ୍ରଭାବ ପକାଇଥିଲା ବେଳେ ଭାରତ ମଧ୍ୟରେ ସେହି ସଂସ୍କୃତିର ପ୍ରଭାବ ଭାରତୀୟ ମୁସଲମାନମାନଙ୍କ ଉପରେ ଗଭୀରତର ହୋଇଥିଲା ।

ଭାରତରେ ମୁସଲମାନ ରାଜତ୍ୱ ପ୍ରତିଷ୍ଠାଲାଭ କଲାପରେ ସୁଲତାନ ଓ ବାଦଶାହମାନେ ହିନ୍ଦୁମାନଙ୍କ ଉପରେ ନିର୍ଭର କରିବାକୁ ବାଧ୍ୟ ହୋଇଥିଲେ । ସେମାନେ ସେମାନଙ୍କ ରାଜ୍ୟକୁ ଇସଲାମୀୟ ରାଷ୍ଟ୍ର ରୂପେ ବିବେଚନା କରିପାରି ନ ଥିଲେ । ସମଗ୍ର ମୁସଲମାନ ଯୁଗରେ ଭାରତୀୟ ସଂସ୍କୃତି ପୂର୍ବପରି ବ୍ୟାପକ ଓ ବଳିଷ୍ଠ ଆକାରରେ ରହିଲା ।

**ଭାରତୀୟ ସଂସ୍କୃତି ଉପରେ ଇସଲାମୀୟ ପ୍ରଭାବ**

ହିନ୍ଦୁ ଓ ମୁସଲିମ ସଂସ୍କୃତି ମଧ୍ୟରେ କେତେକ ମୌଳିକ ପାର୍ଥକ୍ୟ ଥିବା ସତ୍ତ୍ୱେ ଉଭୟ ସମ୍ପ୍ରଦାୟର ଏକତ୍ର ସହାବସ୍ଥାନ ଫଳରେ ଉଭୟ ସଂସ୍କୃତି

ମଧ୍ୟରେ ଭାବ ଆଦାନ ପ୍ରଦାନ ଲାଗି ରହିଥିଲା । ସମାଜ, ଧର୍ମ ଓ କଳା କ୍ଷେତ୍ରରେ ସେହି ଆଦାନ ପ୍ରଦାନମାନ ବିଶେଷଭାବେ ପରିଲକ୍ଷିତ ହୋଇଥିଲା ।

**ସାମାଜିକ ପ୍ରଭାବ**—ଇସଲାମୀୟ ସଂସ୍କୃତିର ସର୍ବାଧିକ ମହତ୍ତ୍ୱ ଥିଲା ଯେ, ମୁସଲମାନ ସମାଜରେ ଜାତିପ୍ରଥା ନ ଥିଲା । ହିନ୍ଦୁ ସମାଜ ଉପରେ ସେପରି ଅବସ୍ଥାର ପ୍ରଭାବ ପଡ଼ିଲା । ଐତିହାସିକ ହ୍ୟାଭେଲଙ୍କ ମତରେ ଏହି ପ୍ରଭାବ ଦୁଇପ୍ରକାର ଭାବରେ ଦେଖାଯାଇଥିଲା । ପ୍ରଥମତଃ, ମୁସଲମାନମାନଙ୍କ ପାଖରୁ ପୃଥକ ରହିବାପାଇଁ ହିନ୍ଦୁମାନେ ନିଜର ସାମାଜିକ ପ୍ରଥାମାନ ଅଧିକତର କଠୋରଭାବେ ପାଳନ କରିଥିଲେ । ଆର୍ଥିକ ଦୃଷ୍ଟିରୁ ନିଜନିଜର ଜୀବିକା ଓ ବ୍ୟବସାୟଗୁଡ଼ିକର ସୁରକ୍ଷା ପାଇଁ ହିନ୍ଦୁମାନେ ସେମାନଙ୍କ ଜାତିଗତ ବୃତ୍ତି ପ୍ରତି ଅଧିକତର ଆଗ୍ରହ ପ୍ରକାଶ କଲେ । ଧର୍ମତ୍ୟାଗ କଥା ଚିନ୍ତା ନ କରି ସେମାନେ ବଂଶାନୁକ୍ରମିକ ଜୀବିକା ଉପାର୍ଜନ ଉପରେ ଅଧିକ ଗୁରୁତ୍ୱ ଦେଲେ । ଫଳରେ, ପ୍ରଚଳିତ ଜାତିପ୍ରଥା ପୂର୍ବାପେକ୍ଷା ଦୃଢ଼ତର ହେଲା ।

ଅନ୍ୟ ପକ୍ଷରେ, ଇସଲାମ ଧର୍ମରେ ଜାତିପ୍ରଥା ନ ଥିବା ଦେଖି ହିନ୍ଦୁ ଅନୁନ୍ନତ ଓ ଅବହେଳିତ ଲୋକେ ସେହି ଧର୍ମପ୍ରତି ଆକୃଷ୍ଟ ହେଲେ । ମୁସଲମାନ ସମାଜରେ ଧନୀ ଓ ଦରିଦ୍ର ଲୋକଙ୍କ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଥାଏ । ତଥାପି, ସାମାଜିକ ସ୍ତରରେ ସମସ୍ତେ ସମାନ ଥିବାରୁ ନିଷ୍ପେଷିତ ହିନ୍ଦୁମାନେ ଇସଲାମ ଧର୍ମ ଗ୍ରହଣ ଦ୍ୱାରା ନିଜର ସାମାଜିକ ମର୍ଯ୍ୟାଦା ବୃଦ୍ଧି କରିବାକୁ ଇଚ୍ଛା କରିଥିଲେ । ପୂର୍ବବଙ୍ଗ ଇତ୍ୟାଦି ଅଞ୍ଚଳରେ ଦୁର୍ବଳ ଶ୍ରେଣୀୟ ହିନ୍ଦୁମାନେ ବହୁସଂଖ୍ୟାରେ ଇସଲାମ ଧର୍ମ ଗ୍ରହଣ କରିଥିଲେ । ହିନ୍ଦୁ ଜାତିପ୍ରଥାର କଠୋରତା ଥିଲା ଇସଲାମ ଧର୍ମ ପ୍ରସାରର ଅନ୍ୟତମ କାରଣ । ହ୍ୟାଭେଲଙ୍କ ମତରେ, ଇସଲାମ ଧର୍ମର ତାତ୍ତ୍ୱିକ ଦର୍ଶନ ଅପେକ୍ଷା ମୁସଲମାନମାନଙ୍କର ସାମାଜିକ ଐକ୍ୟଭାବ ଦ୍ୱାରା ଅନେକେ ପ୍ରଭାବିତ ହୋଇଥିଲେ ।

ଧର୍ମାନ୍ତରିତ ହିନ୍ଦୁମାନେ ତେଣେ ଇସଲାମୀୟ ସାମାଜିକ ଜୀବନରେ ଅନେକ ପ୍ରକାର ପରିବର୍ତ୍ତନ ଆଣିଥିଲେ । ସେମାନେ ନିଜ ନିଜର ବଂଶଗତ ନିୟମମାନ ଭୁଲିଲେ ନାହିଁ । ବିବାହ ପ୍ରଭୃତି କାର୍ଯ୍ୟରେ ସେମାନେ ହିନ୍ଦୁ ନୀତିନୀତିମାନ ପାଳନ କଲେ । ଏପରିକି, ବିଧବା ବିବାହ ଓ ଯୌତୁକ

ଇତ୍ୟାଦି ଇସଲାମୀୟ ରୀତିନୀତି ପ୍ରତି ସେମାନେ ଆଗ୍ରହ ପ୍ରକାଶ କଲେ ନାହିଁ । ଜମିଜମା, ଘରଦ୍ୱାର ଓ ସମ୍ପତ୍ତି ଆଦିର ଉତ୍ତରାଧିକାର ବ୍ୟବସ୍ଥା ଗୁଡ଼ିକ ସେମାନେ ପୂର୍ବପରି ପାଳନ କଲେ ।

କେତେକ ଗୁଡ଼ିଏ ହିନ୍ଦୁ ପର୍ବ ଓ ଉତ୍ସବ ମୁସଲମାନ ସମାଜରେ ପ୍ରବେଶ କରିଥିଲା । ଆଞ୍ଚଳିକ ରୀତିନୀତି, ଆଚାରବ୍ୟବହାର ଓ ଖାଦ୍ୟପେୟ ପୂର୍ବପରି ରହିଲା । ଅପର ପକ୍ଷରେ, ରାଜଧାନୀ ଓ ପ୍ରାଦେଶିକ ଶାସନକେନ୍ଦ୍ର ଗୁଡ଼ିକରେ ଥିବା ହିନ୍ଦୁ ସମ୍ଭ୍ରାନ୍ତମାନେ ମୁସଲମାନୀ ରାଜକୀୟ ପୋଷାକ ପରିଚ୍ଛଦ ପ୍ରତି ଆକୃଷ୍ଟ ହେଲେ । ମୁସଲମାନୀ ରନ୍ଧନ ଓ ବିଳାସବ୍ୟସନର ପ୍ରଭାବ ମଧ୍ୟ ହିନ୍ଦୁମାନଙ୍କ ଉପରେ ପଡ଼ିଲା । ତେଣେ, କାଳକ୍ରମେ ମୁସଲମାନମାନେ ହିନ୍ଦୁମାନଙ୍କ ହୋଲି ଓ ଦୀପାବଳି ପ୍ରଭୃତି ଉତ୍ସବରେ ଭାଗନେଲେ । ସେହିପରି ହିନ୍ଦୁମାନେ ଇଦ୍ ଉତ୍ସବରେ ମୁସଲମାନମାନଙ୍କୁ ସଦିଚ୍ଛା ଜଣାଇଲେ । ରକ୍ଷାବନ୍ଧନ ଉତ୍ସବରେ ହିନ୍ଦୁ ସମ୍ଭ୍ରାନ୍ତମାନେ ମୁସଲମାନ ରାଜାମାନଙ୍କ ହସ୍ତରେ ରାକ୍ଷୀବନ୍ଧନ କରୁଥିଲେ ।

ମୁସଲମାନ ମହିଳାମାନେ ପ୍ରାୟତଃ ପର୍ଦ୍ଦା ପ୍ରଥା ପାଳନ କରୁଥିଲେ । ତାହାର ପ୍ରଭାବ ଉତ୍ତର-ଭାରତର ହିନ୍ଦୁ ସମ୍ଭ୍ରାନ୍ତ ପରିବାର ଗୁଡ଼ିକ ଉପରେ ପଡ଼ିଲା । ହିନ୍ଦୁ ଓ ମୁସଲମାନ ରାଜବଂଶ ଗୁଡ଼ିକ ମଧ୍ୟରେ କୌଣସି କୌଣସି ବେଳେ ବୈବାହିକ ସମ୍ପର୍କ ସ୍ଥାପିତ ହେଲା । ହିନ୍ଦୁ ରାଣୀମାନେ ମୁସଲମାନ ଅନ୍ତଃପୁରରେ ନିଜ ନିଜ ରୀତିନୀତି ପାଳନ କଲେ । ଅପର ପକ୍ଷରେ, ଜାତି ନାଶ ଭୟରେ ହିନ୍ଦୁମାନେ ମୁସଲମାନ ମହିଳାମାନଙ୍କୁ ବିବାହ କରୁନଥିଲେ । ତଥାପି, କ୍ୱଚିତ କୌଣସି କୌଣସି ସ୍ଥାନରେ ସେପରି ବିବାହମାନ ଘଟୁଥିଲା । ମୋଗଲ ସମ୍ରାଟ ଜାହାଙ୍ଗୀର ତାଙ୍କ ଆତ୍ମଚରିତରେ ଲେଖିଛନ୍ତି ଯେ, ସେ ରାଜୌରୀ, ଲଦାଖ ଓ ବଲ୍‌ଟିସ୍ତାନ ଅଞ୍ଚଳରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ପରସ୍ପର ବୈବାହିକ ସୂତ୍ରରେ ଆବଦ୍ଧ ହେବାର ଦେଖିଥିଲେ । ପରବର୍ତ୍ତୀ କାଳରେ ପେଶବା ପ୍ରଥମ ବାଜିରାଓ ଜଣେ ମୁସଲମାନ ମହିଳାଙ୍କୁ ନିଜର ସହଗାମିନୀ ରୂପେ ମନୋନୀତ କରିଥିଲେ । ସେହି ମହିଳାଙ୍କ ଗର୍ଭଜାତ ପୁତ୍ରଙ୍କୁ ବ୍ରାହ୍ମଣମାନେ ହିନ୍ଦୁ ବୋଲି ସ୍ୱୀକାର କଲେ ନାହିଁ ; ଅଥଚ, ସେହି ପୁତ୍ର ମୁସଲମାନ ରୂପେ ପରିଚିତ ରହି ନିଜର ପିତାଙ୍କ ରାଜ୍ୟର ହିତ ପାଇଁ ଜୀବନ ଉତ୍ସର୍ଗ କରିଥିଲେ ।

ଇସଲାମୀୟ ସଂସ୍କୃତିର ରାଜକୀୟ ଆଚରଣ ହିନ୍ଦୁ ସମ୍ଭ୍ରାନ୍ତମାନଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ସେହି ସବୁ ଆଦବକାଇଦା ଦୀର୍ଘସ୍ଥାୟୀ ଭାବେ ଅଭିଜାତ ସମ୍ପ୍ରଦାୟ ମଧ୍ୟରେ ରହିଗଲା ।

ମୁସଲମାନମାନେ ଆରବୀ ଓ ଫାର୍ସୀ (ପାରସିକ) ଭାଷା ବ୍ୟବହାର କରୁଥିଲେ । ସେହି ଭାଷାଗୁଡିକ ରାଜକୀୟ ଭାଷା ରୂପେ ଦରବାର ଓ ବିଚାରାଳୟରେ ପ୍ରଚଳିତ ହେଲା । ତେଣୁ ହିନ୍ଦୁ ସମାଜ ଉପରେ ସେହି ଭାଷା ଗୁଡିକର ପ୍ରଭାବ ପଡ଼ିଲା । ତେଣେ ମୁସଲମାନ ପଣ୍ଡିତମାନେ ସଂସ୍କୃତ ଭାଷା ଶିକ୍ଷାକଲେ । ହିନ୍ଦୁ ଗ୍ରନ୍ଥ ଗୁଡ଼ିକୁ ମୁସଲମାନୀ ଭାଷାକୁ ଅନୁବାଦ କରିବା ପାଇଁ ହିନ୍ଦୁ ପଣ୍ଡିତମାନେ ମଧ୍ୟ ଆରବୀ ଓ ଫାର୍ସୀ ଭାଷା ଜାଣିଲେ । ଉଭୟ ସମ୍ପ୍ରଦାୟର ସାଧାରଣ ଲୋକେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା କରିବା ପାଇଁ ପରସ୍ପରର ଭାଷା ଶିଖିବାକୁ ଲାଗିଲେ । ଫଳରେ ହିନ୍ଦୀ ଓ ଫାର୍ସୀ ଭାଷାର ମିଳନ ଦେଖିବାକୁ ମିଳିଲା । ସେହି ସମ୍ମିଶ୍ରଣ ଦ୍ୱାରା ଗୋଟିଏ ନୂତନ ଭାରତୀୟ ଭାଷା ଜନ୍ମଲାଭ କଲା । ତାହା ଉର୍ଦ୍ଦୁ ଭାଷା ନାମରେ ପ୍ରସିଦ୍ଧ । ସେହି ଭାଷା କେତେକ ସ୍ଥାନରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଭାଷା ରୂପେ ପ୍ରଚଳିତ ହେଲା ।

**ଧର୍ମୀୟ ପ୍ରଭାବ**—କୌଣସି କୌଣସି ପାଶ୍ଚାତ୍ୟ ପଣ୍ଡିତଙ୍କ ମତରେ ଇସଲାମ ଧର୍ମର ପ୍ରଭାବ ଫଳରେ ହିନ୍ଦୁମାନଙ୍କ ମଧ୍ୟରେ 'ଏକେଶ୍ୱରବାଦ' ବିଶ୍ୱାସ ବଳବତ୍ତର ହୋଇଥିଲା । ସେହିପରି, ମଧ୍ୟଯୁଗୀୟ ହିନ୍ଦୁ ସମାଜରେ ଜାତି ପ୍ରଥା ବିରୁଦ୍ଧରେ ଦେଖିବାକୁ ମିଳିଥିବା ଧର୍ମୀୟ ଜାଗରଣ ଇସଲାମ ଧର୍ମର ପ୍ରଭାବ ଦ୍ୱାରା ସମ୍ଭବପର ହୋଇଥିଲା ।

ଏପରି ମତ ବିପକ୍ଷରେ କୁହାଯାଇଛି ଯେ, ଅତି ପ୍ରାଚୀନ ବୈଦିକ ଯୁଗରୁ ହିନ୍ଦୁମାନେ ଈଶ୍ୱରଙ୍କ ଏକତ୍ୱ ଉପରେ ଗଭୀର ବିଶ୍ୱାସ ରଖିଥିଲେ । ଯୁଗେ ଯୁଗେ ଜନ୍ମିଥିବା ମନୀଷୀମାନେ ଏକେଶ୍ୱରବାଦ ଉପରେ ଗୁରୁତ୍ୱ ଦେଇଥିଲେ । ସାଧୁସନ୍ଥମାନେ ଧର୍ମୀୟ କ୍ରିୟାକାଣ୍ଡ ଓ ପୂଜା ପଦ୍ଧତି ଅପେକ୍ଷା ଅନାଦି ଅନନ୍ତ ନିରାକାର ପରମବ୍ରହ୍ମଙ୍କୁ ଭକ୍ତି କରିବା ପାଇଁ ଶିକ୍ଷା ଦେଇଥିଲେ । ସେଥିସଙ୍ଗେ ସେମାନେ ଜାତିପ୍ରଥାରେ ବିଶ୍ୱାସ ନକରି ଈଶ୍ୱରଙ୍କ ରାଜ୍ୟରେ ସମସ୍ତ ମନୁଷ୍ୟ ସମାନ ବୋଲି ଉପଦେଶ ଦେଇଥିଲେ । ଇସଲାମ ଧର୍ମର ପ୍ରସାରଲାଭ

ପୂର୍ବରୁ ଦକ୍ଷିଣ-ଭାରତର ଆଦ୍ଵାର ବା ଶୈବ ସାଧୁମାନେ ଓ ଆଲଭାର ବା ବୈଷ୍ଣବ ସାଧୁମାନେ ପରମେଶ୍ଵରଙ୍କ ଏକତ୍ଵ ଓ ମନୁଷ୍ୟଜାତିର ଭ୍ରାତୃତ୍ଵ ଉପରେ ବିଶ୍ଵାସ ରଖିବା ପାଇଁ ପ୍ରଚାର କରି ବୁଲୁଥିଲେ । କ୍ରମେ ସେହିମାନଙ୍କ ଧର୍ମୋପଦେଶ ମଧ୍ୟରୁ ଭକ୍ତି ମତବାଦ ପ୍ରସାରଲାଭ କରିଥିଲା । ସୁତରାଂ, ମଧ୍ୟଯୁଗୀୟ ହିନ୍ଦୁ ଭକ୍ତି ଆନ୍ଦୋଳନର ଉତ୍ପତ୍ତି ମୂଳରେ ଇସଲାମ ଧର୍ମର ପ୍ରଭାବ ଥିଲା ବୋଲି କୁହାଯାଇ ନପାରେ ।

ଐତିହାସିକ ଡକ୍ଟର ତାରାଚାନ୍ଦ ପ୍ରଭୃତି କେତେକ ଐତିହାସିକ କହିଥାନ୍ତି ଯେ, ଏକେଶ୍ଵରବାଦ ହିନ୍ଦୁମାନଙ୍କର ଏକ ଶାଶ୍ଵତ ବିଶ୍ଵାସ ରୂପେ ରହିଥିବା ସତ୍ତ୍ଵେ ମଧ୍ୟଯୁଗୀୟ ଭାରତରେ ଇସଲାମ ଧର୍ମର ଅବସ୍ଥିତି ଦ୍ଵାରା ସେହି ବିଶ୍ଵାସ ଅଧିକତର ଦୃଢ଼ୀଭୂତ ହୋଇଥିଲା । ହିନ୍ଦୁମାନଙ୍କର ଧର୍ମୀୟ ଓ ସାମାଜିକ ସଂସ୍କାର ଆନ୍ଦୋଳନ ପଶ୍ଚାତରେ ମଧ୍ୟ ଇସଲାମ ଧର୍ମର ସମ୍ଭାବ୍ୟ ପ୍ରଭାବ ଥିଲା । ଐତିହାସିକ ପାନିକ୍କାରଙ୍କ କଥାରେ, "ଏହା ଅସ୍ଵୀକାର କରିହେବ ନାହିଁ ଯେ, ମଧ୍ୟଯୁଗୀୟ ପ୍ରଚାରକମାନେ ଯେଉଁସବୁ ବିଷୟ ଉପରେ ଗୁରୁତ୍ଵ ଦେଇ-ଥିଲେ ତାହାର ପ୍ରେରଣା ଇସଲାମ ଧର୍ମର ପ୍ରଚାର ମଧ୍ୟରୁ ମିଳିଥିଲା ।" ଐତିହାସିକ ସାର୍ ଯଦୁନାଥ ସରକାର ଲେଖିଛନ୍ତି, "ମୁସଲମାନ ଅଧିକାର ପରେ ପ୍ରକୃତପକ୍ଷେ ଏହା ଘଟିଥିଲା ଯେ, ହିନ୍ଦୁମାନଙ୍କ ମଧ୍ୟରେ ଭିନ୍ନମତାବଲମ୍ବୀ ବା ସଂସ୍କାରବାଦୀ ଆନ୍ଦୋଳନମାନ ପ୍ରେରଣା ପାଇଥିଲା ନିକଟବର୍ତ୍ତୀ ପ୍ରତିବେଶୀ ରୂପେ ମୁସଲମାନମାନଙ୍କ ଅବସ୍ଥାନ ଦ୍ଵାରା । ଇସଲାମୀୟ ସମାଜର ଉଦାହରଣ ହିନ୍ଦୁ ଭ୍ରାନ୍ତ ଧାରଣା ଉପରେ ଦ୍ରାବକ ଦ୍ରବ୍ୟ ରୂପେ କାର୍ଯ୍ୟ କରିଥିଲା ।"

ମୁସଲମାନ ସାଧୁମାନଙ୍କ ପ୍ରଚାର ଦ୍ଵାରା ହିନ୍ଦୁ ନିମ୍ନ ସମ୍ପ୍ରଦାୟର ଲୋକେ କୌଣସି କୌଣସି ସ୍ଥାନରେ ଧର୍ମାନ୍ତରିତ ହେଉଥିଲେ । ଅନ୍ୟମାନେ ଧର୍ମତ୍ୟାଗ ନ କରି ନିଜ ସମାଜର ଅଧୋଗତି ବିପକ୍ଷରେ ସଚେତନ ହୋଇ ଉଠିଥିଲେ । ତାହାଦ୍ଵାରା ରକ୍ଷଣଶୀଳ ଧର୍ମଧ୍ଵଜୀମାନେ ନିଜର ମତଗତି ପରିବର୍ତ୍ତନ କରିଥିଲେ । ଜାତିଗତ କଠୋରତା ପରିତ୍ୟାଗ କରି ସେମାନେ ସହନଶୀଳ ମନୋଭାବ ପୋଷଣ କଲେ । ଦୁର୍ବଳ ଶ୍ରେଣୀର ଲୋକେ ତଦ୍ଦ୍ଵାରା ଆଶ୍ଵସ୍ତ ହେଲେ । ସେମାନେ ନିଜ ଧର୍ମପ୍ରତି ଅନୁରକ୍ତ ରହିଲେ । ଜାତିପ୍ରଥା ଲୋପ ନ ପାଇଲେ ମଧ୍ୟ ଏହାର ପ୍ରଥାର କଠୋରତା ହ୍ରାସ ପାଇଲା ।

କ୍ରମେ କ୍ରମେ ହିନ୍ଦୁ ଓ ମୁସଲମାନ ବିଜ୍ଞ ବ୍ୟକ୍ତିମାନେ ଉଭୟ ଧର୍ମର ସାରତତ୍ତ୍ୱ ମଧ୍ୟରେ ସାମଞ୍ଜସ୍ୟ ଥିବାର ଉପଲବ୍ଧି କଲେ । ଧର୍ମ ନାମରେ ବିବାଦ ଅପେକ୍ଷା ସେମାନେ ଧର୍ମ କ୍ଷେତ୍ରରେ ସମନ୍ୱୟ ଆଣିବାକୁ ଚେଷ୍ଟିତ ହେଲେ । ଧର୍ମୀୟ ଐକ୍ୟଭାବ ସ୍ଥାପନ ପାଇଁ ଉଦ୍ୟମ ଚାଲିଲା । ଈଶ୍ୱର-ଭକ୍ତି ଓ ମାନବ-ପ୍ରୀତିର ମହତ୍ତ୍ୱ ଉପରେ ଗୁରୁତ୍ୱ ଦିଆଗଲା । ଅନ୍ଧବିଶ୍ୱାସ ଓ କୁସଂସ୍କାରମାନ ଶିଥିଳ ହୋଇଆସିଲା । ଏହିପ୍ରକାର ପରିବେଶ ମଧ୍ୟରେ ସଂସ୍କାରକମାନଙ୍କ ଉତ୍‌ଥାନ ଘଟିଲା । ଯଥା ସମୟରେ କବୀର, ନାନକ, ଓ ଚୈତନ୍ୟ ପ୍ରଭୃତି ମହାପୁରୁଷମାନେ ଧର୍ମଜାଗରଣ ସୃଷ୍ଟି କଲେ । ସେମାନଙ୍କ ପ୍ରଚାର ବଳରେ ଭକ୍ତି ଆନ୍ଦୋଳନ ବ୍ୟାପକ ଆକାର ଧାରଣ କଲା । ସେମାନେ ଉଭୟ ସମ୍ପ୍ରଦାୟ ମଧ୍ୟରୁ ଶିଷ୍ୟ ଗ୍ରହଣ କଲେ । ହିନ୍ଦୁ ପୂଜକ ଓ ମୁସଲମାନ ମୁଲ୍ଲାମାନଙ୍କ ଧର୍ମାନ୍ଧତା ମୂଳରେ ସେମାନେ କୁଠାରାଘାତ କଲେ । ମୁସଲମାନ ସୁଫୀ ତଥା ହିନ୍ଦୁ ଭକ୍ତମାନେ ମାନବୀୟ ଉଦାରତା ଓ ଧର୍ମୀୟ ସହନଶୀଳତା ପ୍ରତି ସମସ୍ତଙ୍କର ଆଗ୍ରହ ବୃଦ୍ଧି କରିପାରିଲେ ।

**କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ପ୍ରଭାବ**—କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ଭାରତୀୟ ସଂସ୍କୃତି ପ୍ରତି ଇସଲାମୀୟ ସଂସ୍କୃତିର ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି । କୁହାଯାଏ ଯେ, ଏହି ଉଭୟ ବିଷୟରେ ମୁସଲମାନମାନେ କିଛି କିଛି ଶିକ୍ଷା ଦେଇଥିଲେ ଓ କିଛି କିଛି ଶିକ୍ଷା ପାଇଥିଲେ ।

ମୁସଲମାନ ଶାସକମାନେ ମସଜିଦ୍, ସମାଧି ଓ ପ୍ରାସାଦ ନିର୍ମାଣ ପାଇଁ ହିନ୍ଦୁ ସ୍ଥପତି, ନିର୍ମାଣକାରୀ ଓ ମିସ୍ତ୍ରୀମାନଙ୍କୁ ନିଯୁକ୍ତ କରୁଥିଲେ । ଇସଲାମୀୟ ରୀତି ଅନୁଯାୟୀ ସେହି ସବୁ ସୌଧ ନିର୍ମାଣ କରିବା ଆବଶ୍ୟକ ଥିଲା । କିନ୍ତୁ, ହିନ୍ଦୁ ନିର୍ମାଣକାରୀମାନେ ସେମାନଙ୍କ ନିଜସ୍ୱ ଗଠନ ପ୍ରଣାଳୀ ଅନୁଯାୟୀ ସେ ସବୁ ନିର୍ମାଣ କଲେ । ଫଳରେ ଇସଲାମୀୟ ଢଙ୍ଗ ଓ ହିନ୍ଦୁ କାରିଗରୀ ମଧ୍ୟରେ ସମନ୍ୱୟ ଘଟିଲା । ପରିଣାମ ସ୍ୱରୂପ, ଗୋଟିଏ ନୂତନ ଗଠନଶୈଳୀ ଆତ୍ମପ୍ରକାଶ କଲା । ତାହା ଭାରତ-ଇସଲାମୀୟ ସ୍ଥାପତ୍ୟକଳା ରୂପେ କଥିତ ହେଲା । ମୁସଲମାନମାନେ ନିରାଡ଼ମ୍ବର, ସରଳ ତଥା ସୁଦୃଶ୍ୟ ସୌଧ ଭଲ ପାଉଥିଲେ । ହିନ୍ଦୁ କାରିଗରମାନେ ସେଥିସହିତ କାରୁକାର୍ଯ୍ୟ ଓ ମନୋମୁଗ୍ଧକର ବୈଚିତ୍ର୍ୟ ଯୋଗ କରିବାକୁ ଲାଗିଲେ । ଅଧ୍ୟାପକ ତାରାଚାନ୍ଦଙ୍କ ମତରେ, "କାରିଗରୀ,

ଆଲଙ୍କାରିକ ସୌନ୍ଦର୍ଯ୍ୟ ଏବଂ ସାଧାରଣ ଗଠନ ପ୍ରଣାଳୀ ମୁଖ୍ୟତଃ ହିନ୍ଦୁ ରହିଲା; ଆକାର ପ୍ରକାର, ସାଦାସିଧା ଗୁମ୍ବଜ, ମସୃଣ କାନ୍ଥ ଓ ପ୍ରଶସ୍ତ ଅଭ୍ୟନ୍ତର ହେଲା ମୁସଲମାନ ନିର୍ଧାର୍ଯ୍ୟ ।''

ଦିଲ୍ଲୀଠାରେ ସୁଲତାନୀ ଶାସନର ଆରମ୍ଭ କାଳରୁ ମୋଗଲ ଶାସନର ଶୀର୍ଷ ସମୟ ପର୍ଯ୍ୟନ୍ତ ଏହି ସ୍ଥାପତ୍ୟ ଶୈଳୀର ବିକାଶ ଲାଭ ଘଟିଥିଲା । ଅସଂଖ୍ୟ ମସ୍‌ଜିଦ୍, ମିନାର, ସମାଧି ଓ ସୌଧ ହିନ୍ଦୁ-ମୁସଲିମ ନିର୍ମାଣ କୌଶଳରେ ଗଠିତ ହୋଇଥିଲା । କୁହାଯାଏ ଯେ, ସମ୍ରାଟ ଆକବରଙ୍କ ନିର୍ମିତ ଫତେପୁର ସିକ୍ରୀ ନଗର ହେଉଛି ହିନ୍ଦୁ-ମୁସଲିମ୍ ମିଶ୍ରିତ ଗଠନ ଶୈଳୀର ଏକ ଆଦର୍ଶ ନମୁନା । ସମ୍ରାଟ ଶାହଜାହାନଙ୍କ ରାଜତ୍ୱ କାଳରେ ସର୍ବାଧିକ ଆକର୍ଷଣୀୟ ସୌଧମାନ ନିର୍ମିତ ହୋଇଥିଲା । ଦିଲ୍ଲୀର ଲାଲକିଲ୍ଲା, ଜୁମା ମସଜିଦ୍, ଓ ଆଗ୍ରାର ତାଜମହଲ ଇତ୍ୟାଦି ଭାରତୀୟ ସାଂସ୍କୃତିକ ମାନଚିତ୍ରରେ ଚିତ୍ତାକର୍ଷକ ସ୍ଥାପତ୍ୟ ରୂପେ ବିଦ୍ୟମାନ । ମୋଗଲ ଯୁଗୀୟ ସ୍ଥାପତ୍ୟ ହେଉଛି ହିନ୍ଦୁ-ମୁସଲମାନ ସ୍ଥପତି ଓ ଶିଳ୍ପୀମାନଙ୍କର ଅପୂର୍ବ ଓ ଅକ୍ଷୟ କୀର୍ତ୍ତି ।

ମୋଗଲ ରାଜତ୍ୱ କାଳରେ ଭାରତୀୟ ଚିତ୍ରକଳା କ୍ଷେତ୍ରରେ ବିପୁଳ ସାଫଲ୍ୟ ଦେଖା ଯାଇଥିଲା । ପ୍ରଖ୍ୟାତ ମୋଗଲ ସମ୍ରାଟମାନଙ୍କ ମଧ୍ୟରୁ କେତେଜଣ ବ୍ୟକ୍ତିଗତ ଭାବରେ ଚିତ୍ରଶିଳ୍ପୀମାନଙ୍କର ପୃଷ୍ଠପୋଷକତା କରିଥିଲେ । ରଙ୍ଗୀନ ଓ ସୂକ୍ଷ୍ମ ଚିତ୍ରପଟ ପ୍ରତି ସେମାନଙ୍କର ପ୍ରବଳ ଆକର୍ଷଣ ଥାଏ । ମଧ୍ୟ-ଏସିଆ ଓ ପାରସ୍ୟ ଦେଶରୁ ସେମାନେ ଖ୍ୟାତନାମା ଚିତ୍ରକରମାନଙ୍କୁ ଆମନ୍ତ୍ରଣ କରୁଥିଲେ ଓ ନିଜ ନିଜ ଦରବାରରେ ସ୍ଥାନ ଦେଉଥିଲେ । ସେଥିସଙ୍ଗେ ସେହି ସମ୍ରାଟ-ମାନେ ଭାରତର ସୁଦକ୍ଷ ଚିତ୍ରଶିଳ୍ପୀମାନଙ୍କୁ ରାଜଦରବାରରେ ଆଦର କରୁଥିଲେ । ପାରସିକ ଓ ଭାରତୀୟ ଚିତ୍ରକରମାନେ ଏକାସଙ୍ଗେ ଚିତ୍ରାଙ୍କନ କରିବା ଦ୍ୱାରା ପରସ୍ପର ମଧ୍ୟରେ ସହଯୋଗ ଲାଗି ରହିଲା ଓ ସେମାନେ ପରସ୍ପର ଦ୍ୱାରା ପ୍ରଭାବିତ ହେଲେ । ଫଳ ସ୍ୱରୂପ, ଗୋଟିଏ ପ୍ରକାର ନୂତନ ଚିତ୍ରକଳା ଉତ୍ପତ୍ତି ଲାଭ କଲା ।

ଏହି ଚିତ୍ରକଳାର ବୈଶିଷ୍ଟ୍ୟ ଥିଲା, ଉଜ୍ଜ୍ୱଳ ରଙ୍ଗ ଓ ସୂକ୍ଷ୍ମ ତୂଳିକା ଦ୍ୱାରା ସବୁ ଦୃଶ୍ୟର ବିଶଦ ବର୍ଣ୍ଣନା । ଗଛ ପତ୍ର, ପୁଷ୍ପ ଲତା ଓ ପ୍ରାକୃତିକ ଦୃଶ୍ୟଗୁଡ଼ିକ ପ୍ରାଞ୍ଜଳ ଭାବରେ ଚିତ୍ରିତ କରାଯାଉଥିଲା । ନର ନାରୀ ଓ ପଶୁ ପକ୍ଷୀମାନ

ଜୀବନ୍ତ ଜଣାପାଉଥିଲା । ସେମାନଙ୍କ ଚକ୍ଷୁ-ଭ୍ରୂଭଙ୍ଗୀରୁ ସତେ ଯେପରି ମନର ଭାବ ନିର୍ଗତ ହେଉଥିଲା ।

ମୋଗଲ ଦରବାରର ଚିତ୍ରକଳା କ୍ରମେ କ୍ରମେ ପ୍ରାଦେଶିକ ରାଜଧାନୀ ଓ ରାଜପୁତ୍ ରାଜାମାନଙ୍କ ଦରବାରରେ ଅଙ୍କିତ ହେବାକୁ ଲାଗିଲା । ରାଜସ୍ଥାନର ରାଜପୁତ ରାଜାମାନେ ଏବଂ ହିମାଳୟ ପାଦବର୍ତ୍ତୀ ହିନ୍ଦୁ ରାଜ୍ୟମାନଙ୍କର ରାଜାମାନେ ନିଜ ନିଜ ଦରବାରରେ ଚିତ୍ରକରମାନଙ୍କୁ ସ୍ଥାନ ଦେଲେ । ସେମାନଙ୍କ ଅର୍ଥ ଓ ପ୍ରେରଣା ବଳରେ କଳାକାରମାନେ ଉତ୍କୃଷ୍ଟ ଧରଣର ଚିତ୍ରପଟ୍ଟ ଅଙ୍କନ କଲେ । ଏ ସବୁ ଦ୍ୱାରା ମଧ୍ୟଯୁଗୀୟ ସଂସ୍କୃତିରେ ଉନ୍ନତ ଚିତ୍ରକଳା ପ୍ରତିଷ୍ଠା ଲାଭ କଲା ।

ସମ୍ରାଟ ହୁମାୟୁନ ପାରସ୍ୟ ଦେଶରୁ ଭାରତକୁ ଫେରିଲା ବେଳେ ତାଙ୍କ ସହିତ ଦୁଇଜଣ ସ୍ୱନାମଧନ୍ୟ ଚିତ୍ରକରଙ୍କୁ ନେଇ ଆସିଥିଲେ । ସେମାନଙ୍କ ନାମ ଥିଲା ମୀର ସୈୟଦ ଆଲି ଓ ଖ୍ୱାଜା ଆବ୍‌ଦୁସ୍ ସମାଦ । ସମ୍ରାଟ ଆକବର ମଧ୍ୟ ବାହାର ଦେଶରୁ ଉତ୍ତମ ଚିତ୍ରକରମାନଙ୍କୁ ଆମନ୍ତ୍ରଣ କରି ଆଣିଥିଲେ । ସେଥି-ସଙ୍ଗେ, ତାଙ୍କ ଦରବାରରେ ସେ ହିନ୍ଦୁ ଚିତ୍ରକରମାନଙ୍କୁ ବିଶେଷ ସମ୍ମାନ ଦେଇଥିଲେ । ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ବାସବନ୍, ଦଶବନ୍ତ ଏବଂ କେଶୋ । ସେମାନେ 'ଶାହନାମା', 'ବାବରନାମା', 'ତିମୁରନାମା', 'ରାମାୟଣ', 'ମହାଭାରତ', 'ନଳ ଦମୟନ୍ତୀ' ଏବଂ 'ପଞ୍ଚତନ୍ତ୍ର' ପ୍ରଭୃତି ଗ୍ରନ୍ଥର ବିଷୟବସ୍ତୁ ଉପରେ ଚିତ୍ର ଅଙ୍କନ କରିବା ପାଇଁ ଆଦେଶ ପାଇଥିଲେ ।

ଜାହାଙ୍ଗୀର ଜଣେ କଳାପ୍ରିୟ ସମ୍ରାଟ ଥିଲେ । ସେ ସ୍ଥାପତ୍ୟ ଅପେକ୍ଷା ଚିତ୍ରପଟ୍ଟ ପ୍ରତି ଅଧିକତର ଆକୃଷ୍ଟ ହୋଇଥିଲେ । ତାହାଙ୍କ ରାଜତ୍ୱକାଳରେ ଚିତ୍ରକଳା ଉତ୍କୃଷ୍ଟ ଆକାର ଧାରଣ କରିଥିଲା । ମନ୍‌ସୁର୍ ନାମକ ତାଙ୍କର ଜଣେ ଚିତ୍ରକର ପକ୍ଷୀ ଓ ପୁଷ୍ପ ଅଙ୍କନରେ ଅଦ୍ଭୁତ ପାରଦର୍ଶିତା ଦେଖାଇ ଥିଲେ । ହିନ୍ଦୁ ଚିତ୍ରକର ବିଶନ ଦାସ ମନୁଷ୍ୟର ପ୍ରତିକୃତି ଅଙ୍କନରେ ଅପୂର୍ବ କୃତିତ୍ୱ ହାସଲ କରିଥିଲେ । ଜାହାଙ୍ଗୀରଙ୍କର ଅନ୍ୟ ଦୁଇ ଜଣ ବିଶିଷ୍ଟ ଚିତ୍ରକରଙ୍କ ନାମ ଥିଲା ମୁରାଦ୍ ଓ ମନୋହର ।

ସମ୍ରାଟ ଶାହଜାହାନ ସ୍ଥାପତ୍ୟ କୀର୍ତ୍ତି ପାଇଁ ଅତ୍ୟଧିକ ଆଗ୍ରହ ଦେଖାଇ ଥିବାବେଳେ, ଚିତ୍ରକଳା ପ୍ରତି ମଧ୍ୟ ଧ୍ୟାନ ଦେଇଥିଲେ । ତାଙ୍କ ରାଜତ୍ୱ କାଳର ପ୍ରସିଦ୍ଧ ଚିତ୍ରଶିଳ୍ପୀମାନଙ୍କ ମଧ୍ୟରେ ଥିଲେ ମହମ୍ମଦ ନାଦର ସମରକନ୍ଦୀ, ଫକୀରଉଲ୍ଲା ଖାଁ, ମୀର ହାସିମ, ବଶନ ଦାସ ଓ ବଚିତ୍ତର । ଶାହଜାହାନଙ୍କ ଜ୍ୟେଷ୍ଠ ପୁତ୍ର ଦାରା ଚିତ୍ରକରମାନଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ । ତାଙ୍କ ଆଦେଶରେ ବହୁମୂଲ୍ୟ ଉତ୍କୃଷ୍ଟ ଚିତ୍ରମାନ ଅଙ୍କିତ ହୋଇଥିଲା । କିନ୍ତୁ, ଆଉରଙ୍ଗଜେବଙ୍କ ଶାସନକାଳରୁ ମଧ୍ୟଯୁଗୀୟ ଚିତ୍ରକଳାର ଅଧୋଗତି ଘଟିଲା ।

ସେ କାଳର ଚିତ୍ରପଟ ଓ କ୍ଷୁଦ୍ର ଚିତ୍ରମାନ **(Miniature Painting)** ଭାରତୀୟ ସଂସ୍କୃତିର ଅମୂଲ୍ୟ ଉପାଦାନ ରୂପେ ବିବେଚିତ ହୋଇଛି । ବହୁ-ସଂଖ୍ୟକ ଚିତ୍ର ଧ୍ୱଂସ ପାଇ ଯାଇଥିଲେ ମଧ୍ୟ, ଯେତିକି ଚିତ୍ର ରକ୍ଷା ପାଇଯାଇଛି, ସେଥିରୁ ମଧ୍ୟଯୁଗୀୟ ଚିତ୍ରକରମାନଙ୍କର କଳା ପରାକାଷ୍ଠା ଦେଖି ଦେଶ ବିଦେଶର କଳାପ୍ରିୟ ବ୍ୟକ୍ତିମାନେ ମୁଗ୍ଧ ହୋଇଥାନ୍ତି ।

ପରିଶେଷରେ ଏତିକି କୁହାଯାଇ ପାରିବ ଯେ, ଇସଲାମୀୟ ସଂସ୍କୃତିର ପ୍ରଭାବ ଦ୍ୱାରା ଭାରତୀୟ ସଂସ୍କୃତିର ଅଭିବୃଦ୍ଧି ଘଟିଥିଲା । ବିଶେଷତଃ, ମୋଗଲ ଯୁଗର ଧର୍ମୀୟ ଉଦାରତା, ସ୍ଥାପତ୍ୟ ଓ କଳା କ୍ଷେତ୍ରରେ ଉତ୍କର୍ଷତା, ଶାସନ କ୍ଷେତ୍ରରେ ଜାତୀୟ ମନୋଭାବ, ସାମାଜିକ ଜୀବନରେ ସହନଶୀଳତା, ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ବ୍ୟାପକ କୃତିତ୍ୱ ଓ ସର୍ବ ଭାରତୀୟ ରାଜନୈତିକ ଐକ୍ୟ ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ବିଷୟରେ ହିନ୍ଦୁ ଓ ମୁସଲମାନ ଉଭୟଙ୍କର ମିଳିତ ଭୂମିକା ଦେଖିବାକୁ ମିଳିଛି । ଗୋଟିଏ ପ୍ରକାର ରାଜକୀୟ ଭାଷା, ଶାସନ ପଦ୍ଧତି ଓ ମୁଦ୍ରା ପ୍ରଚଳନ ବ୍ୟବସ୍ଥା ପ୍ରଭୃତି ଦ୍ୱାରା ମଧ୍ୟଯୁଗୀୟ ଭାରତର ଉଲ୍ଲେଖଯୋଗ୍ୟ ଅଗ୍ରଗତି ଘଟିଥିଲା ।

## ଷଷ୍ଠ ଅଧ୍ୟାୟ

# ଭକ୍ତି ଆନ୍ଦୋଳନ : କବୀର, ନାନକ, ଚୈତନ୍ୟ

**(Bhakti Movement : Kabir, Nanak, Chaitanya)**

### ଭକ୍ତି ଆନ୍ଦୋଳନ

ପ୍ରାଚୀନ ଯୁଗର ଜୈନ ଓ ବୌଦ୍ଧ ଆନ୍ଦୋଳନ ପରି ମଧ୍ୟଯୁଗର ଭକ୍ତି ଆନ୍ଦୋଳନ ମଧ୍ୟ ଭାରତ ଇତିହାସର ଏକ ବିଶିଷ୍ଟ ଘଟଣା ରୂପେ ବିବେଚିତ ହୋଇଛି । ଜୈନ ଓ ବୌଦ୍ଧ ଆନ୍ଦୋଳନ ଫଳରେ ଯେପରି ଭାବରେ ଦେଶ-ବ୍ୟାପୀ ଗୋଟିଏ ଧର୍ମୀୟ ଓ ସାମାଜିକ ଜାଗରଣ ଦେଖିବାକୁ ମିଳିଥିଲା, ଭକ୍ତି ଆନ୍ଦୋଳନ ଦ୍ୱାରା ମଧ୍ୟ ସେହିପରି ଏକ ଚେତନା ପ୍ରକାଶ ପାଇଥିଲା । ଅବଶ୍ୟ ଜୈନ ଓ ବୌଦ୍ଧ ମତବାଦ ଦୁଇଟି ପୃଥକ ପୃଥକ ଧର୍ମ ରୂପେ ଚିରସ୍ଥାୟୀ ଆକାର ଧାରଣ କରିଥିଲା । ସେଥିସଙ୍ଗେ ବୌଦ୍ଧ ଧର୍ମ ସମଗ୍ର ଏସିଆ ମହାଦେଶର ଗଣଧର୍ମ ଭାବରେ ବ୍ୟାପି ଯାଇଥିଲା । ଅନ୍ୟ ପକ୍ଷରେ, ଭକ୍ତି ମତବାଦ କେବଳ ଗୋଟିଏ ଆଧ୍ୟାତ୍ମିକ ଚିନ୍ତାଧାରା ରୂପେ ଆତ୍ମପ୍ରକାଶ କରି ଅଳ୍ପ କାଳ ମଧ୍ୟରେ ବିଲୀନ ହୋଇ ଯାଇଥିଲା । ତଥାପି ଯେହି ଭକ୍ତି ଆନ୍ଦୋଳନ ଯୁଗରେ ଶିଖ ଧର୍ମର ଉତ୍ପତ୍ତି ଘଟିଥିଲା ଓ ସେହି ଧର୍ମ ଚିରସ୍ଥାୟୀ ରୂପ ଧାରଣ କଲା ।

ଭକ୍ତିବାଦ ହେଉଛି ସନାତନ ହିନ୍ଦୁ ଧର୍ମର ଗୋଟିଏ ଅତି ପ୍ରାଚୀନ ବିଶ୍ୱାସ । ପରମେଶ୍ୱର ବା ପରମାତ୍ମାଙ୍କ ସହିତ ଆତ୍ମାର ସମ୍ପର୍କ ପାଇଁ ଭକ୍ତି ହେଉଛି ପରମ ଉପାୟ । ଭଗବଦ୍ ଗୀତାରେ ଏହି ବିଶ୍ୱାସଟି ତାତ୍ତ୍ୱିକ ରୂପରେ ପ୍ରକାଶ ପାଇଥିଲା । ବୌଦ୍ଧ ଯୁଗର ପୂର୍ବବର୍ତ୍ତୀ କାଳରେ ରଚିତ 'ଛାନ୍ଦୋଗ୍ୟ ଉପନିଷଦ'ରେ ଭକ୍ତିମତର ଆଭାସ ମିଳେ । ବୌଦ୍ଧ ପାଲି ସାହିତ୍ୟରେ ମଧ୍ୟ ସେହି ମତ ଉଲ୍ଲିଖିତ ଅଛି । ଖ୍ରୀଷ୍ଟ ଜନ୍ମର ଦୁଇ ଶହ ବର୍ଷ ଆଗର ଗୋଟିଏ ଶିଳାଲେଖରେ 'ଭକ୍ତି' ଶବ୍ଦ ଦେଖିବାକୁ ମିଳିଛି । ପାଶ୍ଚାତ୍ୟ ପଣ୍ଡିତ ସେନାର୍ଟ

(Senart)ଙ୍କ ମତରେ, "ନିଶ୍ଚିତ ଭାବେ ଭାରତରେ 'ଭକ୍ତି'ର ମୂଳମାନ ଅତି ଗଭୀର । ଗୋଟିଏ ବଦ୍ଧମୂଳ ଧର୍ମ ପଦ୍ଧତି ଅପେକ୍ଷା ଏହା ଥିଲା ଏକ ମାନସିକ ଭାବାବେଗ, ଯାହାର ବଳିଷ୍ଠ ତେଜଃଶକ୍ତି ଇତିହାସ ଓ କବିତାର ତାତ୍ତ୍ୱିକ ଅଗ୍ରଗତି ମଧ୍ୟରେ ବରାବର ସତ୍ୟସିଦ୍ଧ ଆକାରରେ ଦେଖା ଯାଇଛି ।"

ମଧ୍ୟଯୁଗର ଚିନ୍ତା ରାଜ୍ୟରେ ସେହି ଚିରାଚରିତ ଶାଶ୍ୱତ ଭକ୍ତିବାଦର ପୁନରୁତ୍‌ଥାନ ଘଟିଥିଲା । ସେତେବେଳେ ସନାତନ ଧର୍ମର ଆଧ୍ୟାତ୍ମିକ ତତ୍ତ୍ୱମାନ ମୁଖ୍ୟତଃ ଉଚ୍ଚତର ମାନସିକ ସ୍ତରରେ ଆବଦ୍ଧ ଥାଏ । ହୃଦୟର ଭାବାବେଗ ପାଖରୁ ଧର୍ମତତ୍ତ୍ୱମାନ ଦୂରେଇ ଯାଇଥାଏ । ବିଜ୍ଞ ବ୍ୟକ୍ତିମାନେ ଧର୍ମନୀତିଗୁଡ଼ିକ ହୃଦୟଙ୍ଗମ କଲାବେଳେ ସର୍ବସାଧାରଣ ମନୁଷ୍ୟ ପକ୍ଷରେ ତାହା ବୋଧଗମ୍ୟ ନ ଥାଏ । ଆବେଗଭରା ପ୍ରାଣରେ ଈଶ୍ୱରଙ୍କୁ ପାଇବା ପାଇଁ ମାର୍ଗ ମିଳୁ ନ ଥାଏ । ସେହିପରି ଅବସ୍ଥାରେ ମଧ୍ୟଯୁଗୀୟ ଧର୍ମପ୍ରଚାରକମାନେ ଭକ୍ତିବାଦ ଉପରେ ଗୁରୁତ୍ୱ ଦେଇ ସମାଜରେ ନୂତନ ଉନ୍ମାଦନା ସୃଷ୍ଟି କରିଥିଲେ । ଈଶ୍ୱରପ୍ରେମ ଥିଲା ଭକ୍ତିମାର୍ଗର ମୂଳମନ୍ତ୍ର । ଯେକୌଣସି ବ୍ୟକ୍ତି ଈଶ୍ୱରଙ୍କୁ ପାଇବା ପାଇଁ ସମର୍ଥ ହେବେ କେବଳ ଅକୁଣ୍ଠିତ ଓ ଅନାବିଳ ଭକ୍ତି ଦ୍ୱାରା । ଭକ୍ତି ହେଉଛି ପ୍ରାଣ ଓ ହୃଦୟର ଆବେଗ । ଈଶ୍ୱରପ୍ରାପ୍ତି ପାଇଁ ପୂଜା, ଆରାଧନା, ଉପାସନା, ଅର୍ଚ୍ଚନା, ବ୍ୟୟବହୁଳ କ୍ରିୟାକାଣ୍ଡ ଓ ପୁରୋହିତମାନଙ୍କର ମଧ୍ୟସ୍ଥତା ଆବଶ୍ୟକ ନ ଥିଲା । କେବଳ ନିଜର ମନଃପ୍ରାଣ ସହ ହୃଦୟରେ ଈଶ୍ୱର ଚିନ୍ତାକୁ ସ୍ଥାନ ଦେଲେ ଈଶ୍ୱରୋପଲବ୍‌ଧି ସମ୍ଭବ ଥିଲା । ଏହି ପ୍ରକାର ଚିନ୍ତାଧାରା ମଧ୍ୟଯୁଗର ମାନସିକ କ୍ଷେତ୍ରରେ କ୍ରମେ ବଳବତ୍ତର ହୋଇ ଉଠିଲା । ବହୁଁ ବହୁଁ ଅଗଣିତ ନରନାରୀ ଧର୍ମର ପ୍ରକୃତ ଆସ୍ୱାଦନ ପାଇଁ ଭକ୍ତିମାର୍ଗ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ।

ଭକ୍ତି ଥିଲା ଏକ ବ୍ୟକ୍ତିଗତ ବ୍ୟାପାର । ଭକ୍ତିମାର୍ଗ ଥିଲା ଗୋଟିଏ ସହଜ ଉପାୟ । ପ୍ରତ୍ୟେକ ବ୍ୟକ୍ତି ବା ସମଷ୍ଟି ମିଳିତ ଭାବରେ ସେହି ମାର୍ଗରେ ଯାତ୍ରା କରିପାରିଲେ । ଭକ୍ତି ଚେତନା ଦ୍ୱାରା ସାମୂହିକ ଭାବେ ଭାରତୀୟ ସମାଜ ପ୍ରଭାବିତ ହୋଇ ପାରିଲା ।

ଭକ୍ତି ଉପରେ ବିଶ୍ୱାସ ରଖି ଲୋକେ ଜାଣି ପାରିଲେ ଯେ, ପୂର୍ବକାଳର ପ୍ରଚଳିତ ଜଟିଳ କ୍ରିୟାକାଣ୍ଡ ପାଳନ ବା କର୍ମମାର୍ଗ ଅପେକ୍ଷା ଭକ୍ତିମାର୍ଗ ହେଉଛି

ଅଧିକତର ସହଜ । ସେମାନେ ଏକଥା ମଧ୍ୟ ଜାଣିଲେ ଯେ, ଈଶ୍ୱରଙ୍କୁ ପାଇବା ପାଇଁ ଅଗାଧ ଜ୍ଞାନ ଆହରଣ କରିବା ବା ଜ୍ଞାନ ମାର୍ଗରେ ଯାତ୍ରା କରିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ତେଣୁ, କର୍ମମାର୍ଗ ଓ ଜ୍ଞାନମାର୍ଗ ଅପେକ୍ଷା ଭକ୍ତିମାର୍ଗ ହିଁ ଥିଲା ସମସ୍ତଙ୍କ ପକ୍ଷରେ ସହଜତମ ମାର୍ଗ ।

ଭକ୍ତି ଉଦ୍ଦେଶ୍ୟରେ ସମସ୍ତେ ନିଜ ନିଜ ଇଚ୍ଛା ଅନୁସାରେ ନିଜର ଈଶ୍ୱରଙ୍କୁ ଯେ କୌଣସି ନାମରେ ବା ରୂପରେ କଳ୍ପନା କରିପାରିଲେ । ବ୍ୟକ୍ତିଗତ ଭାବରେ ସେହି ଈଶ୍ୱରଙ୍କୁ ହୃଦୟରେ ସ୍ଥାନ ଦିଆଗଲା ଓ ତାଙ୍କୁ ଆବେଗଭରା ପ୍ରାଣରେ ସ୍ମରଣ କରାଗଲା । ଈଶ୍ୱରଙ୍କ ନାମ ଉଚ୍ଚାରଣ ହେଲା ଧର୍ମର ପ୍ରଧାନ ମାର୍ଗ । ତାହା ହିଁ ହେଲା ମୋକ୍ଷ ଲାଭ ପାଇଁ ଏକମାତ୍ର ଉପାୟ ।

ମଧ୍ୟଯୁଗରେ, ବିଶେଷତଃ ତ୍ରୟୋଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ କ୍ରମେ କ୍ରମେ ଭକ୍ତି ଆନ୍ଦୋଳନର ବିକାଶଲାଭ ଘଟିଲା । ପ୍ରଥମେ ଚିନ୍ତାଶୀଳ ଧର୍ମଗୁରୁମାନେ ନୂତନ ଭାବରେ ପୁରାତନ ଭକ୍ତିବାଦ ଉପରେ ଆସ୍ଥା ସ୍ଥାପନ କଲେ । ପରେ ପରେ, ଭକ୍ତିଭାବ ପ୍ରଚାରିତ ହେଲା । ଲୋକେ ଆଦର ସହକାରେ ତାହା ଗ୍ରହଣ କଲେ । ଦ୍ୱାଦଶ ଶତାବ୍ଦୀରେ ରାମାନୁଜ ତାହାଙ୍କ ବୈଷ୍ଣବ ମତବାଦ ମଧ୍ୟରେ ଭକ୍ତିକୁ ପ୍ରଧାନ ସ୍ଥାନ ଦେଲେ । ପରମାତ୍ମାଙ୍କୁ ନିଜର ପ୍ରଭୁ ବୋଲି ଚିନ୍ତାକରି ତାଙ୍କ ପ୍ରତି ଐକାନ୍ତିକ ଭକ୍ତି ଜଣାଇବାକୁ ସେ ପ୍ରଚାର କଲେ । ତାହାଙ୍କ ପରେ ରାମାନନ୍ଦ ଭକ୍ତିମାର୍ଗର ମହତ୍ତ୍ୱ ପ୍ରଚାର କରି ବୁଲିଲେ । ଜଟିଳ ପୂଜା ପଦ୍ଧତି ପରିବର୍ତ୍ତେ ଭକ୍ତି ଉପରେ ସେ ସର୍ବାଧିକ ଗୁରୁତ୍ୱ ଦେଲେ । ରାମାନନ୍ଦ ଓ ତାଙ୍କ ଶିଷ୍ୟମାନେ ସାଧାରଣ ଲୋକମାନଙ୍କ କଥିତ ସରଳ ଭାଷାରେ ଭକ୍ତିବାଦ ପ୍ରଚାର କରିଥିଲେ ।

ଭକ୍ତି ପ୍ରଚାରକମାନେ ସବୁ ମନୁଷ୍ୟଙ୍କୁ ସମାନ ଭାବରେ ଦେଖିବା ପାଇଁ ଶିକ୍ଷା ଦେଇଥିଲେ । ଈଶ୍ୱର ସମସ୍ତଙ୍କ ପାଇଁ । ସମସ୍ତଙ୍କ ମଧ୍ୟରେ ପୁଣି ଈଶ୍ୱର ଅଛନ୍ତି । ତେଣୁ ଭକ୍ତମାନଙ୍କ ପକ୍ଷରେ ମାନବ-ପ୍ରେମରେ ବିଶ୍ୱାସ କରିବା ଆବଶ୍ୟକ ଥିଲା । ରାମାନନ୍ଦ ଜାତି ଧର୍ମ ନିର୍ବିଶେଷରେ ଶିଷ୍ୟ ଗ୍ରହଣ କରିଥିଲେ । ତାହାଙ୍କ ପ୍ରଧାନ ବାର ଜଣ ଶିଷ୍ୟଙ୍କ ମଧ୍ୟରେ ରବି ଦାସ ଥିଲେ ଜାତିରେ ମୋଚି, କବୀର ଥିଲେ ମୁସଲମାନ ତନ୍ତୀ ଏବଂ ସେଣ ଥିଲେ ଜାତିରେ ନାପିତ ।

ଭକ୍ତି ପ୍ରଚାରକମାନେ ଉତ୍ତର ଓ ଦକ୍ଷିଣ ଭାରତର ବହୁ ସ୍ଥାନରେ ଆଞ୍ଚଳିକ ଭାଷାଗୁଡ଼ିକରେ ସେମାନଙ୍କ ମତ ପ୍ରଚାର କରିଥିଲେ । ଫଳରେ, ଗୋଟିଏ ଅଭିନବ ଧର୍ମୀୟ ଚେତନା ସମାଜକୁ ପ୍ରଭାବିତ କଲା । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକେ ଭକ୍ତିମତ ପ୍ରତି ଆକୃଷ୍ଟ ହୋଇଥିଲେ । ତଦ୍ଦ୍ୱାରା ଦୁଇ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ବଢ଼ି ଚାଲିଲା । ତେଣେ, ହିନ୍ଦୁମାନଙ୍କ ମଧ୍ୟରେ ଉଚ୍ଚ ଓ ନିମ୍ନ ଜାତି ମଧ୍ୟରେ ଥିବା ଭେଦାଭେଦ ଭାବ କମିଆସିଲା । ସବୁ ଆଞ୍ଚଳିକ ଭାଷାରେ ଭକ୍ତିରସାତ୍ମକ ସାହିତ୍ୟ ରଚିତ ହେଲା ।

ସେହିପ୍ରକାର ପରିବେଶ ମଧ୍ୟରେ ଭକ୍ତି ଆନ୍ଦୋଳନକୁ ଅଧିକତର ଅର୍ଥପୂର୍ଣ୍ଣ ଓ ବ୍ୟାପକ ରୂପ ଦେଇଥିଲେ ମଧ୍ୟଯୁଗର ତିନିଜଣ ପ୍ରଖ୍ୟାତ ମହାପୁରୁଷ । ସେମାନେ ଥିଲେ କବୀର, ନାନକ ଓ ଚୈତନ୍ୟ । ସେମାନଙ୍କ ବିଷୟରେ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

**କବୀର**

ମଧ୍ୟଯୁଗର ଭକ୍ତି ପ୍ରଚାରକମାନଙ୍କ ମଧ୍ୟରେ କବୀର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛନ୍ତି । ସେ ଥିଲେ ହିନ୍ଦୁ-ମୁସଲମାନ ଆଧ୍ୟାତ୍ମିକ ଐକ୍ୟର ଜ୍ୱଳନ୍ତ ଉଦାହରଣ । ଉଭୟ ସମ୍ପ୍ରଦାୟର ଲୋକେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । କବୀର ଥିଲେ ଜଣେ ସଂସ୍କାରକ । ପ୍ରକୃତ ଧର୍ମ ଉପରେ ଗୁରୁତ୍ୱ ପ୍ରଦାନ ଦ୍ୱାରା ସେ ବିକୃତ ଧର୍ମବିଶ୍ୱାସଗୁଡ଼ିକୁ କଠୋର ଭାବେ ସମାଲୋଚନା କରିଥିଲେ । ମଧ୍ୟଯୁଗର ଧର୍ମାନ୍ଧତା ମୂଳରେ ସେ କୁଠାରାଘାତ କରିଥିଲେ ।

କବୀରଙ୍କ ଜନ୍ମ ଓ ବାଲ୍ୟକାଳ ଜନଶ୍ରୁତି ଓ କିମ୍ବଦନ୍ତୀ ଦ୍ୱାରା ପ୍ରହେଳିକାମୟ ରହିଛି । ତାଙ୍କ ସମଗ୍ର ଜୀବନକାଳ ମଧ୍ୟ ରହସ୍ୟାବୃତ । ଶିଖମାନଙ୍କ 'ଆଦି ଗ୍ରନ୍ଥ'ରୁ ତାଙ୍କ ଜୀବନୀ ଉପରେ କିଛି ଆଭାସ ମିଳେ । ମୋଗଲ ସମ୍ରାଟ ଆକବରଙ୍କ ଦରବାରରେ ଥିବା ଐତିହାସିକ ଆବୁଲ ଫାଜଲଙ୍କ ଲିଖିତ 'ଆଇନ-ଇ-ଆକବରୀ' ଗ୍ରନ୍ଥରେ କବୀରଙ୍କ ନାମ ଉଲ୍ଲେଖ ଥିବାର ଦେଖାଯାଏ । ପରବର୍ତ୍ତୀ ମୋଗଲ ଐତିହାସିକମାନେ ମଧ୍ୟ ତାଙ୍କ ବିଷୟରେ ଅଳ୍ପ କିଛି କିଛି ଲେଖିଥିଲେ । କବୀରଙ୍କ ଶିଷ୍ୟ ବା କବୀରପନ୍ଥୀମାନେ ତାଙ୍କ ସମ୍ପର୍କରେ ଥିବା ଜନଶ୍ରୁତିଗୁଡ଼ିକ ପ୍ରଚାର କରିଥିଲେ । ସେଥିରୁ କବୀରଙ୍କ ବିଷୟରେ ଅନେକ କିଛି ଜଣାଯାଏ । ତାଙ୍କ ଜନ୍ମକାଳ ନିର୍ଦ୍ଦିଷ୍ଟ ଭାବେ ଜଣାଯାଏ

ନାହିଁ । ବିଶ୍ୱାସ କରାଯାଏ ଯେ, କବୀର ୧୪୪୦ ଖ୍ରୀଷ୍ଟାବ୍ଦରେ ଜନ୍ମିଥିଲେ ଏବଂ ୧୫୧୮ରେ ଦେହତ୍ୟାଗ କରିଥିଲେ । ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ତାଙ୍କ ପ୍ରସିଦ୍ଧି ବ୍ୟାପି ଯାଇଥିଲା ।

ଜନଶ୍ରୁତି ଅନୁସାରେ, କବୀର ଜଣେ ବିଧବା ବ୍ରାହ୍ମଣୀଙ୍କ ଗର୍ଭରୁ ଜନ୍ମଲାଭ କରିଥିଲେ । ଅସମ୍ମାନରୁ ରକ୍ଷା ପାଇବା ପାଇଁ ତାଙ୍କ ମାତା ସଦ୍ୟଜାତ ଶିଶୁପୁତ୍ରକୁ ବାରାଣସୀଠାରେ ଗୋଟିଏ ପୁଷ୍କରିଣୀରେ ଭସାଇ ଦେଇ ଚାଲିଯାଇଥିଲେ । ଅଳ୍ପ ସମୟ ପରେ ନିରୁ ବା ଆଲି ନାମକ ଜଣେ ମୁସଲମାନ ତନ୍ତୀ ସେହି ଶିଶୁଟିକୁ ଦେଖିପାରି ତାହାକୁ ଉଦ୍ଧାର କରି ନିଜ ଘରକୁ ନେଇ ଯାଇଥିଲେ । ନିରୁଙ୍କ ସ୍ତ୍ରୀଙ୍କ ନାମ ଥିଲା ନୀମା । ଉଭୟଙ୍କର ସନ୍ତାନସନ୍ତତି ନ ଥିଲା । ତେଣୁ ସେମାନେ ଦୈବାତ୍ ପାଇଥିବା ଶିଶୁଟିକୁ ନିଜର ପୁତ୍ରରୂପେ ଗ୍ରହଣ କଲେ ଓ ଆଦର ସହକାରେ ଲାଳନ ପାଳନ କଲେ । ନାମକରଣ ପାଇଁ ସେମାନେ ଶିଶୁଟିକୁ ଜଣେ କାଜିଙ୍କ ନିକଟକୁ ନେଇ ଯାଇଥିଲେ । କାଜି ଜଣକ କୋରାଣ ମଧ୍ୟରୁ ନାମ ଖୋଜିବା ପାଇଁ ପୃଷ୍ଠା ଲେଉଟାଇଲା ବେଳେ ପ୍ରଥମ ଯେଉଁ ନାମଟି ଦେଖିଥିଲେ, ତାହା ଥିଲା 'କବୀର' । ସେହି ନାମରେ ସେ ଶିଶୁଟିକୁ ନାମିତ କଲେ ।

ନିରୁ ଓ ନୀମା ଲୁଗାବୁଣି ନିଜର ଜୀବିକା ଅର୍ଜନ କରୁଥିଲେ । ବାଲ୍ୟ-କାଳରୁ କବୀର ମଧ୍ୟ ସେହି କାମ ଶିଖିଲେ । ଦରିଦ୍ର ମୁସଲମାନ ତନ୍ତୀ ରୂପେ ତାଙ୍କର ଜୀବନ ଆରମ୍ଭ ହେଲା । କିନ୍ତୁ ଶୈଶବ କାଳରୁ ତାଙ୍କ ମନପ୍ରାଣ ଭକ୍ତିମାର୍ଗ ପ୍ରତି ଆକୃଷ୍ଟ ହୋଇଥିଲା । ଲୁଗା ବୁଣିବାବେଳେ ସେ ଈଶ୍ୱରଙ୍କ ସୃଷ୍ଟି ରହସ୍ୟ ଚିନ୍ତା କରୁଥିଲେ । ସୂତାଗୁଡ଼ିକ ଗୋଟିକ ପରେ ଗୋଟିଏ ବୁଣି ହେଲାପରି ଭଗବାନଙ୍କ ସୃଷ୍ଟିର ମର୍ତ୍ତ୍ୟ ବା ସ୍ୱର୍ଗ, ସୂର୍ଯ୍ୟ ବା ଚନ୍ଦ୍ର ପ୍ରଭୃତି ପରସ୍ପର ବୁଣିହୋଇ ରହିଛନ୍ତି ବୋଲି ସେ ଗାନ କରୁଥିଲେ । "ଜାତିରେ ତନ୍ତୁବାୟ ଓ ସହିଷ୍ଣୁ ମନ; କବୀର ସହଜେ ଗାଏ ରାମଙ୍କ ନାମ", ସେ କହୁଥିଲେ ।

ମୁସଲମାନ ହେଲେ ମଧ୍ୟ କବୀରଙ୍କ ମନ ହିନ୍ଦୁ ଶାସ୍ତ୍ରଗୁଡ଼ିକରେ ପ୍ରବେଶ କରିଥିଲା । ବାରାଣସୀଠାରେ ଜଣେ ହିନ୍ଦୁ ସାଧୁଙ୍କ ନିକଟରୁ ସେ ହିନ୍ଦୁ ଆଧ୍ୟା-ତ୍ମିକତା ବିଷୟରେ ଶିକ୍ଷାଲାଭ କରିଥିଲେ । ତାହାପରେ କବୀର ସେକାଳର

ପ୍ରଖ୍ୟାତ ଭକ୍ତ ରାମାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ଈଶ୍ୱରଙ୍କୁ 'ରାମ' ନାମରେ ଡାକିବା ପାଇଁ ସେ ଭଲ ପାଉଥିଲେ । ରାମଙ୍କୁ ସର୍ବମୟ ପରମାତ୍ମା ରୂପେ ବର୍ଣ୍ଣନା କରି ସେ କହୁଥିଲେ ଯେ, ଆଲ୍ଲା ଓ ରାମ ହେଉଛନ୍ତି ଏକ ଏବଂ ଅଭିନ୍ନ ।

ଆଶ୍ଚର୍ଯ୍ୟର ବିଷୟ, ସଦାବେଳେ କବୀର ରାମନାମ ଉଚ୍ଚାରଣ କରୁଥିଲେ ମଧ୍ୟ ତାଙ୍କ ଗୃହକୁ ମୁସଲମାନ ପୀର, ଶେଖ୍ ଓ ସୈୟଦମାନେ ଯଥାରୀତି ଆସୁଥିଲେ । ସେମାନେ ତାଙ୍କର ସୁଲଳିତ ଭଜନମାନ ଶ୍ରବଣ କରି ସେଥିରୁ ଶିକ୍ଷାଲାଭ କରୁଥିଲେ । କବୀରଙ୍କ ପରିବାରରେ ଇଦ୍ ଓ ବକରିଦ୍ ପ୍ରଭୃତି ପାଳିତ ହେଉଥିଲା, କାରଣ ସେ ଥିଲେ ମୁସଲମାନ ।

ନିର୍ଭୟରେ କବୀର ତାଙ୍କ ମତମାନ ପ୍ରକାଶ କରୁଥିଲେ । ଥରେ ଗଙ୍ଗା କୂଳରେ କେତେଜଣ ବ୍ରାହ୍ମଣ ପଣ୍ଡିତ ବସି ରହି ପୁଣ୍ୟତୋୟା ଗଙ୍ଗାର ପବିତ୍ର ବାରିରେ ସମସ୍ତ ପାପ ବିମୋଚନ ହୁଏ ବୋଲି ଆଲୋଚନା କରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ ତୃଷାର୍ତ୍ତ ବ୍ରାହ୍ମଣ ପାଣି ପିଇବା ପାଇଁ ବ୍ୟାକୁଳ ହେବାର ଦେଖି ନିକଟରେ ଉପସ୍ଥିତ ଥିବା କବୀର ଗୋଟିଏ କାଠ ପାତ୍ରରେ ଗଙ୍ଗା ନଦୀରୁ ଜଳ ନେଇ ତାଙ୍କୁ ପାନ କରିବା ପାଇଁ ଦେଲେ । କିନ୍ତୁ ବ୍ରାହ୍ମଣ ଜଣକ ତନ୍ତୀ ହାତରୁ ପାତ୍ର ଧରିବା ପାଇଁ ନାହିଁ କରିଦେଲେ । ସେଥିରେ କବୀର ଉତ୍ତର ଦେଲେ, "ଆପଣମାନେ କହୁଛନ୍ତି ଯେ, ଗଙ୍ଗାଜଳ ଦ୍ୱାରା ଶରୀର ଓ ଆତ୍ମାର ସବୁ ପ୍ରକାର ଅପବିତ୍ରତା ନଷ୍ଟ ହୋଇଯାଏ । ଅଥଚ, ଯଦି ସେହି ଜଳରେ ସାମାନ୍ୟ କାଠ ପାତ୍ରଟି ମଧ୍ୟ ପବିତ୍ର ହୋଇ ପାରିଲା ନାହିଁ, ତାହାହେଲେ ଗଙ୍ଗାଜଳ ଆପଣମାନଙ୍କ ପ୍ରଶଂସା ପାଇଁ ଯୋଗ୍ୟ ନୁହେଁ ।"

ଆଉ ଦିନେ ଜଣେ ମହିଳା ମୂର୍ତ୍ତିପୂଜା ପାଇଁ ଫୁଲ ତୋଳୁଥିଲେ । କବୀର ତାଙ୍କୁ କହିଥିଲେ, "ପୁଷ୍ପର ପାଖୁଡ଼ା ମଧ୍ୟରେ ରହିଛି ଉଦ୍ଭିଦର ଆତ୍ମା । କିନ୍ତୁ ଯେଉଁ ମୂର୍ତ୍ତି ପାଇଁ ଫୁଲ ନେଉଛ, ତାହାର ଜୀବନ ନାହିଁ ।"

କୌଣସି ପ୍ରକାର ସଙ୍ଗଠିତ ଧର୍ମ ପ୍ରତି କବୀରଙ୍କର ଆଗ୍ରହ ନଥିଲା । ସେ ନିଜେ ମଧ୍ୟ କୌଣସି ଧର୍ମ ବା ଧର୍ମତତ୍ତ୍ୱ ସୃଷ୍ଟି କରିବାକୁ ଚାହିଁ ନଥିଲେ । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା, ମନୁଷ୍ୟ ପ୍ରାଣରେ ଈଶ୍ୱରଙ୍କ ପ୍ରତି ଭକ୍ତିଭାବ ଜାଗ୍ରତ କରିବା । ତାଙ୍କ ମତରେ ଭକ୍ତି ହିଁ ଥିଲା ପ୍ରକୃତ ଧର୍ମ । ଆବେଗ ପୂର୍ଣ୍ଣ ମନରେ ଈଶ୍ୱରଙ୍କୁ ଭଲ ପାଇବା ଥିଲା ଭକ୍ତି । ଭକ୍ତି ଆଗରେ ପୂଜା ଅର୍ଚ୍ଚନା

କିଛି ନୁହେଁ । ସବୁ ପ୍ରକାର କୁସଂସ୍କାର ଓ ଅନ୍ଧ ବିଶ୍ୱାସର ବହୁ ଊର୍ଦ୍ଧ୍ୱରେ ଥାଏ ମନୁଷ୍ୟର ଭକ୍ତିଭାବ ।

କବୀରଙ୍କ ଦୃଷ୍ଟିରେ, ସମ୍ପ୍ରଦାୟ ବା ଜାତି ବୋଲି କିଛି ନଥିଲା । ହିନ୍ଦୁ ବା ମୁସଲମାନ, ବ୍ରାହ୍ମଣ ବା ଶୂଦ୍ର, ଧନୀ ବା ଅଜ୍ଞ, ଉଚ୍ଚ ବା ନୀଚ, ସମସ୍ତେ ହେଉଛନ୍ତି ମନୁଷ୍ୟ । ଈଶ୍ୱରଙ୍କ ଆଗରେ ସମସ୍ତେ ସମାନ । ସଂକୀର୍ଣ୍ଣ ମନୋଭାବ ସହ ଈଶ୍ୱରଙ୍କୁ ଭକ୍ତି କରିବା ଅସମ୍ଭବ । ନିଜର ସ୍ୱାର୍ଥତ୍ୟାଗ ଓ ପରକୁ ଭଲ ପାଇବା ଦ୍ୱାରା ଭକ୍ତିମାର୍ଗରେ ଯାତ୍ରା କରିବା ସମ୍ଭବ ବୋଲି ସେ ପ୍ରଚାର କରିଥିଲେ । ଭକ୍ତି ବିଶ୍ୱାସ ମଧ୍ୟରେ ସେ ଖୋଜିଥିଲେ ସାମାଜିକ ଶାନ୍ତି ।

କବୀରଙ୍କ ଉପଦେଶମାନ ବୀଜକ (Bijak) ନାମକ ଗ୍ରନ୍ଥ ଆକାରରେ ସଂକଳିତ ହୋଇଥିଲା । ସେଥିରେ ନୀତି ବାକ୍ୟମାନ ପରିପୂର୍ଣ୍ଣ ରହିଛି । ଧର୍ମମତ ନିର୍ବିଶେଷରେ ସମସ୍ତେ ସେଥିରୁ ନୂତନତ୍ୱର ଆଭାସ ପାଇଥିଲେ । ମୁସଲିମ୍ ସୁଫୀ ଓ ହିନ୍ଦୁ ପଣ୍ଡିତମାନଙ୍କୁ କବୀରଙ୍କ ମତମାନ ନାନା ଭାବରେ ପ୍ରଭାବିତ କରିଥିଲା ।

କବୀର ଥିଲେ ମଧ୍ୟଯୁଗର ଜଣେ ପ୍ରଧାନ ସଂସ୍କାରକ । ହିନ୍ଦୁ ଧର୍ମ ଓ ଇସଲାମ, ଉଭୟ ଧର୍ମର ଅନ୍ଧବିଶ୍ୱାସ ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ଉଭୟ ଧର୍ମର ବାହ୍ୟ ଆଡ଼ମ୍ବର ଗୁଡ଼ିକୁ ସେ ନିରର୍ଥକ ବୋଲି କହିଥିଲେ । ତୀର୍ଥଯାତ୍ରା ଓ ଉପବାସ ଦ୍ୱାରା ଈଶ୍ୱର ମିଳନ୍ତି ନାହିଁ ବୋଲି ସେ ଦର୍ଶାଇଥିଲେ । କବୀର ନିଜେ ଜଣେ ଗୃହୀ ରୂପେ କର୍ତ୍ତବ୍ୟରତ ଜୀବନ ଯାପନ କରୁଥିଲେ । ସନ୍ନ୍ୟାସ ବ୍ରତ ଦ୍ୱାରା ଧର୍ମ ହୁଏ ନାହିଁ ବୋଲି ତାଙ୍କର ଧାରଣା ଥିଲା । ଦାଢ଼ି ଓ ଜଟା ଧାରଣ ଦ୍ୱାରା ପୁଣ୍ୟଲାଭ ହୁଏ ନାହିଁ ବୋଲି ସେ କହିଥିଲେ ।

କବୀରଙ୍କ ବିଶ୍ୱାସରେ ହିନ୍ଦୁ ଓ ଇସଲାମ ଧର୍ମର ସାରତତ୍ତ୍ୱ ହେଉଛି ଈଶ୍ୱର ଭକ୍ତି । ସେଥିପାଇଁ ଉଭୟ ଧର୍ମାବଲମ୍ବୀମାନଙ୍କୁ ସେ ଏକତାବଦ୍ଧ କରିବାକୁ ଇଚ୍ଛା କରିଥିଲେ । ମନୁଷ୍ୟ ଓ ଈଶ୍ୱରଙ୍କ ମଧ୍ୟରେ ମଧ୍ୟସ୍ଥି କରୁଥିବା ପୂଜକ ଓ ଉଲେମାମାନଙ୍କୁ ସେ ଧର୍ମାନ୍ଧ ବୋଲି ବିବେଚନା କରୁଥିଲେ । ଈଶ୍ୱରଙ୍କ ନାମ ପୃଥକ ପୃଥକ ଭାବେ କଥିତ ହେଲେ ମଧ୍ୟ ଈଶ୍ୱର ହେଉଛନ୍ତି

ଏକ ଏବଂ ଅବିଚ୍ଛିନ୍ନ । ସେହି ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇ କବୀର କହିଥିଲେ,—

"ଭାଇମାନେ, ବିଶ୍ୱ ବ୍ରହ୍ମାଣ୍ଡର ଦୁଇଜଣ ପ୍ରଭୁ କେଉଁଠାରୁ ଉଦ୍ଭବ ହୋଇଛନ୍ତି ? ମୋତେ କୁହ, କିଏ ଆଲ୍ଲା, ରାମ, କେଶବ, ହରି ଓ ହଜରତ୍ର ନାମ ଉଦ୍ଭାବନ କରିଛନ୍ତି ? ସବୁ ପ୍ରକାର ସ୍ୱର୍ଣ୍ଣ ଅଳଙ୍କାର ଗୋଟିଏ ମାତ୍ର ଅନୁପମ ବସ୍ତୁରୁ ତିଆରି ହୋଇଛି । ବିଶ୍ୱକୁ ଦେଖାଇବା ପାଇଁ ସିନା ଦୁଇଟି ସଂକେତ ସୃଷ୍ଟି ହୋଇଛି । ଗୋଟିକର ନାମ ହେଉଛି ନମାଜ ଓ ଅନ୍ୟଟିର ନାମ ହେଉଛି ପୂଜା । ମହାଦେବ ଓ ମହମ୍ମଦ ହେଉଛନ୍ତି ଏକ ଏବଂ ଅଭିନ୍ନ; ବ୍ରହ୍ମା ଓ ଆଦାମ ମଧ୍ୟ ଏକ ଏବଂ ଅଭିନ୍ନ । କିଏ ହିନ୍ଦୁ ? କିଏ ତୁର୍କ ? ଉଭୟେ ଏକ ଧରିତ୍ରୀରେ ବାସ କରନ୍ତି । ଜଣେ ପଢେ ବେଦ, ଅନ୍ୟ ଜଣେ ପଢେ କୋରାଣ ଓ ଖୁତ୍‌ବା । ଜଣେ ହେଉଛି ମୌଲାନା, ଅନ୍ୟ ଜଣେ ପଣ୍ଡିତ । ମାଟିର ପାତ୍ର ଗୁଡ଼ିକର ବିଭିନ୍ନ ନାମ ଅଛି । ଅଥଚ ସେ ଗୁଡ଼ିକ ଏକା ମାଟିରୁ ତିଆରି । କବୀର କହେ, ଉଭୟେ ବିପଥଗାମୀ, କେହି ଈଶ୍ୱରଙ୍କୁ ଚିହ୍ନି ନାହାନ୍ତି ।"

ଉଭୟ ଧର୍ମର ସାଧୁମାନଙ୍କୁ ସେ କହିଥିଲେ, "ହେ ସାଧୁମାନେ, ମୁଁ ଉଭୟଙ୍କର ମାର୍ଗ ଦେଖିଛି । ନିଜ ନିଜ ଗର୍ବରେ ହିନ୍ଦୁ ଓ ତୁର୍କ ମୋତେ ଚିହ୍ନି-ପାରନ୍ତି ନାହିଁ । ହିନ୍ଦୁ ଓ ମୁସଲମାନ ଉଭୟଙ୍କର ମାର୍ଗ ଗୋଟିଏ । ମୋର ସଦ୍‌ଗୁରୁ ମୋତେ ଏହି ଜ୍ଞାନ ଦେଇଛନ୍ତି । କବୀର ଯାହା କହୁଛି ତାହା ଶୁଣ : ରାମ ଓ ଖୋଦା ହେଉଛନ୍ତି ଏକ ଏବଂ ଅଭିନ୍ନ ।"

ଅନ୍ଧ ବିଶ୍ୱାସଗୁଡ଼ିକ ବିରୁଦ୍ଧରେ କବୀର ଦୃଢ଼ମତ ପ୍ରକାଶ କରିଥିଲେ । ସବୁ ସମ୍ପ୍ରଦାୟର ଲୋକଙ୍କୁ ସେ କହିଥିଲେ ଯେ, ବାହ୍ୟ କ୍ରିୟାକାଣ୍ଡମାନ ତ୍ୟାଗ କରି ହୃଦୟରେ ଈଶ୍ୱର ଭକ୍ତିକୁ ସ୍ଥାନ ଦିଅ । ଭକ୍ତି ବିନା ହୃଦୟ ଆଲୋକିତ ହେବ ନାହିଁ । ଈଶ୍ୱରଙ୍କ ଗୁଣଗାନ କରି ସେ କହିଥିଲେ—

"ଆଲ୍ଲା ଓ ରାମ ହେଉଛି ତୁମର ନାମ । ତୁମେ ହିଁ ଦୟାମୟ ପ୍ରଭୁ । ଲୁଣ୍ଠିତ ମୁଣ୍ଡ ଭୂମି ଆଡ଼କୁ ଅବନତ କଲେ କିମ୍ବା ଦେହକୁ ପାଣିରେ ଧୋଇଲେ କିଛି ଲାଭ ନାହିଁ । ହିନ୍ଦୁମାନେ ଚବିଶ ଥର ଏକାଦଶୀ ପାଳନ କରନ୍ତି,

ମୁସଲମାନମାନେ ଏକମାସ ଉପବାସ କରନ୍ତି । ଯଦି ଗୋଟିଏ ମାତ୍ର ମାସ ହେଉଛି ପବିତ୍ର, ତେବେ ଅନ୍ୟ ଏଗାର ଗୋଟି ମାସର ଅବସ୍ଥା କ'ଣ ?"

"ସଂସାର ମିଥ୍ୟାରେ ବିଶ୍ୱାସ କରେ । ଯେଉଁମାନେ ନିୟମିତ ଭାବେ ସବୁ ପ୍ରକାର ଧର୍ମକାର୍ଯ୍ୟ ଓ ଉତ୍ସବ ପାଳନ କରନ୍ତି ସେମାନଙ୍କୁ ମୁଁ ଦେଖିଛି । ଯେଉଁମାନେ ପ୍ରତ୍ୟେକ ପ୍ରଭାତରେ ସ୍ନାନ କରନ୍ତି ସେମାନଙ୍କୁ ମଧ୍ୟ ଦେଖିଛି । ହିନ୍ଦୁ କହେ, ସେ ରାମଙ୍କୁ ପୂଜା କରେ ଓ ମୁସଲମାନ କହେ, ସେ ରହିମାନଙ୍କୁ ଆରାଧନା କରେ । ସେମାନେ ପରସ୍ପର ମଧ୍ୟରେ ବିବାଦ ଦ୍ୱାରା ଜୀବନ ବିତାଇଥାନ୍ତି । ଉଭୟେ ହେଉଛନ୍ତି ପ୍ରକୃତ ସତ୍ୟ ବିଷୟରେ ଅଜ୍ଞ । କବୀର କହେ : ହେ ସାଧୁମାନେ, ଶ୍ରବଣ କର । ଏସବୁ ହେଉଛି ଭ୍ରାନ୍ତି ଓ ଅଜ୍ଞତା ପାଇଁ ।"

ଶାସ୍ତ୍ର ଓ ଧର୍ମଗ୍ରନ୍ଥଗୁଡ଼ିକୁ କବୀର ବିଶ୍ୱାସ କରି ନ ଥିଲେ । ପଣ୍ଡିତ ଓ କାଜି ସମସ୍ତେ ଭୁଲ ବିଶ୍ୱାସର ବଶବର୍ତ୍ତୀ ବୋଲି ସେ କହିଥିଲେ । ଭେଦାଭେଦ, ଦ୍ୱେଷ ବିଦ୍ୱେଷ, ଘୃଣାଭାବ ଓ ଧର୍ମାନ୍ଧତା ତ୍ୟାଗ କରି ସମସ୍ତଙ୍କୁ ଭକ୍ତି ପଥର ଯାତ୍ରୀ ହେବାପାଇଁ ସେ ଆହ୍ୱାନ ଦେଇଥିଲେ । ଶାସ୍ତ୍ରପାଠ ପରିବର୍ତ୍ତେ ରାମନାମ ଜପ କରିବା ଭକ୍ତର କର୍ତ୍ତବ୍ୟ ବୋଲି ସେ ପ୍ରଚାର କଲେ ।

କବୀର ହିନ୍ଦୁ ସମାଜର ଜାତିପ୍ରଥାକୁ ଘୋର ନିନ୍ଦା କରିଥିଲେ । ତାଙ୍କ ମତରେ ସେହି ପ୍ରଥା ଥିଲା ଅଧର୍ମ ଓ ଅନ୍ୟାୟ କର୍ମ । ଶୂଦ୍ରମାନଙ୍କୁ ପୂର୍ଣ୍ଣ ସାମାଜିକ ସମ୍ମାନ ଦେବାପାଇଁ ଉପଦେଶ ଦେଇ ସେ କହିଥିଲେ, "ମାଟି ହେଉଛି ଏକ ଏବଂ କୁମ୍ଭକାର ହେଉଛନ୍ତି ଜଣେ ଯିଏକି ସବୁପ୍ରକାର ମାଟିପାତ୍ର ଗଠନ କରୁଛନ୍ତି । ସବୁ ଢଙ୍ଗର ପାତ୍ର ଗୋଟିଏ ମାତ୍ର କୁମ୍ଭାରଚକରେ ଗଠିତ ହେଉଛି ।"

ଈଶ୍ୱର ତୀର୍ଥ ସ୍ଥାନରେ ରହି ନ ଥାନ୍ତି । ସେ ଥାଆନ୍ତି ହୃଦୟ ମଧ୍ୟରେ । ଈଶ୍ୱର ହେଉଛନ୍ତି ଅନନ୍ତ ସତ୍ୟ ଓ ସର୍ବମୟ ସ୍ରଷ୍ଟା । ଆଲ୍ଲା ମସଜିଦ ମଧ୍ୟରେ କିମ୍ବା ରାମ ମୂର୍ତ୍ତି ମଧ୍ୟରେ ନ ଥାନ୍ତି । ହରି ପୂର୍ବରେ ନ ଥାନ୍ତି କିମ୍ବା ଆଲ୍ଲା ପଶ୍ଚିମରେ ନ ଥାନ୍ତି । କାରଣ, ମନୁଷ୍ୟର ଅନ୍ତର ମଧ୍ୟରେ ହିଁ ଈଶ୍ୱର ବିଦ୍ୟମାନ । ତାହାଙ୍କୁ କେବଳ ଭକ୍ତି ବଳରେ ହିଁ ପାଇବା ସମ୍ଭବ । ସେ କହିଥିଲେ, "ବ୍ରଜ ଧାମର ସାଧୁମାନେ ଚତୁର୍ଭୁଜ ବିଷ୍ଣୁଙ୍କ ଆକାର ଚିନ୍ତାରେ

ଧ୍ୟାନମଗ୍ନ ଥାଆନ୍ତି । କିନ୍ତୁ କବୀର ଧ୍ୟାନମଗ୍ନ ରହେ ସେହି ଆକାର ପ୍ରତି,— ଯାହାଙ୍କ ଭୂଜ ଅନନ୍ତ ।" ତାଙ୍କ ମତରେ, ଈଶ୍ୱରଙ୍କୁ କୌଣସି ରୂପରେ ବର୍ଣ୍ଣନା ବା କଳ୍ପନା କରିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । କାରଣ, ସେ ସମସ୍ତ ଚିନ୍ତାଶକ୍ତିର ଅନେକ ଦୂରରେ । "ତୁମେ ଈଶ୍ୱରଙ୍କ ବିଷୟରେ ଯାହା କହିଥାଅ, ସେ ତାହା ନୁହନ୍ତି । ସେ ହେଉଛନ୍ତି ତାହା, ଯାହା ସେ ନିଜେ ।"

କବୀରଙ୍କ ରଚିତ ଭଜନଗୁଡ଼ିକ ସୁଲଳିତ ଓ ମର୍ମସ୍ପର୍ଶୀ ଥିଲା । ସରଳ ଭାଷାରେ ସେଗୁଡ଼ିକ ରଚନା କରା ଯାଇଥିଲା । ଅନେକ ଲୋକ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେମାନେ କବୀରପନ୍ଥୀ ନାମରେ ପରିଚିତ ହେଲେ । କବୀରଙ୍କ ଭଜନଗୁଡ଼ିକୁ 'ଦୋହା' ବୋଲି କୁହାଯାଏ ।

ଗୋରଖପୁର ଜିଲ୍ଲାର ମାଗହର ନାମକ ସ୍ଥାନରେ କବୀର ଦେହ ତ୍ୟାଗ କରିଥିଲେ । ତାଙ୍କ ମୃତ୍ୟୁ ପରେ ହିନ୍ଦୁମାନେ ତାଙ୍କ ନଶ୍ୱର ଶରୀରକୁ ଚିତାରେ ଭସ୍ମ କରିବାକୁ ଓ ମୁସଲମାନମାନେ କବର ଦେବାପାଇଁ ଦାବୀ କରି କଳହ କରିଥିଲେ । ଜନଶ୍ରୁତି ଅନୁସାରେ, ସେମାନଙ୍କର ସେହି ଅବାନ୍ତର ବିବାଦର ସମାଧାନ ପାଇଁ କବୀରଙ୍କ ଶବ ଅକସ୍ମାତ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ଏବଂ ଶବ ସ୍ଥାନରେ ଦେଖିବାକୁ ମିଳିଥିଲା କେତେଗୁଡ଼ିଏ ଫୁଲ । ସେହି ଫୁଲଗୁଡ଼ିକୁ ଉଭୟ ସମ୍ପ୍ରଦାୟର ଲୋକେ ଭାଗ ଭାଗ କରି ନେଇଥିଲେ । ମୁସଲମାନମାନେ ତାଙ୍କ ଭାଗର ଫୁଲକୁ ନାଢଦର ନାମକ ସ୍ଥାନରେ କବର ଦେଇଥିଲେ । ହିନ୍ଦୁମାନେ ତାଙ୍କର ଭାଗକୁ ବାରାଣସୀ ଠାରେ ଦଗ୍ଧ କରିଥିଲେ । ସେହି ସ୍ଥାନର ନାମ ହୋଇଥିଲା କବୀର ଚୌରା ।

**ନାନକ**

ଗୁରୁ ନାନକ ହେଉଛନ୍ତି ମଧ୍ୟ ଯୁଗର ଏକ ମହାନ ଧର୍ମପ୍ରଚାରକ । ତାହାଙ୍କ ପ୍ରବର୍ତ୍ତିତ ଶିଖ ଧର୍ମ ବିଶ୍ୱର ସର୍ବଶେଷ ଧର୍ମ ରୂପେ ପରିଗଣିତ ହୋଇଛି ।

ପଞ୍ଜାବର ଲାହୋର ନଗର ନିକଟବର୍ତ୍ତୀ ତାଳବଣ୍ଡି ବା ଆଧୁନିକ ନାନକାନା ନାମକ ସ୍ଥାନରେ ୧୪୬୯ ମସିହାରେ ଗୋଟିଏ ହିନ୍ଦୁ ପରିବାରରେ ନାନକ ଜନ୍ମଗ୍ରହଣ କରିଥିଲେ । ଜନଶ୍ରୁତି ଅନୁସାରେ, ଜନ୍ମ କାଳରୁ ତାଙ୍କ ନିକଟରେ ଐଶ୍ୱରିକ ଶକ୍ତି ଦେଖିବାକୁ ମିଳିଥିଲା । ତାଙ୍କ ପିତାଙ୍କ ନାମ ଥିଲା

କାଲୁ । ସେ ଜାତିରେ କ୍ଷତ୍ରିୟ ଥିଲେ ଓ ନିଜ ଗ୍ରାମର ପଟୱାରୀ ବା ହିସାବ-ରକ୍ଷକ ଭାବେ କାମ କରୁଥିଲେ । ସେ ଜଣେ ସାଧାରଣ ବ୍ୟବସାୟୀ ମଧ୍ୟ ଥିଲେ ।

ବାଲ୍ୟକାଳରୁ ନାନକ ଗଭୀର ଆଧ୍ୟାତ୍ମିକ ଚିନ୍ତାରେ ମନୋନିବେଶ କରିଥିଲେ । ସାଧୁସନ୍ଥମାନଙ୍କର ପାର୍ଶ୍ୱବର୍ତ୍ତୀ ହେବାକୁ ସେ ଆଗ୍ରହ ଦେଖାଉଥିଲେ । ବୟସ ବୃଦ୍ଧି ସଙ୍ଗେ ତାଙ୍କର ବିବାହ କାର୍ଯ୍ୟ ସମ୍ପାଦିତ ହୋଇଥିଲା । ପିତାଙ୍କ ଆଦେଶରେ ସେ ବ୍ୟବସାୟ କାର୍ଯ୍ୟ ଦେଖାଶୁଣା କଲେ । କିନ୍ତୁ ସେଥିପ୍ରତି ତାଙ୍କର ଆଗ୍ରହ ନ ଥିଲା । ଅର୍ଥ ଉପାର୍ଜନ ଅପେକ୍ଷା ପୁଣ୍ୟ ଉପାର୍ଜନ ତାଙ୍କୁ ଭଲ ଲାଗିଲା । ବ୍ୟବସାୟଲବ୍ଧ ଅର୍ଥ ସେ ଅକାତର ଭାବରେ ସାଧୁ ସନ୍ନ୍ୟାସୀ ଓ ଦୀନଦୁଃଖୀଙ୍କୁ ଦାନ କରିଦେଉଥିଲେ । କ୍ରମେ କ୍ରମେ ସେ ନିଜକୁ ପୂର୍ଣ୍ଣ ଭାବରେ ଧର୍ମ ଚିନ୍ତାରେ ନିୟୋଗ କଲେ । ଗୃହୀ ହେଲେ ମଧ୍ୟ ସେ ନିର୍ଲିପ୍ତ ସନ୍ନ୍ୟାସୀ ରୂପେ ଜୀବନ ବିତାଇଲେ । ହିନ୍ଦୁ ହେଲେ ମଧ୍ୟ ସେ ମୁସଲମାନ ସୁଫୀ ସନ୍ଥମାନଙ୍କ ସହିତ ମିଳାମିଶା କରିବାକୁ ଭଲ ପାଇଲେ । ଭକ୍ତ କବୀରଙ୍କ ମତମାନ ତାଙ୍କୁ ପ୍ରଭାବିତ କଲା । ନାନକ ଫାର୍ସୀ, ହିନ୍ଦୀ ଓ ପଞ୍ଜାବୀ ଭାଷାରେ ଦକ୍ଷତା ଲାଭ କରିଥିଲେ ।

ଭାରତର ଅନେକଗୁଡ଼ିଏ ତୀର୍ଥସ୍ଥାନରେ ନାନକ ଭ୍ରମଣ କରିଥିଲେ । କଥିତ ଅଛି, ସେ ଆରବ ଦେଶର ମକ୍‌କା ଓ ମଦିନା ପର୍ଯ୍ୟନ୍ତ ତୀର୍ଥଯାତ୍ରାରେ ଯାଇଥିଲେ । କ୍ରମେ ସେ ଜଣେ ପ୍ରଚାରକର ଭୂମିକାରେ ଅବତୀର୍ଣ୍ଣ ହେଲେ । ଲୋକଙ୍କ କଥିତ ଭାଷାରେ ଓ ସରଳ ଭାବରେ ସେ ଧର୍ମତତ୍ତ୍ୱମାନ ବୁଝାଇବାକୁ ଲାଗିଲେ । ଶହ ଶହ ଅନେକ ଲୋକ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସେହି ଶିଷ୍ୟମାନେ ଶିଖ ନାମରେ ପରିଚିତ ହେଲେ । ଶିଖମାନଙ୍କ ପବିତ୍ର ଧର୍ମଗ୍ରନ୍ଥ 'ଆଦି ଗ୍ରନ୍ଥ' ନାମରେ ପ୍ରସିଦ୍ଧ । ନାନକଙ୍କ ପରମ ବର୍ଷ ପରେ ଗୁରୁ ଅର୍ଜୁନ ସେହି ଗ୍ରନ୍ଥ ସଙ୍କଳନ କରିଥିଲେ । ସେଥିରେ ନାନକଙ୍କ ପ୍ରଚାରିତ ଉପଦେଶମାନ ଲିପିବଦ୍ଧ ରହିଛି । ୧୫୩୮ ଖ୍ରୀଷ୍ଟାବ୍ଦରେ କରତାରପୁର ନାମକ ସ୍ଥାନରେ ନାନକ ଇହଲୀଳା ସମ୍ବରଣ କରିଥିଲେ ।

ନାନକ ହିନ୍ଦୁ ଓ ଇସଲାମ ଧର୍ମର ସାରତତ୍ତ୍ୱ ମଧ୍ୟରେ ସାମଞ୍ଜସ୍ୟ ନିରୂପିଥିଲେ । ପ୍ରଚାରକ ରୂପେ ତାଙ୍କର ପ୍ରଥମ ବାଣୀ ଥିଲା, "କେହି ହିନ୍ଦୁ

ନୁହେଁ, କେହି ମୁସଲମାନ ନୁହେଁ ।" ଈଶ୍ୱରଙ୍କ ଏକତ୍ୱ ଉପରେ ସେ ଗୁରୁତ୍ୱ ଦେଇଥିଲେ ଓ ଉଭୟ ସମ୍ପ୍ରଦାୟ ମଧ୍ୟରେ ଥିବା ପାର୍ଥକ୍ୟ ଲୋପ କରିବା ପାଇଁ ଉଦ୍ୟମ କରିଥିଲେ । ଦିବ୍ୟ ପ୍ରେରଣା ଦ୍ୱାରା ସେ ମନୁଷ୍ୟକୁ ସୁପଥକୁ ଆଣିବା ପାଇଁ ବ୍ୟାକୁଳ ହୋଇଥିଲେ । ଈଶ୍ୱରଙ୍କୁ ସର୍ବମୟ କର୍ତ୍ତା ରୂପେ ବିଶ୍ୱାସ କରି ସେ ସେହି ପରମାତ୍ମାଙ୍କ ସହିତ ମନୁଷ୍ୟ ଆତ୍ମାର ସଂଯୋଗ ସ୍ଥାପନ ହେବା ଆବଶ୍ୟକ ବୋଲି ଶିକ୍ଷା ଦେଇଥିଲେ । ସେହି ସଂଯୋଗ କେବଳ ଭକ୍ତି ଦ୍ୱାରା ସମ୍ଭବ ବୋଲି ସେ କହିଥିଲେ । ଜ୍ଞାନ ଉପାର୍ଜନ, ଶାସ୍ତ୍ର ଅଧ୍ୟୟନ ଓ ଉତ୍ସବ ପାଳନ ପ୍ରଭୃତି ଭକ୍ତିଭାବ ଆଗରେ କିଛି ନୁହେଁ ବୋଲି ତାଙ୍କର ଦୃଢ଼ବୋଧ ହୋଇଥିଲା । ଈଶ୍ୱରଙ୍କ ମହତ୍ତ୍ୱ ମଧ୍ୟରେ ସେ ମନୁଷ୍ୟ ଜାତିର ଭ୍ରାତୃତ୍ୱ ଦେଖି ପାରିଥିଲେ । କାରଣ, ସମସ୍ତ ମନୁଷ୍ୟର ଆତ୍ମା ସେହି ପରମଶକ୍ତିର ପରିପ୍ରକାଶ ମାତ୍ର । ମନୁଷ୍ୟ ପ୍ରୀତି ବିନା ଈଶ୍ୱରପ୍ରାପ୍ତି ସମ୍ଭବ ନୁହେଁ ବୋଲି ସେ କହିଥିଲେ । ତାଙ୍କ ମତରେ, ମନୁଷ୍ୟ ଜାତି ପ୍ରତି ସ୍ୱର୍ଗୀୟ ବିଧି ହେଉଛି ପରସ୍ପରକୁ ଭଲ ପାଇବା ଏବଂ ସେଥିସଙ୍ଗେ ଅନାବିଳ ପ୍ରେମ ଓ ଭକ୍ତି ଦ୍ୱାରା ଈଶ୍ୱରଙ୍କୁ ଚିନ୍ତା କରିବା । ସଂସାରର ନୈତିକ ମାନଦଣ୍ଡ ଉଚ୍ଚ ରଖିବା ପାଇଁ ପ୍ରତ୍ୟେକ ମନୁଷ୍ୟ ଦିବ୍ୟତର ଚେତନା ଦ୍ୱାରା ଅନୁପ୍ରାଣିତ ହେବା ଉଚିତ ବୋଲି ସେ ପ୍ରଚାର କରିଥିଲେ । ଧର୍ମୀୟ କ୍ରିୟାକାଣ୍ଡଗୁଡ଼ିକୁ ମୂଲ୍ୟହୀନ ବୋଲି ବର୍ଣ୍ଣନା କରି ସେ ଏକମାତ୍ର ଈଶ୍ୱର ଭକ୍ତିକୁ ପରମ ଧର୍ମ ବୋଲି ବ୍ୟାଖ୍ୟା କରିଥିଲେ । ବେଦ ଓ କୋରାଣରେ ତାଙ୍କର ବିଶ୍ୱାସ ନ ଥିଲା । ବ୍ରାହ୍ମଣ ଓ ମୁଲ୍ଲାମାନଙ୍କର ପ୍ରାଧାନ୍ୟ ସେ ଅସ୍ୱୀକାର କରିଥିଲେ । ହରିନାମ ଜପ ଥିଲା ତାଙ୍କର ପ୍ରଧାନ ମନ୍ତ୍ର ।

ନାନକ ଥିଲେ ମଧ୍ୟଯୁଗର ଅନ୍ୟତମ ପ୍ରଖ୍ୟାତ ସମାଜ-ସଂସ୍କାରକ । ପ୍ରଚଳିତ ସାମାଜିକ କୁପ୍ରଥାଗୁଡ଼ିକ ବିରୁଦ୍ଧରେ ସେ ତୀବ୍ର ମତ ସୃଷ୍ଟି କରିଥିଲେ । ଜାତିପ୍ରଥାକୁ ସେ ଗୋଟିଏ ଘୃଣ୍ୟ ପ୍ରଥା ବୋଲି କହିଥିଲେ । ଥରେ ତାଙ୍କ ଭ୍ରମଣକାଳରେ ସେ ଜଣେ ଦରିଦ୍ର ଅସ୍ପୃଶ୍ୟ ଲୋକଙ୍କ ଘରେ ଆଶ୍ରୟ ନେଇ-ଥିଲେ । ତାହା ଦେଖି ଧର୍ମଧ୍ୱଜୀ ପଣ୍ଡିତମାନେ ସେମାନଙ୍କ ଅନୁଚରମାନଙ୍କ ସହ ଗୁରୁଙ୍କର ସେପରି କାର୍ଯ୍ୟର କଠୋର ସମାଲୋଚନା କଲେ । ନାନକ ସେମାନଙ୍କୁ ଉପଦେଶ ଦେଇ କହିଲେ,—

"ଆପଣମାନେ ଆଶ୍ଚର୍ଯ୍ୟ ହେଉଛନ୍ତି, କାରଣ ମୁଁ ଜଣେ ଉତ୍ତମ, ଦୟାଳୁ, କର୍ମଠ ଓ କର୍ତ୍ତବ୍ୟ ପରାୟଣ ବ୍ୟକ୍ତିଙ୍କ ଘରେ ଆତିଥ୍ୟ ଗ୍ରହଣ କରିଛି ।

ମନେ ରଖନ୍ତୁ, କର୍ମ ଦ୍ୱାରା ଜାତି ନିର୍ଦ୍ଧାରିତ ହୋଇଥାଏ । ନିଜର କାର୍ଯ୍ୟ ଦ୍ୱାରା ହିଁ ମନୁଷ୍ୟ ଉଚ୍ଚ ବା ନୀଚ ହୁଏ । ଈଶ୍ୱର ଭକ୍ତି ଦ୍ୱାରା ମନୁଷ୍ୟ ଜନ୍ମ ମୃତ୍ୟୁର ଚକ୍ର ମଧ୍ୟରୁ ମୋକ୍ଷଲାଭ କରେ । ଜାତି ଭେଦ ବିଷୟରେ ଚିନ୍ତିତ ହୁଅନ୍ତୁ ନାହିଁ । ଅନୁଭବ କରନ୍ତୁ, ଈଶ୍ୱରଙ୍କ ସତ୍ତା ସମସ୍ତଙ୍କ ମଧ୍ୟରେ ରହିଛି । ତାଙ୍କ ଆଗରେ ଜାତି ବୋଲି କିଛି ନାହିଁ ।"

ଆଉ ଥରେ ସେ କହିଥିଲେ, "ନିମ୍ନରୁ ନିମ୍ନତମ ମନୁଷ୍ୟ ମଧ୍ୟ ରହିଛନ୍ତି । ନାନକ ସେହିମାନଙ୍କ ସହିତ ଅଗ୍ରସର ହେବ, ଉଚ୍ଚମାନଙ୍କ ସହିତ ବା ତା'ର କି ସମ୍ପର୍କ ? ଯେଉଁମାନେ ପତିତମାନଙ୍କ କଥା ବୁଝନ୍ତି, ଈଶ୍ୱରଙ୍କର କୃପା ଦୃଷ୍ଟି ସେହିମାନଙ୍କ ଉପରେ ହିଁ ପଡ଼ିଥାଏ । ଜାତି ହେଉଛି ଅର୍ଥହୀନ ଏବଂ ଖ୍ୟାତି ମଧ୍ୟ ଅର୍ଥହୀନ । ଜାତିର ବା କ'ଣ ମୂଲ୍ୟ ? କେହି ମନୁଷ୍ୟ ତ ମୂଲ୍ୟହୀନ ନୁହେଁ ।"

ଭକ୍ତି ପଥରେ ଅଗ୍ରଗାମୀ ମନୁଷ୍ୟ ପକ୍ଷରେ ଜାତି ଓ ଧର୍ମଗତ ବିଦ୍ୱେଷ ପୋଷଣ ଉଚିତ ନୁହେଁ ବୋଲି ନାନକ ପ୍ରଚାର କରିଥିଲେ । ମନୁଷ୍ୟର ଉନ୍ନତ ସ୍ୱଭାବ ଉପରେ ସେ ବିଶେଷ ଗୁରୁତ୍ୱ ଦେଇଥିଲେ । ନୀତିପରାୟଣ ବ୍ୟକ୍ତିମାନେ ହିଁ ପ୍ରକୃତ ପକ୍ଷେ ଧାର୍ମିକ । ମିଥ୍ୟା, କପଟତା, ଲୋଭ, କ୍ରୋଧ, ଶଠତା ଓ ସ୍ୱାର୍ଥପରତା ଇତ୍ୟାଦି ଦୁର୍ଗୁଣ ଗୁଡ଼ିକ ତ୍ୟାଗ କରିବା ପାଇଁ ସେ ଉପଦେଶ ଦେଇଥିଲେ । ପବିତ୍ରତା, ଦୟା, ସେବା ଓ ପରୋପକାର ଇତ୍ୟାଦି ସୁଗୁଣ ସହିତ ସତ୍ ଜୀବନଯାପନ କରିବା ହେଉଛି ଧର୍ମ । ଧର୍ମାନ୍ଧତା ତ୍ୟାଗକରି ସମସ୍ତଙ୍କୁ ସେ ସାର୍ବଜନୀନ ପ୍ରେମଭାବରେ ଅନୁପ୍ରାଣିତ ହେବା ପାଇଁ ପରାମର୍ଶ ଦେଇଥିଲେ ।

କବୀରଙ୍କ ପରି ନାନକ ମଧ୍ୟ ଧର୍ମର ବାହ୍ୟ ଆଡ଼ମ୍ବରଗୁଡ଼ିକୁ ଘୃଣା କରୁଥିଲେ । ବାହ୍ୟଶୁଚିତା ଦେଖାଇଲେ, ଧ୍ୟାନମଗ୍ନ ଭାବେ ବସିରହିଲେ କିମ୍ବା ତୀର୍ଥସ୍ଥାନରେ ସ୍ନାନ କଲେ ମନୁଷ୍ୟ ପୁଣ୍ୟବାନ ହୁଏନାହିଁ ବୋଲି ସେ କହିଥିଲେ । ମନମଧ୍ୟରୁ କଳୁଷ ଦୂର କରି ନିଷ୍ପାପ ଭାବେ ଈଶ୍ୱରଙ୍କ ନାମ ଗାନ କଲେ, ପୁଣ୍ୟ ଅର୍ଜନ ହୁଏ । ଏକେଶ୍ୱରବାଦ ଉପରେ ନାନକ ଦୃଢ଼ ବିଶ୍ୱାସ ରଖିଥିଲେ । ସେ ପ୍ରଚାର କରିଥିଲେ, "ଭଗବାନ ହେଉଛନ୍ତି ଏକମାତ୍ର ପରମପୁରୁଷ, ଚିରସତ୍ୟ ଓ ସ୍ରଷ୍ଟା । ସେ ଚିରନ୍ତନ, ଜନ୍ମହୀନ ଓ ସ୍ୱୟଂସ୍ଥିତ ।" ତାହାଙ୍କ ଦୟାରୁ ପ୍ରକୃତି ଓ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତି । ସେ ବାସ୍ତବ ଓ ସନାତନ ।

ସେ ଅନାଦି ଓ ଅନନ୍ତ । ସେହି ସତ୍ୟ ସନାତନଙ୍କ ପ୍ରତି ଭକ୍ତିଜ୍ଞାପନ ହେଉଛି ଧର୍ମ ।

ନାନକ କର୍ମଫଳ ଓ ପୁନର୍ଜନ୍ମ ଉପରେ ବିଶ୍ୱାସ ରଖିଥିଲେ । ମୋକ୍ଷ-ଲାଭ ପାଇଁ ସେ ଜ୍ଞାନ ଓ ଭକ୍ତିମାର୍ଗ ଦେଖାଇଥିଲେ । ନୈତିକତା, ନମ୍ରତା, ସାଧୁତା, ଦାନଶୀଳତା ଓ ସତ୍ୟବାଦିତା ଥିଲା ତାଙ୍କ ପ୍ରଚାରିତ ଜ୍ଞାନମାର୍ଗ ପାଇଁ ମନୁଷ୍ୟର ଆବଶ୍ୟକୀୟ ଗୁଣାବଳୀ । ଦରିଦ୍ରକୁ ଦାନ ଦେବା, ଅହରହ ହରିନାମ ଜପ କରିବା ଏବଂ ଗୁରୁଙ୍କ ପ୍ରତି ଅଗାଧ ବିଶ୍ୱାସ ରଖିବା ପାଇଁ ସେ ତାଙ୍କ ଶିଷ୍ୟମାନଙ୍କୁ ଶିକ୍ଷା ଦେଇଥିଲେ ।

ନାନକ ମୁଖ୍ୟତଃ ହିନ୍ଦୁଧର୍ମର ସଂସ୍କାର ଓ ହିନ୍ଦୁ-ମୁସଲମାନ ଐକ୍ୟ ପାଇଁ ନିଜର ପ୍ରଚାର କାର୍ଯ୍ୟ ଚଳାଇଥିଲେ । ଗୋଟିଏ ସ୍ୱତନ୍ତ୍ର ଧର୍ମ ସ୍ଥାପନ ପାଇଁ ସେ ଚିନ୍ତା କରି ନ ଥିଲେ । ବସ୍ତୁତଃ, ତାଙ୍କ ଜୀବନ କାଳରେ ଶିଖମାନେ ପୃଥକ ଧର୍ମାବଲମ୍ବୀ ଭାବରେ ପରିଚିତ ହୋଇ ନ ଥିଲେ । ଶିଖ ଶବ୍ଦର ଅର୍ଥ ଥିଲା ଶିଷ୍ୟ । ଶିଖଧର୍ମ ବୋଲି ଗୋଟିଏ ଶବ୍ଦ ଗୁରୁ ନାନକଙ୍କ ସମୟରେ ନ ଥିଲା । କିନ୍ତୁ ତାଙ୍କ ପରବର୍ତ୍ତୀ ଗୁରୁମାନଙ୍କ ସମୟରେ ନାନକଙ୍କ ଶିଷ୍ୟ ବା ଶିଖମାନେ ଶିଖ ଧର୍ମାବଲମ୍ବୀ ରୂପେ କଥିତ ହେଲେ । ସେଥିସଙ୍ଗେ, ନାନକଙ୍କୁ ଶିଖଧର୍ମର ପ୍ରବର୍ତ୍ତକ ବୋଲି କୁହାଗଲା । ଖ୍ରୀଷ୍ଟିଆନମାନଙ୍କ ଧର୍ମଗ୍ରନ୍ଥ ବାଇବଲ ପରି ଶିଖମାନଙ୍କ ଧର୍ମଗ୍ରନ୍ଥ 'ଆଦି ଗ୍ରନ୍ଥ' ସେହି ନୂତନ ଧର୍ମର ମହତ୍ତ୍ୱ ପ୍ରତିପାଦନ କଲା ।

ମୃତ୍ୟୁ ପୂର୍ବରୁ ଗୁରୁ ନାନକ ତାଙ୍କର ପରମ ଶିଷ୍ୟ ଅଙ୍ଗଦଙ୍କୁ ନିଜର ଉତ୍ତରାଧିକାରୀ ଭାବେ ମନୋନୀତ କରିଥିଲେ । ନାନକଙ୍କ ସମୟରେ ଓ ତାହାଙ୍କ ପରେ ହିନ୍ଦୁ ସମ୍ପ୍ରଦାୟର ଅସଂଖ୍ୟ ନରନାରୀ ତାଙ୍କ ମତ ପ୍ରତି ଆକୃଷ୍ଟ ହୋଇ-ଥିଲେ ଓ ଶିଖ ଗୁରୁମାନଙ୍କୁ ଭକ୍ତି ପ୍ରଦାନ କରିଥିଲେ । ସେମାନେ ଶିଖମାନଙ୍କ ଗୁରୁଦ୍ୱାର ବା ମନ୍ଦିରକୁ ଯଥାରୀତି ଯାତ୍ରା କରୁଥିଲେ ଓ ଧର୍ମକାର୍ଯ୍ୟରେ ଯୋଗ ଦେଉଥିଲେ । ଶିଖଧର୍ମ ଗୋଟିଏ ସ୍ୱତନ୍ତ୍ର ଧର୍ମ ରୂପେ ଉତ୍ଥାନ ଲାଭ କଲାପରେ ମଧ୍ୟ ଗୁରୁ ନାନକ ଓ ଶିଖ ଗୁରୁମାନଙ୍କ ପ୍ରତି ହିନ୍ଦୁମାନଙ୍କର ଭକ୍ତି ଅକ୍ଷୁଣ୍ଣ ରହିଥିଲା । ସେହି ପରମ୍ପରା ଏ ପର୍ଯ୍ୟନ୍ତ ରହିଆସିଛି ।

**ଚୈତନ୍ୟ**

ମଧ୍ୟଯୁଗୀୟ ଭକ୍ତି ଆନ୍ଦୋଳନର ଅନ୍ୟତମ ପ୍ରଧାନ ପ୍ରବକ୍ତା ଥିଲେ ଶ୍ରୀଚୈତନ୍ୟ । ତତ୍କାଳୀନ ବୈଷ୍ଣବ ଧର୍ମର ପ୍ରଚାରକ ରୂପେ ସେ ମହାନ୍ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ପ୍ରଚାର ବଳରେ ଭକ୍ତିବାଦର ସ୍ରୋତ ଭାରତର ଗୋଟିଏ ବ୍ୟାପକ ଅଞ୍ଚଳରେ, ବିଶେଷତଃ ବଙ୍ଗ ଓ ଉତ୍କଳ ଭୂମିରେ ପ୍ରବଳଭାବେ ବ୍ୟାପି ଯାଇଥିଲା ।

୧୪୮୬ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶର ନବଦ୍ୱୀପ ନାମକ ସ୍ଥାନରେ ଚୈତନ୍ୟ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତା ଜଗନ୍ନାଥ ମିଶ୍ର ଜଣେ ବିଶିଷ୍ଟ ପଣ୍ଡିତ ଓ ଧର୍ମପରାୟଣ ବ୍ୟକ୍ତି ଥିଲେ । ତାଙ୍କ ମାତାଙ୍କ ନାମ ଥିଲା ଶଚୀ ଦେବୀ । ଚୈତନ୍ୟଙ୍କ ପ୍ରଥମ ନାମ ଦୁଇଟି ଥିଲା ବିଶ୍ୱମ୍ଭର ଓ ଗୌରାଙ୍ଗ । ଶୈଶବ କାଳରୁ ତାଙ୍କ ନିକଟରେ ଅଲୌକିକ ପ୍ରତିଭା ଦେଖିବାକୁ ମିଳିଥିଲା । ମାତ୍ର ପନ୍ଦର ବର୍ଷ ବୟସ ବେଳକୁ ସେ ସଂସ୍କୃତ ଭାଷା ଓ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ହାସଲ କରିଥିଲେ । ପିତାଙ୍କ ମୃତ୍ୟୁପରେ ନିଜର ଜୀବିକା ଉପାର୍ଜନ ପାଇଁ ସେ ତାଙ୍କର ଅଠର ବର୍ଷ ବୟସରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରି ଛାତ୍ରମାନଙ୍କୁ ଜ୍ଞାନଦାନ କରିବାକୁ ଲାଗିଲେ । ସେହି ସମୟରେ ସେ ଲକ୍ଷ୍ମୀ ନାମ୍ନୀ ବାଳିକାଙ୍କୁ ବିବାହ କରିଥିଲେ । କିନ୍ତୁ ସର୍ପ-ଦଂଶନରେ ପତ୍ନୀଙ୍କ ମୃତ୍ୟୁପରେ ସେ ଦ୍ୱିତୀୟଥର ପାଇଁ ବିବାହ କରିଥିଲେ ।

ବାଇଶ ବର୍ଷ ବୟସ ବେଳକୁ ବିଶ୍ୱମ୍ଭର ଗୟା ତୀର୍ଥରେ ଈଶ୍ୱରପୁରୀ ନାମକ ଗୁରୁଙ୍କ ନିକଟରୁ ଦୀକ୍ଷା ଗ୍ରହଣ କଲେ । ସେହି ସମୟରୁ ସେ ଭକ୍ତି-ମାର୍ଗରେ ଅଗ୍ରସର ହେଲେ ଓ ସଦାବେଳେ କୃଷ୍ଣଙ୍କ ନାମ ଉଚ୍ଚାରଣ କଲେ । ଭାବବିହ୍ୱଳ ଅବସ୍ଥାରେ ସେ ମଧ୍ୟେ ମଧ୍ୟେ ନିଜର ଚେତନାଶକ୍ତି ହରାଇ ବସୁଥିଲେ ।

୧୫୧୦ ଖ୍ରୀଷ୍ଟାବ୍ଦରେ ବିଶ୍ୱମ୍ଭର ଗୃହତ୍ୟାଗପୂର୍ବକ ସନ୍ନ୍ୟାସ ବ୍ରତ ଅବଲମ୍ବନ କଲେ । ସେହିଠାରୁ ତାଙ୍କ ନାମ ହେଲା ଶ୍ରୀଚୈତନ୍ୟ । ତାହାପରେ ଚୈତନ୍ୟ ନବଦ୍ୱୀପରୁ ବିଦାୟ ନେଇ ଓଡ଼ିଶାର ସୁବିଖ୍ୟାତ ଧର୍ମପୀଠ ପୁରୀ ନଗରୀରେ ଅବସ୍ଥାନ କଲେ । ସେହି ଜଗନ୍ନାଥ ଧାମରେ ତାଙ୍କର ଭକ୍ତିଭାବ ଅଧିକତର ପ୍ରଗାଢ଼ ହେଲା । ଜଗନ୍ନାଥଙ୍କ ମୂର୍ତ୍ତି ଆଗରେ ସେ ଆତ୍ମବିସ୍ମୃତ ହୋଇଯାଉଥିଲେ ।

ପୁରୀଠାରୁ ଚୈତନ୍ୟ କିଛି ସମୟ ପାଇଁ ଦକ୍ଷିଣ ଭାରତ ଓ ପଶ୍ଚିମ ଭାରତର ତୀର୍ଥ କ୍ଷେତ୍ରମାନଙ୍କୁ ଯାତ୍ରା କରିଥିଲେ । ପଣ୍ଢାରପୁର, ସୋମନାଥ ଓ ଦ୍ୱାରକା ପ୍ରଭୃତି ସ୍ଥାନ ଦର୍ଶନ କରି ସେ ପୁରୀଠାକୁ ଫେରିଥିଲେ । ଦୁଇବର୍ଷ ପରେ ପୁଣି ଥରେ ତୀର୍ଥଯାତ୍ରାରେ ବାହାରି ସେ ଉତ୍ତର ଭାରତର ବୃନ୍ଦାବନ ଓ ମଥୁରା ପ୍ରଭୃତି ସ୍ଥାନ ଦର୍ଶନ କରିଥିଲେ । ତାହାପରେ ପୁରୀକୁ ଫେରିଆସି ଜୀବନର ଅବଶିଷ୍ଟ ସମୟ ସେହି ଜଗନ୍ନାଥ ଧାମରେ ଅତିବାହିତ କଲେ । ଶେଷରେ ସେହିଠାରେ ୧୫୩୩ ଖ୍ରୀଷ୍ଟାବ୍ଦରେ ତାଙ୍କର ଦେହାବସାନ ଘଟିଲା । ତାଙ୍କ ଜୀବନର ଦୀର୍ଘ ଅଠରବର୍ଷ ସମୟ କେବଳ ଓଡ଼ିଶାରେ ଅତିବାହିତ ହୋଇଥିଲା । ଦକ୍ଷିଣ ଓ ଉତ୍ତର ଭାରତରେ ସେ ଛଅବର୍ଷ ପ୍ରଚାର କରିଥିଲେ ।

ଚୈତନ୍ୟଙ୍କ ପ୍ରଚାର ଦ୍ୱାରା ଅସଂଖ୍ୟ ନରନାରୀ ଭକ୍ତିମାର୍ଗ ପ୍ରତି ଆକୃଷ୍ଟ ହୋଇଥିଲେ । କୃଷ୍ଣ ଓ ହରି ନାମରେ ସେ ଈଶ୍ୱରଙ୍କୁ ଆହ୍ୱାନ କରୁଥିଲେ । ସେହି ଆହ୍ୱାନ ଥିଲା ଭାବପୂର୍ଣ୍ଣ ଆନ୍ତରିକ ପ୍ରେମର ଆହ୍ୱାନ । ଗତାନୁଗତିକ ଧର୍ମୀୟ ରୀତିନୀତିରେ ସେ ବିଶ୍ୱାସ କରୁ ନ ଥିଲେ । ଅନ୍ୟ ପକ୍ଷରେ, ନାମ ସଂକୀର୍ତ୍ତନ ଥିଲା ତାଙ୍କ ପ୍ରଚାର କାର୍ଯ୍ୟର ପ୍ରଧାନ ମାଧ୍ୟମ । ଭାବବିହ୍ୱଳ ଚିତ୍ତରେ ହରିନାମ କୀର୍ତ୍ତନ ଦ୍ୱାରା ସେ ଲୋକଙ୍କୁ ଆକର୍ଷିତ କରୁଥିଲେ । ତାଙ୍କ ଯାତ୍ରା ପଥରେ ଅଗଣିତ ଭକ୍ତ ନାମ ସଂକୀର୍ତ୍ତନରେ ଯୋଗ ଦେଉଥିଲେ । ସମବେତ ମଧୁର କଣ୍ଠରେ ହରିନାମ ଗାନ ଦ୍ୱାରା ସମସ୍ତଙ୍କ ପ୍ରାଣରେ ଭକ୍ତି ପ୍ରେରଣାର ଉଦ୍ରେକ ହେଉଥିଲା । ସତେ ଯେପରି ଭକ୍ତମାନେ ସଂକୀର୍ତ୍ତନ ମଧ୍ୟରେ ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରୁଥିଲେ ।

ଚୈତନ୍ୟ କହୁଥିଲେ, "ମାୟା ବନ୍ଧନର ଅଳୀକ ପ୍ରଭାବରୁ ମୁକ୍ତ ହେବା ପାଇଁ ଓ କୃଷ୍ଣଙ୍କ ପଦ ଲାଭ ପାଇଁ ଜୀବର ଏକମାତ୍ର ପନ୍ଥା ହେଉଛି କୃଷ୍ଣଭକ୍ତି ଓ ଗୁରୁସେବା ।" ସେ ସାଂସାରିକ ଜୀବନର ଅସାରତା ଉପରେ ଗୁରୁତ୍ୱ ଦେଇଥିଲେ ଓ ଭକ୍ତି ପ୍ରେମ ଦ୍ୱାରା ଈଶ୍ୱରଲବ୍‌ଧି ପାଇଁ ପ୍ରଚାର କରିଥିଲେ । ସତ୍‌ପଥର ସନ୍ଧାନ ପାଇଁ ଗୁରୁଙ୍କ ନିକଟରୁ ଦୀକ୍ଷା ଗ୍ରହଣ ଆବଶ୍ୟକ ଥିଲା । ଗୁରୁଙ୍କ ସାହାଯ୍ୟ ବିନା ମନୁଷ୍ୟ ପକ୍ଷରେ ଈଶ୍ୱର ଉପଲବ୍‌ଧି ସମ୍ଭବ ନ ଥିଲା । ଗୁରୁ ହିଁ ଥିଲେ ପ୍ରକୃତ ଭକ୍ତି ପଥର ପ୍ରଦର୍ଶକ ।

ପୂଜକ ବା ପୁରୋହିତମାନଙ୍କର ପ୍ରାଧାନ୍ୟ ଉପରେ ଚୈତନ୍ୟଙ୍କର ବିଶ୍ୱାସ ନ ଥିଲା । ଅଥଚ ପ୍ରତ୍ୟେକ ମନୁଷ୍ୟକୁ ବ୍ୟକ୍ତିଗତ ଭାବେ ଗୁରୁଙ୍କର ସନ୍ଧାନ ପାଇଁ ସେ ଉପଦେଶ ଦେଇଥିଲେ । କୁସଂସ୍କାର ପରିତ୍ୟାଗ କରି କେବଳ ଈଶ୍ୱର ପ୍ରେମ ଓ ହରି ଭକ୍ତିରେ ମନୋନିବେଶ କରିବାକୁ ସେ କହିଥିଲେ ।

ଚୈତନ୍ୟ ଜାତି ଧର୍ମ ନିର୍ବିଶେଷରେ ଶିଷ୍ୟ ଗ୍ରହଣ କରିଥିଲେ । ପତିତ, ଚଣ୍ଡାଳ, ଅସ୍ପୃଶ୍ୟ ଓ ଏପରିକି ପାପୀମାନଙ୍କୁ ମଧ୍ୟ ସେ ପ୍ରେମାଲିଙ୍ଗନ ଦେଇ-ଥିଲେ । ଯବନ ହରିଦାସ ନାମକ ତାଙ୍କର ଜଣେ ଶିଷ୍ୟ, ଜାତିରେ ମୁସଲମାନ ଥିଲେ । ମାନବୀୟ ପ୍ରେମର ଅବତାର ରୂପେ ଚୈତନ୍ୟ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିଥିଲେ । ଭକ୍ତି ଆଗରେ ଗର୍ବ, ଅହମିକା, କ୍ଷମତା ଓ ଅର୍ଥ ମୋହର ସ୍ଥାନ ନ ଥିଲା । ଦୁର୍ବଳ, ଦରିଦ୍ର ଓ ଦୁଃଖୀମାନଙ୍କ ପ୍ରତି ଦୟାର୍ଦ୍ର ହେବା, ହରିପଦ ଧ୍ୟାନ କରିବା, ନାମ ସଂକୀର୍ତ୍ତନ ଦ୍ୱାରା ଅନ୍ୟମାନଙ୍କୁ ଭକ୍ତି ପଥକୁ ଆକର୍ଷଣ କରିବା ପାଇଁ ସେ ତାଙ୍କର ଶିଷ୍ୟମାନଙ୍କୁ ଉପଦେଶ ଦେଇ-ଥିଲେ । ଶିଷ୍ୟମାନେ ସରଳ ଓ ସହଜ ଭାଷାରେ ଭକ୍ତିବାଦ ପ୍ରଚାର କରିଥିଲେ ।

କୌଣସି କୌଣସି ପଣ୍ଡିତଙ୍କ ମତରେ ଚୈତନ୍ୟ ଜଣେ ସମାଜ ସଂସ୍କାରକ ଭାବରେ ଭୂମିକା ଗ୍ରହଣ କରି ନ ଥିଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଭକ୍ତି ଧର୍ମ ପ୍ରଚାର । ସେହି ଭକ୍ତିମାର୍ଗରେ ସେ ସମସ୍ତ ମନୁଷ୍ୟକୁ ଭ୍ରାତୃ-ଭାବରେ ଆବଦ୍ଧ ହେବାକୁ କହିଥିଲେ । କାରଣ, ଈଶ୍ୱରଙ୍କ ଆଗରେ ସମସ୍ତେ ଥିଲେ ସମାନ । ଭକ୍ତି ଆଗରେ ମଧ୍ୟ ସମସ୍ତେ ଥିଲେ ଏକ ପରମେଶ୍ୱରଙ୍କ ସନ୍ତାନ ।

ଚୈତନ୍ୟଙ୍କ ଅସାଧାରଣ ବ୍ୟକ୍ତିତ୍ୱ, ଅଗାଧ ଜ୍ଞାନ ଓ ଅସୀମ ଭକ୍ତି ତାହାଙ୍କ ଶିଷ୍ୟମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ସେଥିପାଇଁ ଅନେକେ ତାହାଙ୍କୁ ଜଣେ ଅବତାର ବୋଲି ଭାବିଥିଲେ । ତାହାଙ୍କ ପରେ ନବଦ୍ୱୀପ ଇତ୍ୟାଦି ସ୍ଥାନର ବୈଷ୍ଣବମାନେ ତାଙ୍କୁ ଚୈତନ୍ୟ ମହାପ୍ରଭୁ ବୋଲି କହିଥିଲେ । ତାଙ୍କ ପ୍ରଚାରିତ ଭକ୍ତିମାର୍ଗ ମନୁଷ୍ୟର ହୃଦୟସ୍ପର୍ଶ କରିଥିଲା । ହରି ଭକ୍ତି ଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ଶାନ୍ତି ଓ ସାନ୍ତ୍ୱନା ପାଇଥିଲେ । ତାଙ୍କ ପ୍ରବର୍ତ୍ତିତ ସଂକୀର୍ତ୍ତନ ପ୍ରଥା ଅସଂଖ୍ୟ ନରନାରୀଙ୍କ ପ୍ରାଣରେ ଭକ୍ତି ଉଦ୍ରେକ

କରିଥିଲା । ଫଳରେ, ଅନେକ ସ୍ଥାନରେ ବୈଷ୍ଣବଧର୍ମ ଗଣଧର୍ମରେ ପରିଣତ ହୋଇଥିଲା । ଚୈତନ୍ୟଙ୍କ ସମୟରେ ଭକ୍ତି ଆନ୍ଦୋଳନ ତାହାର ଶୀର୍ଷସୀମା ସ୍ପର୍ଶ କରିଥିଲା ।

**ଭକ୍ତି ଆନ୍ଦୋଳନର ଫଳାଫଳ**

କବୀର, ନାନକ ଓ ଚୈତନ୍ୟ ଥିଲେ ଭକ୍ତିଯୁଗର ତିନିଜଣ ପ୍ରଖ୍ୟାତ ଧର୍ମପ୍ରଚାରକ । କିନ୍ତୁ ସେମାନଙ୍କ ବ୍ୟତୀତ ଓ ସେମାନଙ୍କ ପରେ ଅନ୍ୟ ଭକ୍ତମାନେ ମଧ୍ୟ ଭକ୍ତି ଆନ୍ଦୋଳନର ପ୍ରସାର ସାଧନ କରିଥିଲେ । ସେମାନଙ୍କ ମଧ୍ୟରେ ମୀରାବାଈ, ବଲ୍ଲଭାଚାର୍ଯ୍ୟ, ନାମଦେବ, ତୁକାରାମ, ସୁରଦାସ ଓ ତୁଳସୀ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଭକ୍ତି ଆନ୍ଦୋଳନର ପ୍ରଭାବ ସୁଦୂରପ୍ରସାରୀ ଥିଲା । ସେହି ଆନ୍ଦୋଳନ କେବଳ ଜ୍ଞାନୀ ବା ଗୁରୁମାନଙ୍କର ଆନ୍ଦୋଳନ ନ ଥିଲା । ତାହା ଥିଲା ମଧ୍ୟ-ଯୁଗର ଧର୍ମପ୍ରାଣ ଜନସାଧାରଣଙ୍କର ଆନ୍ଦୋଳନ । କୁହାଯାଏ ଯେ, ଭାରତରେ ବୌଦ୍ଧଧର୍ମର ବିଲୟ ପରେ ଭକ୍ତି ଆନ୍ଦୋଳନ ଥିଲା ସର୍ବାଧିକ ବ୍ୟାପକ ଓ ଜନପ୍ରିୟ ଧର୍ମୀୟ ଜାଗରଣ ।

ଭକ୍ତି ଆନ୍ଦୋଳନର ତିନିଗୋଟି ଐତିହାସିକ ଫଳ ଦେଖିବାକୁ ମିଳେ । ପ୍ରଥମତଃ, ଭକ୍ତି ପ୍ରଚାରକମାନେ ହିନ୍ଦୁ ଧର୍ମରେ ଅନେକ ପ୍ରକାର ସଂସ୍କାର ଆନୟନ କରିଥିଲେ । ତଦ୍ୱାରା ଜାତିପ୍ରଥାର କଠୋରତା ହ୍ରାସ ପାଇଥିଲା । ସମାଜରେ ଭେଦାଭେଦ ଓ ବିଦ୍ୱେଷ ଭାବ ଶିଥିଳ ହୋଇଥିଲା । ଧର୍ମର ନିଗୂଢ଼ ଅର୍ଥମାନ ସହଜ ଆକାର ଧାରଣ କଲା । ଜଟିଳ କ୍ରିୟାକାଣ୍ଡ ଓ ମନ୍ତ୍ରତନ୍ତ୍ରର ପ୍ରଭାବ କମି ଆସିଲା । ସାଧାରଣ ଲୋକଙ୍କ ପକ୍ଷରେ ଧର୍ମ ଆଚରଣ ପାଇଁ ପରିବେଶ ସୃଷ୍ଟି ହେଲା । ଦରିଦ୍ର ବା ଅସ୍ପୃଶ୍ୟ, ସମସ୍ତଙ୍କ ପ୍ରାଣରେ ନୂତନ ଆଶାର ସଞ୍ଚାର ଘଟିଲା ।

ଦ୍ୱିତୀୟତଃ, ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସଦ୍‌ଭାବ ବୃଦ୍ଧି ପାଇଲା । ଧର୍ମଗତ ପାର୍ଥକ୍ୟ ମୂଲ୍ୟହୀନ ଜଣାଗଲା । ଉଭୟ ଧର୍ମର ସାରତତ୍ତ୍ୱ ମଧ୍ୟରେ ରହିଥିବା ଈଶ୍ୱର ଭକ୍ତିର ମହତ୍ତ୍ୱ ପ୍ରତି ଉଭୟ ସମ୍ପ୍ରଦାୟର ଦୃଷ୍ଟି ପଡ଼ିଲା । ଧର୍ମାନ୍ଧତା ପରିବର୍ତ୍ତେ ଭାରତୀୟ ସମାଜରେ ଉଦାର ବାତାବରଣ ଦେଖିବାକୁ ମିଳିଲା । ଧର୍ମୀୟ ଉଦାରତାର ପ୍ରଭାବ ରାଜନୀତି କ୍ଷେତ୍ରରେ

ପ୍ରତିଫଳିତ ହେଲା । ମୋଗଲ ଯୁଗରେ, ବିଶେଷତଃ, ସମ୍ରାଟ ଆକବରଙ୍କ ଶାସନକାଳରେ ଧର୍ମଗତ ଉଦାରତା ମୁଖ୍ୟ ରାଜନୈତିକ ଚେତନା ରୂପେ ପ୍ରକାଶ ଲାଭ କଲା ।

ତୃତୀୟତଃ, ଭକ୍ତି ଆନ୍ଦୋଳନ ଦ୍ୱାରା ମଧ୍ୟଯୁଗୀୟ ଭାରତର ବିଭିନ୍ନ ଅଞ୍ଚଳରେ ଆଞ୍ଚଳିକ ଭାଷା ଓ ସାହିତ୍ୟର ଉନ୍ନତି ଘଟିଲା । ଧର୍ମ ପ୍ରଚାରକମାନେ ସଂସ୍କୃତ ଭାଷା ପରିବର୍ତ୍ତେ ସ୍ଥାନୀୟ ମାତୃଭାଷାରେ ପ୍ରଚାର କରିଥିଲେ । ସେମାନଙ୍କ ମତମାନ ସ୍ଥାନୀୟ କଥିତ ଭାଷାରେ ଲିଖିତ ହେଲା । ରାମାନନ୍ଦ ଓ କବୀର ହିନ୍ଦୀ ଭାଷାରେ ପ୍ରଚାର କରିଥିଲେ । ସେମାନଙ୍କ ଉପଦେଶମାନ ସେହି ଭାଷାରେ ଲିଖିତ ଗ୍ରନ୍ଥ ଆକାରରେ ପ୍ରସାର ଲାଭ କଲା । ନାନକ ଓ ଶିଖ ଗୁରୁମାନେ ପଞ୍ଜାବୀ ଭାଷା ବ୍ୟବହାର କଲେ । ତେଣୁ ପଞ୍ଜାବୀ ସାହିତ୍ୟର ଉନ୍ନତି ଘଟିଲା । ଚୈତନ୍ୟଙ୍କ ଭକ୍ତମାନେ ବଙ୍ଗଳା ଭାଷାରେ ଅନେକ ଧର୍ମଗ୍ରନ୍ଥ ପ୍ରଣୟନ କଲେ । ସେହିପରି, ଭକ୍ତି ଆନ୍ଦୋଳନର ଅନ୍ୟ ପ୍ରଚାରକମାନେ ମାରାଠୀ, ମୈଥିଳୀ, ବ୍ରଜଭାଷା ଓ ଓଡ଼ିଆ ପ୍ରଭୃତି ଆଞ୍ଚଳିକ ମାତୃଭାଷାରେ ପ୍ରଚାର ଓ ଗ୍ରନ୍ଥ ରଚନା କଲେ । ବସ୍ତୁତଃ, ଆଞ୍ଚଳିକ ଭାଷା ଓ ସାହିତ୍ୟର ବିକାଶ ପାଇଁ ଭକ୍ତି ଆନ୍ଦୋଳନ ସୁବର୍ଣ୍ଣ ସୁଯୋଗ ଆଣି ଦେଇଥିଲା ।

ଉପର ବର୍ଣ୍ଣିତ କାରଣ ପାଇଁ ମଧ୍ୟଯୁଗର ଭାରତ ଇତିହାସରେ ଭକ୍ତି ଆନ୍ଦୋଳନ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ରୂପେ ସ୍ଥାନ ପାଇଛି ।

## ସପ୍ତମ ଅଧ୍ୟାୟ

## ଊନବିଂଶ ଶତାବ୍ଦୀରେ ଭାରତୀୟ ନବଜାଗରଣ

**(Renaissance in the Nineteenth Century)**

## ରାମମୋହନ ରାୟ ଓ ବ୍ରାହ୍ମ ସମାଜ, ଦୟାନନ୍ଦ ସରସ୍ୱତୀ ଓ ଆର୍ଯ୍ୟ ସମାଜ, ସ୍ୱାମୀ ବିବେକାନନ୍ଦ

**(Rammohun Ray and Brahmo Samaj, Dayananda Saraswati and Arya Samaj, Swami Vivekananda)**

### ଭାରତରେ ବ୍ରିଟିଶ ସାମ୍ରାଜ୍ୟ

ଆଧୁନିକ ଭାରତ ଇତିହାସରେ ଅଷ୍ଟାଦଶ ଶତାବ୍ଦୀ ଏକ ଦୁର୍ଭାଗ୍ୟପୂର୍ଣ୍ଣ ଦୁଃସମୟ ରୂପେ ବିବେଚିତ ହୋଇଛି । ସେହି ଶତାବ୍ଦୀର ଆରମ୍ଭ କାଳରେ ସୁବିଶାଳ ମୋଗଲ ସାମ୍ରାଜ୍ୟର ପତନ ଘଟିଥିଲି । ରାଜନୈତିକ ଏକତା ବିନଷ୍ଟ ହେବା ଫଳରେ ଭାରତର ଚାରିଆଡ଼େ କ୍ଷୁଦ୍ର କ୍ଷୁଦ୍ର ରାଜଶକ୍ତିଗୁଡ଼ିକର ଉତ୍ଥାନ ଘଟିଥିଲି । ମରହଟ୍ଟମାନେ ମୋଗଲ ସାମ୍ରାଜ୍ୟର ଧ୍ୱଂସସାଧନ କରିଥିଲେ ସତ୍ୟ, କିନ୍ତୁ ସେମାନେ ଭାରତକୁ ଏକତାବଦ୍ଧ କରିପାରିଲେ ନାହିଁ । ଅଧିକନ୍ତୁ, ମରହଟ୍ଟା ଶକ୍ତି ନିଜ ମଧ୍ୟରେ ଭାଗ ଭାଗ ହୋଇ ଯାଇଥିଲି । ତେଣେ, ଅନେକାନେକ କ୍ଷୁଦ୍ର ଓ ଦୁର୍ବଳ ରାଜାମାନେ ପରସ୍ପର ମଧ୍ୟରେ ସର୍ବଦା ଯୁଦ୍ଧରତ ରହିଲେ । ତଦ୍ଦ୍ୱାରା ଦେଶରେ ଅରାଜକତା ସୃଷ୍ଟି ହେଲି । ଭାରତୀୟ ଜୀବନ ଉପରେ ସେହି ଅରାଜକତାର କୁ ପ୍ରଭାବ ପଡ଼ିଲି । ଦେଶବାସୀଙ୍କର ମାନସିକ ଓ ସାଂସ୍କୃତିକ ଅଧୋଗତି ଘଟିଲି ।

ସେହିପରି ସଙ୍କଟମୟ ପରିସ୍ଥିତିର ସୁଯୋଗ ନେଇ ଭାରତରେ ବାଣିଜ୍ୟ କରୁଥିବା ଇଉରୋପୀୟ ବଣିକମାନେ ନିଜ ନିଜ ଶକ୍ତି ବିସ୍ତାର ପାଇଁ ଚେଷ୍ଟା କଲେ । ସେହି ବଣିକ ଗୋଷ୍ଠୀଗୁଡ଼ିକ ମଧ୍ୟରେ ପ୍ରଧାନ ଥିଲେ ପର୍ତ୍ତୁଗୀଜ, ଡଚ୍,

ଫରାସୀ ଓ ଇଂରେଜ । ସେମାନେ ନିଜ ନିଜ ସୈନ୍ୟବାହିନୀ ଗଠନ କଲେ । ସେମାନଙ୍କ ଉନ୍ନତ ଅସ୍ତ୍ରଶସ୍ତ୍ର, କମାଣ, ଗୋଳାବାରୁଦ ଓ ସୁଶୃଙ୍ଖଳ ସୈନ୍ୟ ସଂଗଠନ ଯୋଗୁଁ ଭାରତୀୟ ରାଜାମାନେ ସେମାନଙ୍କୁ ଦମନ କରିପାରିଲେ ନାହିଁ । ଶୀଘ୍ର ଶୀଘ୍ର ବିଦେଶୀ ଶକ୍ତିଗୁଡ଼ିକ ମଧ୍ୟରେ ଇଂରେଜମାନେ ପ୍ରବଳ ହୋଇ ଉଠିଲେ । ଶେଷରେ, ୧୭୫୭ ଖ୍ରୀଷ୍ଟାବ୍ଦରେ ପଲାଶୀ ଯୁଦ୍ଧ କ୍ଷେତ୍ରରେ ବଙ୍ଗଦେଶର ନବାବ ସିରାଜଉଦ୍ଦୌଲଙ୍କୁ ପରାସ୍ତ କରି ରବାର୍ଟ କ୍ଲାଇବ୍ ନାମକ ଜଣେ ଇଂରେଜ କର୍ମଚାରୀ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ ।

ସେହି ସମୟରୁ କ୍ରମାଗତ ଭାବେ ଇଂରେଜମାନଙ୍କ ସାମ୍ରାଜ୍ୟ ବିସ୍ତାର ଲାଗି ରହିଲା । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗ ବେଳକୁ ଦେଖାଗଲା ଯେ, ଭାରତର ଅଧିକାଂଶ ଅଞ୍ଚଳ ବ୍ରିଟିଶ-ଭାରତୀୟ ସାମ୍ରାଜ୍ୟରେ ପରିଣତ ହୋଇ ସାରିଛି । ତେଣେ, ଇଂରେଜମାନଙ୍କର ଶୋଷଣ ନୀତି ଦ୍ୱାରା ଦେଶର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ପଡ଼ିଥିଲା । ଭାରତର ଗ୍ରାମ୍ୟ ଓ ହସ୍ତଶିଳ୍ପମାନ ବିନଷ୍ଟ ହୋଇଗଲା । ଏ ଦେଶର ଅପର୍ଯ୍ୟାପ୍ତ ଅର୍ଥ ବିଦେଶକୁ ବହି ଚାଲିଥାଏ । ଭାରତର କଞ୍ଚାମାଲ ନେଇ ଇଂରେଜମାନେ ନିଜ ଦେଶର ଉନ୍ନତିସାଧନ କଲେ । ଆର୍ଥିକ ଦୁର୍ଗତି ପାଇଁ ଭାରତବାସୀଙ୍କ ଦାରିଦ୍ର୍ୟ ବଢ଼ିଚାଲିଲା । ପରାଧୀନତା, ଶୋଷଣ, ଭୟ, ଦୁଃଖ, ଦୈନ୍ୟ ଓ ଅଶାନ୍ତିମୟ ବାତାବରଣ ମଧ୍ୟରେ ଭାରତୀୟ ସଂସ୍କୃତି ମ୍ଳାନ ଆକାର ଧାରଣ କଲା । ସତେ ଯେପରି ସେହି ଅନ୍ଧକାରମୟ ଯୁଗରେ ଭାରତବାସୀ ସେମାନଙ୍କ ଆତ୍ମଗୌରବ ତଥା ସୁମହାନ ଅତୀତକୁ ଭୁଲି ବସିଥିଲେ ।

କିନ୍ତୁ ସମୟର ଗତିପଥରେ କ୍ରମେ କ୍ରମେ ଭାରତବାସୀଙ୍କ ଚିନ୍ତା-ରାଜ୍ୟରେ ଏକ ନୂତନ ସଚେତନତା ପ୍ରକାଶ ପାଇଲା । ଅଧଃପତନର ଯୁଗରେ ପୁନରୁତ୍‌ଥାନ ପାଇଁ ସୂଚନା ମିଳିଲା । ଆତ୍ମବିସ୍ମୃତି ମଧ୍ୟରୁ ସ୍ୱାଭିମାନ ଆତ୍ମପ୍ରକାଶ କଲା । ଊନବିଂଶ ଶତାବ୍ଦୀରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ସ୍ୱ ଶକ୍ତିର ଶୀର୍ଷ ସୀମାରେ ଉପନୀତ ହେଲା ବେଳକୁ ତେଣେ ଭାରତୀୟ ଚେତନା କ୍ଷେତ୍ରରେ ଏକ ନବ-ଜାଗରଣ ବା ପୁନର୍ଜାଗରଣ (**Renaissance**) ଦେଖିବାକୁ ମିଳିଲା ।

## ଭାରତୀୟ ନବଜାଗରଣ ବା ପୁନର୍ଜାଗରଣ

ଊନବିଂଶ ଶତାବ୍ଦୀର ଭାରତୀୟ ନବଜାଗରଣ ଥିଲା ଗୋଟିଏ ମହାନ ମାନସିକ ବିପ୍ଳବ । ଧର୍ମ, ସମାଜ ଓ ସଂସ୍କୃତି କ୍ଷେତ୍ରରେ ସେହି ଜାଗରଣର ପ୍ରଭାବ ପ୍ରତିଫଳିତ ହେଲା । ଜାତିର ଆତ୍ମବିଶ୍ୱାସ ଫେରି ଆସିବା ସଙ୍ଗେ ଜାତୀୟ ମନୋଭାବ ବିକଶିତ ହେଲା । ଚିନ୍ତା ଜଗତରେ ନୂତନତ୍ୱ ପ୍ରକାଶ ପାଇଲା । ପ୍ରଗତି ପାଇଁ ପ୍ରେରଣା ମିଳିଲା । ନବ ଭାରତର ଉତ୍‌ଥାନ ପାଇଁ ସେହି ପ୍ରେରଣା ହେଲା ଅମୋଘ ଅସ୍ତ୍ର । ଐତିହାସିକ ସାର୍ ଯଦୁନାଥ ସରକାରଙ୍କ ଭାଷାରେ, "କନ୍‌ଷ୍ଟାଣ୍ଟିନୋପଲ୍‌ର ପତନ ପରେ ଦେଖା ଦେଇଥିବା ଇଉରୋପୀୟ ନବ ଜାଗରଣ ଅପେକ୍ଷା ଭାରତୀୟ ନବ ଜାଗରଣ ଥିଲା ପ୍ରକୃତ ପକ୍ଷରେ ଅଧିକତର ବ୍ୟାପକ, ଗଭୀର, ଓ ବିପ୍ଳବାତ୍ମକ ।"

ଅନେକ ଗୁଡ଼ିଏ କାରଣ ପାଇଁ ନବ ଜାଗରଣ ସମ୍ଭବପର ହୋଇଥିଲା । ସେଥି ମଧ୍ୟରେ ଗୋଟିଏ ପ୍ରଧାନ କାରଣ ଥିଲା ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଶିକ୍ଷାର ପ୍ରସାରଲାଭ । ବିଂଶ ଶତାବ୍ଦୀର ଆରମ୍ଭ କାଳରେ ଭାରତ ହିତୈଷୀ ସି. ଏଫ୍. ଆଣ୍ଡ୍ରୁଜ (C. F. Andrews) ମତ ଦେଇଥିଲେ, "ଏବେ ପ୍ରାଚ୍ୟ ଭୂ-ଭାଗରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ବିଜ୍ଞାନ ଏପରି ଏକ ନବ ଜାଗରଣ ଆଣି ପାରିଛି, ଯାହାର ପରିସର ଚାରି ଶତାବ୍ଦୀ ପୂର୍ବେ ମଧ୍ୟଯୁଗୀୟ ଇଉରୋପରେ ଦେଖିବାକୁ ମିଳିଥିବା ଜାଗରଣ ଠାରୁ ଅଧିକତର ବ୍ୟାପକ ।"

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ, ଲର୍ଡ ଉଇଲିୟମ ବେଣ୍ଟିଙ୍କ ନାମକ ବଡ଼ଲାଟଙ୍କ ଶାସନ କାଳରେ ୧୮୩୫ ମସିହାର ପ୍ରସିଦ୍ଧ ଶିକ୍ଷାନୀତି ପ୍ରଣୀତ ହୋଇଥିଲା । ସେଥିରେ କୁହାଗଲା ଯେ, "ଭାରତର ଅଧିବାସୀମାନଙ୍କ ମଧ୍ୟରେ ଇଉରୋପୀୟ ସାହିତ୍ୟ ଓ ବିଜ୍ଞାନର ପ୍ରସାର କାର୍ଯ୍ୟ ବ୍ରିଟିଶ ସରକାରଙ୍କର ମହତ୍ ଲକ୍ଷ୍ୟ ହେବା ଉଚିତ ଏବଂ ଶିକ୍ଷା ଉଦ୍ଦେଶ୍ୟରେ ପ୍ରଦତ୍ତ ଅର୍ଥ କେବଳ ମାତ୍ର ଇଂରାଜୀ ଶିକ୍ଷା ନିମିତ୍ତ ବ୍ୟୟିତ ହେବ ।" ସେତେବେଳେ ବ୍ରିଟିଶ ସାମ୍ରାଜ୍ୟର ଶାସନ ସୁବିଧା ପାଇଁ ଚାକିରୀରେ ନିମ୍ନ ପଦସ୍ଥ ଚାକିରିରେ ଅସଂଖ୍ୟ ଭାରତୀୟ କର୍ମଚାରୀଙ୍କୁ ନିଯୁକ୍ତ ଦେବା ଆବଶ୍ୟକ ହୋଇଥାଏ । ତେଣୁ, ନିଜ ସ୍ୱାର୍ଥ ଦୃଷ୍ଟିରୁ ଇଂରେଜମାନେ ଭାରତରେ ଇଂରାଜୀ ଭାଷାରେ ଶିକ୍ଷାଦାନ ପାଇଁ ନୀତି ଗ୍ରହଣ କରିଥିଲେ । ତେଣେ, ଭାରତୀୟ ଚିନ୍ତାଶୀଳ ବ୍ୟକ୍ତିମାନେ

ଜାଣି ପାରିଥିଲେ ଯେ ଇଂରାଜୀ ଭାଷାରେ ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନ ପ୍ରସାର ହେବା ଦ୍ୱାରା ଭାରତବାସୀଙ୍କର ମଙ୍ଗଳ ସାଧିତ ହେବ । ସେହି ଦୃଷ୍ଟିରୁ ସେମାନେ ପାଶ୍ଚାତ୍ୟ ଶିକ୍ଷା ସପକ୍ଷରେ ମତପ୍ରକାଶ କଲେ । ଫଳରେ, ଦେଶର ସବୁ ଦିଗରେ ପାଶ୍ଚାତ୍ୟ ଶିକ୍ଷା ବ୍ୟାପିଗଲା । ନବ ଜାଗରଣ ପାଇଁ ସେହି ଶିକ୍ଷା ଯଥେଷ୍ଟ ଉପଯୋଗୀ ହେଲା । ଇଉରୋପୀୟ ଉଦାର ମତବାଦ, ରାଜନୈତିକ ଚିନ୍ତାଧାରା, ଫରାସୀ ରୁଷ୍ଟ ବିପ୍ଳବ ପ୍ରଭୃତି ଆନ୍ଦୋଳନର ଇତିହାସ, ତଥା ବିଜ୍ଞାନ ପ୍ରଭୃତି ଭାରତୀୟମାନଙ୍କ ଜ୍ଞାନ ରାଜ୍ୟରେ ପ୍ରବେଶ କଲା । ନୂତନ ଜ୍ଞାନ ବିଜ୍ଞାନର ପ୍ରଭାବ ଦ୍ୱାରା ଦେଶରେ ମାନସିକ ବିପ୍ଳବ ସଂଘଟିତ ହେଲା ।

ସେହିପରି ପରିବର୍ତ୍ତନ କାଳରେ ପାଶ୍ଚାତ୍ୟ ଓ ଭାରତୀୟ ପଣ୍ଡିତମାନେ ଏ ଦେଶର ପ୍ରାଚୀନ ଇତିହାସ, ସଭ୍ୟତା, ଧର୍ମ, ଦର୍ଶନ, ସାହିତ୍ୟ, ସ୍ଥାପତ୍ୟ ଓ କଳା ପ୍ରଭୃତି ଉପରେ ନୂତନ ଭାବେ ଆଲୋକପାତ କରିବାକୁ ଲାଗିଲେ । ନିଜର ବିସ୍ମୃତ ଐତିହ୍ୟ ପୁଣିଥରେ ଦେଶବାସୀଙ୍କ ମନରେ ଜାଗରିତ ହେଲା । ଅତୀତର ମହାନ ବ୍ୟକ୍ତିମାନଙ୍କର କୀର୍ତ୍ତିକଳାପ ଓ ସଭ୍ୟତାର ଗୌରବରାଜି ବିଷୟରେ ସଚେତନ ହେବା ଫଳରେ ଲୋକଙ୍କର ଆତ୍ମବିଶ୍ୱାସ ଓ ସାହସ ବୃଦ୍ଧି ପାଇଲା । ପୂର୍ବ ଗୌରବରେ ସେମାନେ ନିଜକୁ ଗୌରବାନ୍ୱିତ ମନେ କଲେ । ଲୁପ୍ତ ଗୌରବର ପୁନରୁଦ୍ଧାର ପାଇଁ ଦେଶବାସୀଙ୍କ ଆଗ୍ରହ ବଢ଼ିଲା ।

ଶିକ୍ଷା ଦୀକ୍ଷାର ପ୍ରସାର ଲାଭ କାଳରେ ମୁଦ୍ରଣ ଯନ୍ତ୍ରମାନ ସ୍ଥାପିତ ହେଲା । ଇଂରାଜୀ ଓ ଦେଶୀୟ ଭାଷାମାନଙ୍କରେ ପୁସ୍ତକ ଓ ପତ୍ର ପତ୍ରିକାମାନ ମୁଦ୍ରିତ ହେବାକୁ ଲାଗିଲା । ସମ୍ବାଦପତ୍ର ଗୁଡ଼ିକର ସଂଖ୍ୟା ବଢ଼ି ଚାଲିଲା । ଊନବିଂଶ ଶତାବ୍ଦୀର ଶେଷ ବେଳକୁ ଭାରତରେ ପାଞ୍ଚଶହରୁ ଅଧିକ ସଂଖ୍ୟକ ସମ୍ବାଦପତ୍ର ପ୍ରକାଶ ପାଉଥିବାର ଦେଖାଯାଇଥିଲା । ନବ ଜାଗରଣ ପାଇଁ ସମ୍ବାଦପତ୍ର ଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ ହୋଇଥିଲା ।

ଇଂରାଜୀ ସ୍କୁଲ କଲେଜର ସଂଖ୍ୟାବୃଦ୍ଧି, ସମ୍ବାଦପତ୍ରର ବ୍ୟାପକ ପ୍ରଚଳନ ଓ ଜ୍ଞାନ ବିଜ୍ଞାନର ଦ୍ରୁତ ପ୍ରସାର ଫଳରେ ଯେଉଁ ଜାଗରଣ ସୃଷ୍ଟିହେଲା ତାହାର ଦୁଇ ପ୍ରକାର ଫଳ ଦେଖାଗଲା । ଦେଶର ଅନେକ ଚିନ୍ତାଶୀଳ ବ୍ୟକ୍ତି ପାଶ୍ଚାତ୍ୟପନ୍ଥୀ ପ୍ରଗତିବାଦୀ ରୂପେ ନିଜ ଦେଶର ପ୍ରଚଳିତ ଆଚାରବ୍ୟବହାର,

ରୀତିନୀତି, ଧର୍ମୀୟ ଓ ସାମାଜିକ ପ୍ରଥା ଗୁଡ଼ିକ ପ୍ରତି ବିତୃଷ୍ଣା ପ୍ରକାଶ କଲେ । ଭାରତୀୟ ସମାଜକୁ ପାଶ୍ଚାତ୍ୟ ରୀତିରେ ଗଢ଼ିବା ପାଇଁ ସେମାନେ ଚିନ୍ତାକଲେ । ଇଂରେଜମାନଙ୍କ ଚାଲିଚଳନ ପ୍ରତି ଆକୃଷ୍ଟ ହୋଇ ସେମାନେ ନିଜ ସମାଜ ପ୍ରତି ତାଚ୍ଛଲ୍ୟ ପ୍ରକାଶ କଲେ । ଅପର ପକ୍ଷରେ, ଅନ୍ୟ ଚିନ୍ତାଶୀଳ ବ୍ୟକ୍ତିମାନେ ନିଜ ଦେଶର ଐତିହ୍ୟ ଓ ଧର୍ମର ମହତ୍ତ୍ୱ ଉପଲବ୍ଧି ସହ ସାମାଜିକ ଓ ଧର୍ମୀୟ ସଂସ୍କାର ପାଇଁ ଆଗ୍ରହ ଦେଖାଇଥିଲେ । ଦେଶବାସୀଙ୍କ ଭାରତୀୟତ୍ୱ ରକ୍ଷା କରିବା ସଙ୍ଗେ ସେମାନେ ନୂତନତ୍ୱ ଓ ପ୍ରଗତି ପାଇଁ ଉଦ୍ୟମ କଲେ ।

ଏହି ପ୍ରକାର ପରିବେଶ ମଧ୍ୟରେ ଦେଶରେ ସଂସ୍କାର ଆନ୍ଦୋଳନମାନ ଦେଖିବାକୁ ମିଳିଲା । ସେହି ଆନ୍ଦୋଳନ ଗୁଡ଼ିକ ପୁଣି ନବ ଜାଗରଣକୁ ଅଧିକତର ମହତ୍ତ୍ୱପୂର୍ଣ୍ଣ କଲା । ଊନବିଂଶ ଶତାବ୍ଦୀର ନବଜାଗରଣ ଓ ସଂସ୍କାର ଆନ୍ଦୋଳନ ସମାନ୍ତରାଳ ଭାବରେ ଗତି କରିବାକୁ ଲାଗିଲା ।

**ରାଜା ରାମମୋହନ ରାୟ ଓ ବ୍ରାହ୍ମ ସମାଜ**

ରାଜା ରାମମୋହନ ରାୟଙ୍କୁ ଊନବିଂଶ ଶତାବ୍ଦୀର ଭାରତୀୟ ନବ-ଜାଗରଣର ଅଗ୍ରସାରଥି ରୂପେ ବର୍ଣ୍ଣନା କରାଯାଇଛି । ଭାରତୀୟ ଶାଶ୍ୱତ ସଂସ୍କୃତି ଓ ଆଧୁନିକ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ, ଏହି ଉଭୟକୁ ମୂଳଭିତ୍ତି କରି ସେ ନବଭାରତର ଉତ୍ଥାନର ସ୍ୱପ୍ନ ଦେଖିଥିଲେ । ବ୍ରିଟିଶ ଯୁଗର ଭାରତରେ ସେ ଥିଲେ ସର୍ବପ୍ରଥମ ଧର୍ମ ଓ ସମାଜ ସଂସ୍କାରକ ।

ବଙ୍ଗଦେଶର ହୁଗୁଳି ଜିଲ୍ଲାରେ ୧୭୭୨ ଖ୍ରୀଷ୍ଟାବ୍ଦରେ ଗୋଟିଏ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ରାମମୋହନ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଘୋର ଅନ୍ଧବିଶ୍ୱାସ ଓ କୁସଂସ୍କାର ମଧ୍ୟରେ ବଙ୍ଗୀୟ ସମାଜ ବୁଡ଼ି ରହିଥିଲା । ରାମମୋହନଙ୍କୁ ମାତ୍ର ୯ ବର୍ଷ ବୟସ ବେଳକୁ ତାଙ୍କର ଦୁଇଥର ବିବାହ ସରିଥିଲା । ତାହାପରେ ପୁଣି ତୃତୀୟ ଥର ପାଇଁ ତାଙ୍କୁ ବିବାହ କରିବାକୁ ପଡ଼ିଲା । କାରଣ, ବଙ୍ଗଦେଶର କୁଳୀନ ବ୍ରାହ୍ମଣମାନଙ୍କ ମଧ୍ୟରେ ସେକାଳରେ ବହୁବିବାହ ପ୍ରଥା ପ୍ରଚଳିତ ଥାଏ । ସେ ଯୁଗର ବଙ୍ଗଦେଶରେ 'ସତୀଦାହ' ନାମକ ଗୋଟିଏ ମର୍ମନ୍ତୁଦ ପ୍ରଥା ପ୍ରଚଳିତ ଥାଏ । ରାମମୋହନ ସ୍ୱଚକ୍ଷୁରେ ନିଜ ବଡ଼ଭାଇଙ୍କ ସ୍ତ୍ରୀଙ୍କୁ ମୃତ ସ୍ୱାମୀଙ୍କ ଚିତା ଉପରେ ସତୀରୂପେ ଦଗ୍ଧୀଭୂତ

ହେବାର କରୁଣ ଦୃଶ୍ୟ ଦେଖିଥିଲେ । ଜୀବନର ପ୍ରଥମ ଅବସ୍ଥାରୁ ତାଙ୍କ ମନ ସାମାଜିକ କୁପ୍ରଥା ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଥିଲା ।

ଉପଯୁକ୍ତ ଜ୍ଞାନଲାଭ ପାଇଁ ରାମମୋହନ ସୁଯୋଗ ପାଇଥିଲେ । ସେ ପାଟନା ଠାରେ ପାରସିକ ଓ ଆରବିକ ଭାଷା ଶିକ୍ଷାକରି ଇସଲାମ ଧର୍ମ ଉପରେ ଅନେକ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ତାହାପରେ, କାଶୀ ବାରାଣସୀ ଠାରେ ସଂସ୍କୃତ ଭାଷାରେ ପାଣ୍ଡିତ୍ୟଲାଭ ପୂର୍ବକ ବେଦ, ବେଦାନ୍ତ ଓ ଉପନିଷଦର ସାରତତ୍ତ୍ୱମାନ ଜାଣିବାକୁ ପାଇଲେ । ଶିକ୍ଷାଲାଭ ପରେ ସେ ଅନେକ ସ୍ଥାନ ଭ୍ରମଣ କରିଥିଲେ । କଥିତ ଅଛି, ସେ ସୁଦୂର ତିବ୍ବତ ଦେଶକୁ ଯାଇଥିଲେ । ସେଠାରେ ବୌଦ୍ଧଧର୍ମ ଉପରେ ତାଙ୍କର ଧାରଣା ସୃଷ୍ଟି ହୋଇଥିଲା ।

ଏହିପ୍ରକାର ଅଭିଜ୍ଞତା ପରେ ରାମମୋହନ ଇଂରେଜମାନଙ୍କ ରାଜଧାନୀ କଲିକତା ନଗରୀରେ ବସବାସ କଲେ । ସେଠାରେ ସେ ପାଶ୍ଚାତ୍ୟ ପଣ୍ଡିତ ଓ ଖ୍ରୀଷ୍ଟିୟାନ ପ୍ରଚାରକମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ଅଳ୍ପ ସମୟ ମଧ୍ୟରେ ଇଂରେଜୀ ଭାଷାରେ ସେ ଦକ୍ଷତା ହାସଲ ପୂର୍ବକ ଇଉରୋପୀୟ ଚିନ୍ତାଧାରା, ଜ୍ଞାନବିଜ୍ଞାନ, ରାଜନୀତି ଓ ଦର୍ଶନ ଦ୍ୱାରା ଗଭୀରଭାବେ ପ୍ରଭାବିତ ହେଲେ । ଆଧୁନିକ ପାଶ୍ଚାତ୍ୟର ନୂତନ ଚିନ୍ତାଧାରା ଦ୍ୱାରା ଭାରତବାସୀଙ୍କର ଉପକାର ସାଧିତ ହେବ ବୋଲି ତାଙ୍କର ଧାରଣା ଦୃଢ଼ୀଭୂତ ହେଲା ।

ନିଜର ଜ୍ଞାନ ଓ ଅଭିଜ୍ଞତା ମଧ୍ୟରୁ ରାମମୋହନ ଗୋଟିଏ ନୂତନ ପ୍ରେରଣା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ନିଜର ସତ୍‌ସାହସ ବଳରେ ସେ ଶେଷରେ ରକ୍ଷଣଶୀଳ ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଧୀରେ ଧୀରେ ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରଚାରକୁ କେନ୍ଦ୍ରକରି ଗୋଟିଏ ସଂସ୍କାର ଆନ୍ଦୋଳନର ସୂତ୍ରପାତ ଘଟିଲା ।

ସନାତନ ହିନ୍ଦୁଧର୍ମର ସାରତତ୍ତ୍ୱ ତଥା ଅନ୍ୟ ସମସ୍ତ ଧର୍ମର ମୌଳିକ ତତ୍ତ୍ୱ ମଧ୍ୟରେ ଗଭୀର ସାମଞ୍ଜସ୍ୟ ରହିଛି ବୋଲି ରାମମୋହନଙ୍କର ହୃଦ୍‌ବୋଧ ହେଲା । ସେ ପ୍ରଚାର କଲେ, "ସର୍ବଶକ୍ତିମାନ ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ସ୍ଥାପନ ହେଉଛି ପ୍ରତ୍ୟେକ ଧର୍ମର ମୂଳନୀତି ।" ଏହି ବିଶ୍ୱାସକୁ ଭିତ୍ତିକରି ସେ ଧର୍ମୀୟ ସଂସ୍କାର ପାଇଁ ଅଗ୍ରସର ହେଲେ । ପ୍ରଚଳିତ ପୂଜାପଦ୍ଧତି ଓ କ୍ରିୟାକାଣ୍ଡ-

ମୂର୍ତ୍ତିଙ୍କୁ ସେ ଅବାନ୍ତର, ମୂଲ୍ୟହୀନ ଓ ଅଶୋଭନୀୟ ବୋଲି କହିଲେ । ସେ ଦର୍ଶାଇଥିଲେ ଯେ, ସନାତନ ହିନ୍ଦୁଧର୍ମ ଯେଉଁ ଅନାଦି ଅନନ୍ତ ପରମବ୍ରହ୍ମଙ୍କ ସହିତ ଆତ୍ମାର ସଂଯୋଗ ସ୍ଥାପନ ପାଇଁ ଗଭୀର ଆଧ୍ୟାତ୍ମିକ ତତ୍ତ୍ୱମାନ ପ୍ରଦାନ କରିଥିଲି, ତାହା ହିନ୍ଦୁ ମନରୁ ଲୋପ ପାଇଯାଇଛି । ତାହା ପରିବର୍ତ୍ତେ ମୂର୍ତ୍ତିପୂଜା, ପର୍ବପର୍ବାଣି ଓ ଆଡ଼ମ୍ବରପୂର୍ଣ୍ଣ ଉତ୍ସବ ଇତ୍ୟାଦି ଧର୍ମବିଶ୍ୱାସ ମଧ୍ୟରେ ସ୍ଥାନ ପାଇଛି । ରାମମୋହନ ଏକେଶ୍ୱରବାଦ ପ୍ରତି ପୁନର୍ବାର ହିନ୍ଦୁମାନଙ୍କର ଦୃଷ୍ଟି ଆକର୍ଷଣ କଲେ । ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କର ଚେତନା ବିକାଶ ପାଇଁ ତାଙ୍କର ଉଦ୍ୟମ ଚାଲିଲି । ସଭାସମିତି, ଆଲୋଚନା, ତର୍କବିତର୍କ ଓ ପତ୍ରପତ୍ରିକା ମାଧ୍ୟମରେ ସେ ତାଙ୍କର ସୁଚିନ୍ତିତ ମତମାନ ପ୍ରକାଶ କଲେ । ଧର୍ମାନ୍ଧ ବ୍ୟକ୍ତିମାନଙ୍କ ବାଧା ନ ମାନି ସେ ଜଣେ ଧର୍ମସଂସ୍କାରକ ରୂପେ ଆଗେଇ ଚାଲିଲେ । ଖ୍ରୀଷ୍ଟଧର୍ମର କୁସଂସ୍କାରଗୁଡ଼ିକୁ ମଧ୍ୟ ସେ ନିନ୍ଦା କଲେ । ଯୀଶୁଙ୍କ ପବିତ୍ର ନୀତି ଅପେକ୍ଷା ଖ୍ରୀଷ୍ଟିୟାନମାନେ କିପରି ବାହ୍ୟ ଅନ୍ଧବିଶ୍ୱାସ ପ୍ରତି ଗୁରୁତ୍ୱ ଦେଉଥିଲେ ତାହା ସେ ମୁକ୍ତକଣ୍ଠରେ ପ୍ରକାଶ କଲେ ।

ନିଜ ସଂସ୍କାର ଆନ୍ଦୋଳନକୁ ସଂଗଠିତ ଆକାର ଦେବାପାଇଁ ରାମମୋହନ ୧୮୨୮ ଖ୍ରୀଷ୍ଟାବ୍ଦରେ ବ୍ରାହ୍ମସଭା ନାମକ ଗୋଟିଏ ଅନୁଷ୍ଠାନ ସ୍ଥାପନ କଲେ । ଦୁଇବର୍ଷ ପରେ ୧୮୩୦ରେ ସେହି ସଭା ବ୍ରାହ୍ମସମାଜ ନାମରେ ପ୍ରସିଦ୍ଧ ହେଲା । ଚିରନ୍ତନ, ଚିର ଶାଶ୍ୱତ ଓ ଅପରିବର୍ତ୍ତନୀୟ ସୃଷ୍ଟିକର୍ତ୍ତାଙ୍କୁ ଆରାଧନା କରିବା ହେଲା ବ୍ରାହ୍ମସମାଜର ମୂଳ ଧର୍ମବିଶ୍ୱାସ । ସେଥିସଙ୍ଗେ, ଦୟା, ଦାନଶୀଳତା, ନୈତିକତା, ସାଧୁତା ଓ ପରହିତୈଷିତା ପ୍ରଭୃତି ସଦ୍‌ଗୁଣ ଦ୍ୱାରା ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ମାନବଧର୍ମୀ ରୂପେ ଏକତା-ବଦ୍ଧ କରିବାପାଇଁ ବ୍ରାହ୍ମସମାଜ ସଂକଳ୍ପବଦ୍ଧ ହେଲେ ।

ଧର୍ମ ସଂସ୍କାର ସହ ସମାଜ ସଂସ୍କାର ପାଇଁ ରାମମୋହନ ଉଦ୍ୟମ ଚଳାଇଲେ । ସେତେବେଳେ ହିନ୍ଦୁ ସମାଜରେ ଜାତିପ୍ରଥା ଓ ଅସ୍ପୃଶ୍ୟତା କଠୋର ଆକାର ଧାରଣ କରିଥାଏ । ରାମମୋହନ ଦର୍ଶାଇବାକୁ ଲାଗିଲେ ଯେ, ଭେଦଭାବ-ପୂର୍ଣ୍ଣ ସମାଜ ହେଉଛି ଏକ ଦୁର୍ବଳ ସମାଜ । ଜାତିର ମଙ୍ଗଳ ପାଇଁ ସେହି କଳଙ୍କିତ କୁପ୍ରଥା ଲୋପ ପାଇବା ଉଚିତ ବୋଲି ସେ ପ୍ରଚାର କଲେ ।

ସେ କାଳରେ ବଙ୍ଗ ଦେଶରେ ସତୀଦାହ ନାମକ ଗୋଟିଏ ଭୟଙ୍କର କୁସଂସ୍କାର ହିନ୍ଦୁ ଉଚ୍ଚ ସମ୍ପ୍ରଦାୟ ମଧ୍ୟରେ ପ୍ରଚଳିତ ଥାଏ । ସ୍ୱାମୀଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ 'ସତୀ' ରୂପେ ସ୍ୱାମୀଙ୍କ ଚିତାରେ ସହମରଣ ଉଦ୍ଦେଶ୍ୟରେ ଆତ୍ମବିସର୍ଜନ କରୁଥିଲେ । ରାମମୋହନ ସେହି ଅମାନୁଷିକ ପ୍ରଥାର ବିଲୋପ ସାଧନ ପାଇଁ ମତ ସୃଷ୍ଟି କଲେ । ତଦାନୀନ୍ତନ ବଡ଼ଲାଟ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ ମଧ୍ୟ ଆଇନ୍ ଦ୍ୱାରା ସତୀଦାହ ପ୍ରଥା ଲୋପ କଲେ । ନାରୀମାନଙ୍କ ପ୍ରତି ରହିଥିବା ସାମାଜିକ ଅବହେଳା ଓ ଅବିଚାରର ହ୍ରାସ କରିବା ପାଇଁ ବ୍ରାହ୍ମ ସମାଜ ଜନମତ ସୃଷ୍ଟି କଲେ । ବହୁ ବିବାହ ପ୍ରଥା ବିରୁଦ୍ଧରେ ସାମାଜିକ ଚେତନା ପ୍ରକାଶ ପାଇଲା ।

ସଂସ୍କାର ଆନ୍ଦୋଳନ ସହ ରାମମୋହନ ଭାରତୀୟ ସମାଜକୁ ଆଧୁନିକତା ଦିଗକୁ ଆଗେଇ ନେବାପାଇଁ ପଦକ୍ଷେପ ନେଇଥିଲେ । ସେ ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନର ମୂଲ୍ୟ ଉତ୍ତମ ରୂପେ ବୁଝିଥିଲେ । ସେଥିପାଇଁ ଭାରତରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ପାଇଁ ସେ ଆଗ୍ରହ ପ୍ରକାଶ କଲେ । ସେ ଦିଗରେ ନୀତି ଗ୍ରହଣ କରିବା ପାଇଁ ସେ ବ୍ରିଟିଶ ସରକାରଙ୍କୁ ନିବେଦନ ଜଣାଇ ଥିଲେ । ରାମମୋହନ ନିଜ ଚେଷ୍ଟାରେ ଦୁଇଗୋଟି ଇଂରାଜୀ ସ୍କୁଲ ସ୍ଥାପନ କରିଥିଲେ । ଶରୀରତତ୍ତ୍ୱ, ରସାୟନ ବିଦ୍ୟା, ପ୍ରାକୃତିକ ଦର୍ଶନ ଓ ବିଜ୍ଞାନର ବିବିଧ ବିଷୟର ଉପକାରିତା ଦୃଷ୍ଟିରୁ ସେସବୁ ବିଷୟରେ ଜ୍ଞାନଲାଭ ପାଇଁ ସେ ଦେଶବାସୀଙ୍କୁ ପରାମର୍ଶ ଦେଇଥିଲେ । ଭାରତବାସୀଙ୍କ ମାନସିକ ଉନ୍ନତି ଓ ସାମାଜିକ ପ୍ରଗତି ପାଇଁ ପାଶ୍ଚାତ୍ୟ ଶିକ୍ଷା ଆବଶ୍ୟକ ବୋଲି ସେ ମତପ୍ରକାଶ କରିଥିଲେ ।

ରାମମୋହନ ଥିଲେ ଜଣେ ଦୂରଦ୍ରଷ୍ଟା ସ୍ୱଦେଶଭକ୍ତ । ଦେଶରେ ରାଜନୈତିକ ଚେତନା ସୃଷ୍ଟି ପାଇଁ ସେ ସମ୍ବାଦପତ୍ରର ସ୍ୱାଧୀନତା ରକ୍ଷା କରିବାକୁ ଉଦ୍ୟମ କରିଥିଲେ । ସମ୍ବାଦପତ୍ରଗୁଡ଼ିକର କଣ୍ଠରୋଧ ନ କରିବା ପାଇଁ ସେ ବ୍ରିଟିଶ ସରକାରଙ୍କୁ ସତର୍କ କରାଇ ଦେଇଥିଲେ ।

ପାଶ୍ଚାତ୍ୟ ଜଗତରେ ପ୍ରକାଶ ପାଇଥିବା ନୂତନ ଚିନ୍ତାଧାରା, ଯଥା : ମାନବିକ ମୁକ୍ତି, ଦେଶାତ୍ମବୋଧ, ଗଣତାନ୍ତ୍ରିକ ସ୍ୱାଧୀନତା ଓ ଜାତୀୟତାବାଦ୍ ପ୍ରଭୃତି ମତମାନ ରାମମୋହନଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ସେହିସବୁ

ମୂଲ୍ୟବୋଧ ପ୍ରତି ଧ୍ୟାନ ନ ଦେଲେ ଭାରତୀୟମାନେ ସଚେତନ ହୋଇ ଉଠିବେ ବୋଲି ସେ ବିଶ୍ୱାସ କରୁଥିଲେ । କିନ୍ତୁ ପ୍ରଥମେ ସାମାଜିକ କୁସଂସ୍କାର ଓ ଧର୍ମୀୟ ଅନ୍ଧବିଶ୍ୱାସର ବନ୍ଧନରୁ ମନୁଷ୍ୟ ମନ ମୁକ୍ତ ହେବା ଉଚିତ ବୋଲି ସେ ଭାବୁଥିଲେ । ନିଜର ମନକୁ ମୁକ୍ତ ରଖିପାରିଲେ ଜାତୀୟ ମୁକ୍ତି ପାଇଁ ଚେତନା ପ୍ରକାଶ ପାଇବ ବୋଲି ସେ ଆଶା କରୁଥିଲେ । ସେଥିପାଇଁ ସଂସ୍କାର ଆନ୍ଦୋଳନ ପ୍ରତି ସେ ଗୁରୁତ୍ୱ ଦେଇଥିଲେ ।

ରାମମୋହନ ରାୟ ୧୮୩୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ଯାତ୍ରା କରିଥିଲେ । ସେ ଦେଶରେ ପଦାର୍ପଣ କରିବା ଦୃଷ୍ଟିରୁ ସେ ହେଉଛନ୍ତି ପ୍ରଥମ ଭାରତୀୟ । ଇଂଲଣ୍ଡର ବ୍ରିଷ୍ଟଲ ନାମକ ସ୍ଥାନରେ ୧୮୩୩ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ଗମନ ଘଟିଥିଲା ।

ରାମମୋହନ ରାୟଙ୍କୁ ଭାରତରେ ଆଧୁନିକତାର ଅଗ୍ରସାରଥି ବୋଲି ବିବେଚନା କରାଯାଇଥାଏ । ତାହାଙ୍କ ସମୟକୁ ନବଜାଗରଣର ଊଷାକାଳ ବୋଲି କୁହାଯାଇଛି । ତାଙ୍କ ମୃତ୍ୟୁ ପରେ ବ୍ରାହ୍ମସମାଜ ସଂସ୍କାର ଆନ୍ଦୋଳନ ଚଳାଇ ଥିଲେ । ଦ୍ୱାରକାନାଥ ଠାକୁର, ତାଙ୍କ ପୁତ୍ର ଦେବେନ୍ଦ୍ରନାଥ ଠାକୁର ଓ କେଶବ ଚନ୍ଦ୍ର ସେନ ପ୍ରଭୃତି ଚିନ୍ତାଶୀଳ ମନୀଷୀମାନେ ସେହି ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିଥିଲେ । ଘାତ ପ୍ରତିଘାତ ଓ ବାଦାନୁବାଦ ମଧ୍ୟରେ ସୁଦ୍ଧା ବ୍ରାହ୍ମ ସମାଜ ନବଚେତନା ସୃଷ୍ଟି କରିବା ପାଇଁ କ୍ଷମ ହୋଇଥିଲେ ।

**ଦୟାନନ୍ଦ ସରସ୍ୱତୀ ଓ ଆର୍ଯ୍ୟ ସମାଜ**

ଊନବିଂଶ ଶତାବ୍ଦୀରେ ଅନ୍ୟ ଏକ ସଂସ୍କାର ଆନ୍ଦୋଳନ ଆରମ୍ଭ କରିଥିଲେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ବୈଦିକ ଆର୍ଯ୍ୟ ସଂସ୍କୃତିର ଆଦର୍ଶ ଅନୁଯାୟୀ ହିନ୍ଦୁ ସମାଜକୁ ପୁନର୍ଜୀବିତ କରିବା ଥିବା ତାଙ୍କର ଲକ୍ଷ୍ୟ । ବିଦେଶୀ ଧର୍ମ ଦ୍ୱାରା ପ୍ରଭାବିତ ନ ହୋଇ, ଅଥଚ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ ମଧ୍ୟରୁ ନୂତନକୁ ଗ୍ରହଣ କରି, ସେ ଭାରତୀୟମାନଙ୍କର ପୁନର୍ଜାଗରଣ ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସେହି ଉଦ୍ଦେଶ୍ୟରେ ସେ ଆର୍ଯ୍ୟସମାଜ ନାମକ ସଂଗଠନ ପ୍ରତିଷ୍ଠା କରିଥିଲେ ।

୧୮୨୪ ଖ୍ରୀଷ୍ଟାବ୍ଦରେ ଗୋଟିଏ ନୈଷ୍ଠିକ ଶିବ-ଉପାସକ ପରିବାରରେ ଦୟାନନ୍ଦ ଜନ୍ମଗ୍ରହଣ କରିଥିଲେ । ଶୈଶବ କାଳରୁ ତାଙ୍କ ଜ୍ଞାନପିପାସା

ଦେଖିବାକୁ ମିଳୁଥିଲା । ସଂସ୍କୃତ ଭାଷାରେ ପାଣ୍ଡିତ୍ୟଲାଭ ସହିତ ସେ ବେଦ ମୁଖସ୍ଥ ରଖିବାକୁ ସମର୍ଥ ହୋଇଥିଲେ । ଅଥଚ, ପୂଜାପଦ୍ଧତି ପ୍ରତି ତାଙ୍କର ସନ୍ଦେହ ଆସିଥିଲା । ଦିନେ ସେ ଶିବଙ୍କ ମୂର୍ତ୍ତି ପୂଜା କରୁଥିଲା ବେଳେ ତାଙ୍କ ମନକୁ ପ୍ରଶ୍ନ ଆସିଲା, ଏହି ମୂର୍ତ୍ତି କ'ଣ ପ୍ରକୃତ ମହାଦେବ ? ତାଙ୍କର ଆତ୍ମ-ପ୍ରତ୍ୟୟ ଘଟିଲା ଯେ ମୂର୍ତ୍ତିପୂଜା ନିରର୍ଥକ । ନିରାକାର ପରମବ୍ରହ୍ମଙ୍କୁ ଆକାର ଦେବା ଉଚିତ ନୁହେଁ । ହିନ୍ଦୁ ଧର୍ମର ପୌତ୍ତଳିକତା ବିରୁଦ୍ଧରେ ତାଙ୍କ ମନ ବିଦ୍ରୋହୀ ହୋଇ ଉଠିଲା । ସତ୍ୟର ସନ୍ଧାନ ପାଇଁ ସେ ମାତ୍ର ୨୧ ବର୍ଷ ବୟସରେ ଗୃହତ୍ୟାଗ ଦ୍ୱାରା ସନ୍ନ୍ୟାସବ୍ରତ ଗ୍ରହଣ କଲେ ।

ଦୟାନନ୍ଦଙ୍କ ବିଶ୍ୱାସ ଜନ୍ମିଲା ଯେ, ବେଦ ମଧ୍ୟରେ ହିଁ ପ୍ରକୃତ ସତ୍ୟ ଓ ପରମ ଜ୍ଞାନ ନିହିତ ରହିଛି । ପରବର୍ତ୍ତୀ କାଳର ଶାସ୍ତ୍ର ପୁରାଣମାନ କେବଳ କଳ୍ପନା ଜଳ୍ପନା ମଧ୍ୟରେ ପ୍ରକୃତ ଧର୍ମଜ୍ଞାନକୁ ଲୁକ୍‌କାୟିତ କରି ଦେଇଛି । ବେଦ ହେଉଛି ପ୍ରାଚୀନତମ ଓ ପବିତ୍ରତମ ଆଧ୍ୟାତ୍ମିକ ସାହିତ୍ୟ । ସେଥି ମଧ୍ୟରେ ରହିଛି ଶାଶ୍ୱତ ଓ ଚିରନ୍ତନ ସତ୍ୟ । ବୈଦିକ ଋଷିମାନେ ପରମେଶ୍ୱରଙ୍କୁ ନିରାକାର ବୋଲି ଜାଣିଥିଲେ । ପ୍ରକୃତିର ରୂପ ମଧ୍ୟରେ ସେମାନେ ଈଶ୍ୱରସତ୍ତା ଉପଲବ୍‌ଧି କରିଥିଲେ । ବୈଦିକ ସମାଜ ଥିଲା ଆଦର୍ଶ ଓ ପବିତ୍ର ସମାଜ । କର୍ମ ଅନୁସାରେ ମନୁଷ୍ୟମାନଙ୍କୁ ଚାରି ଗୋଟି ବିଭାଗରେ ବିଭକ୍ତ କରାଯାଇଥିଲା ସତ୍ୟ, କିନ୍ତୁ ବୈଦିକ ସମାଜରେ ଜାତିପ୍ରଥା ବା ଅସ୍ପୃଶ୍ୟତା ନ ଥିଲା । ଦୟାନନ୍ଦଙ୍କ ହୃଦ୍‌ବୋଧ ହେଲା ଯେ, କାଳକ୍ରମେ ବୈଦିକଯୁଗର ଉଚ୍ଚତର ମୂଲ୍ୟବୋଧମାନ ଲୋପ ପାଇଯାଇଛି । ଧର୍ମ ନାମରେ କୁସଂସ୍କାର ସ୍ଥାନ ପାଇଛି । ମାନବିକ ଐକ୍ୟ ପରିବର୍ତ୍ତେ ସାମାଜିକ ଭେଦାଭେଦ ଦେଖା ଦେଇଛି । ଫଳରେ ଆର୍ଯ୍ୟ ଧର୍ମ ନିଷ୍ପ୍ରଭ ଓ ଆର୍ଯ୍ୟ ସମାଜ ହୀନପ୍ରଭ ହୋଇଯାଇଛି ।

ଏହି ବିଶ୍ୱାସକୁ ମୂଳଭିତ୍ତି କରି ଦୟାନନ୍ଦ ବୈଦିକ ଆଦର୍ଶମାନ ପୁନରୁଦ୍ଧାର କରିବା ପାଇଁ ଆଶା ବାନ୍ଧିଥିଲେ । ତେଣୁ ତାଙ୍କ ସଂସ୍କାର ଆନ୍ଦୋଳନର ମୁଖ୍ୟ ଆହ୍ୱାନ ହୋଇଥିଲା "ବେଦକୁ ଫେରିଯାଅ" **(Back to the Vedas)** ।

ନିଜର ବିଶ୍ୱାସମାନ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଦୟାନନ୍ଦ ୧୮୭୫ ମସିହାରେ ବୋମ୍ବେ ନଗରୀରେ ଆର୍ଯ୍ୟ ସମାଜ ସ୍ଥାପନ କଲେ । ଅଳ୍ପ

ସମୟ ମଧ୍ୟରେ ପଞ୍ଜାବର ଲାହୋର ଠାରେ ଆର୍ଯ୍ୟ ସମାଜର ଅନ୍ୟ ଗୋଟିଏ ଶାଖା ପ୍ରତିଷ୍ଠିତ ହେଲା । ସନାତନ ଧର୍ମର ମୂଳ ତତ୍ତ୍ୱ ଉପରେ ଗୁରୁତ୍ୱ ଦେବା ହେଲା ଆର୍ଯ୍ୟ ସମାଜର ପ୍ରଧାନ ଲକ୍ଷ୍ୟ । ସର୍ବଶକ୍ତିମାନ ଅନାଦି ଅନନ୍ତ ନିରାକାର ସର୍ବମୟ ପରମେଶ୍ୱରଙ୍କ ଉପରେ ଅଗାଧ ବିଶ୍ୱାସ ସ୍ଥାପନ ଓ ବେଦକୁ ପରମଜ୍ଞାନ ରୂପେ ଗ୍ରହଣ କରିବା ପାଇଁ ଆର୍ଯ୍ୟ ସମାଜ ଆହ୍ୱାନ ଦେଲେ ।

ଆଧ୍ୟାତ୍ମିକ ଚେତନା ଦ୍ୱାରା ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସେମାନଙ୍କ ଶାରୀରିକ ଓ ମାନସିକ ଉନ୍ନତି ପାଇଁ ଆର୍ଯ୍ୟସମାଜ ତତ୍ପର ହୋଇ ଉଠିଥିଲେ । କ୍ରମେ କ୍ରମେ ପଶ୍ଚିମ ଭାରତ ଓ ଉତ୍ତର ଭାରତର ନାନା ସ୍ଥାନରେ ଆର୍ଯ୍ୟ ଆନ୍ଦୋଳନ ବ୍ୟାପିଗଲା । ନିଜସ୍ୱ ପରମ୍ପରା ଗୁଡ଼ିକର ମୂଳଭିତ୍ତି ଉପରେ ଭାରତବାସୀଙ୍କୁ ପ୍ରଗତି ଦିଗକୁ ଆଗେଇ ନେବା ପାଇଁ ଯୋଜନା ଚାଲିଲା । ଆର୍ଯ୍ୟସମାଜ ବିଶ୍ୱାସ କରିଥିଲେ ଯେ ସ୍ୱଧର୍ମ ଓ ସ୍ୱସଂସ୍କୃତିର ସୁରକ୍ଷା ସହିତ ଆଧୁନିକ ବିଶ୍ୱର ନୂତନ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବା ଆବଶ୍ୟକ ।

ଉପରୋକ୍ତ ଚିନ୍ତା ଅନୁଯାୟୀ ପ୍ରାଚୀନ ବୈଦିକ ପଦ୍ଧତି ଅନୁସରଣ ଦ୍ୱାରା 'ଗୁରୁକୁଳ'ମାନ ସ୍ଥାପନ କରାଗଲା । ସେହି ଅନୁଷ୍ଠାନ ଗୁଡ଼ିକରେ ସଂସ୍କୃତ ଓ ହିନ୍ଦୀ ଭାଷାରେ ବୈଦିକ ଜ୍ଞାନ ସହିତ ଆଧୁନିକ ବିଜ୍ଞାନ ଓ କଳା ବିଷୟକ ଉଚ୍ଚତର ଶିକ୍ଷା ପ୍ରଦାନ କରାଗଲା । ଛାତ୍ରମାନଙ୍କର ସୁନ୍ଦର ସ୍ୱାସ୍ଥ୍ୟ ଓ ଉତ୍ତମ ଚରିତ୍ର ଗଠନ ଥିଲା ଗୁରୁକୁଳ ଶିକ୍ଷାର ପ୍ରଧାନ ଲକ୍ଷ୍ୟ । ଯୁବପ୍ରାଣରେ ଦେଶାତ୍ମ-ବୋଧ, ଜନସେବା ଓ ନୈତିକ ମୂଲ୍ୟବୋଧ ପ୍ରତି ଭାବ ସଞ୍ଚାରଣ କରିବା ପାଇଁ ଧ୍ୟାନ ଦିଆଗଲା । ହରଦ୍ୱାର ନିକଟବର୍ତ୍ତୀ କାଙ୍ଗ୍ରା ନାମକ ସ୍ଥାନରେ ସ୍ଥାପିତ ହୋଇଥିବା ଗୁରୁକୁଳ ଏକ ବିଶିଷ୍ଟ ଶିକ୍ଷାକେନ୍ଦ୍ର ରୂପେ ଖ୍ୟାତି ଲାଭ କଲା ।

ଆର୍ଯ୍ୟସମାଜ ଜନହିତକର ଯୋଜନାମାନ ହାତକୁ ନେଇଥିଲେ । ଅନାଥାଶ୍ରମ, ବିଧବାଶ୍ରମ ଓ ସେବା ଅନୁଷ୍ଠାନମାନ ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିଲା । ସେଥିସଙ୍ଗେ ପତିତ ଓ ତଥାକଥିତ ଅସ୍ପୃଶ୍ୟମାନଙ୍କୁ ଉଚ୍ଚତର ଜାତିମାନଙ୍କ ସମାନ ସ୍ତରକୁ ଆଣିବା ପାଇଁ ଉଦ୍ୟମ କରାଗଲା ।

ଦୟାନନ୍ଦ ସରସ୍ୱତୀ ୧୮୮୩ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ତାହାଙ୍କ ମୃତ୍ୟୁ ପରେ ଆର୍ଯ୍ୟସମାଜର କାର୍ଯ୍ୟକଳାପ ଆଗେଇ ଚାଲିଲା ।

**ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ ଓ ଆଧ୍ୟାତ୍ମିକ ଜାଗରଣ**

ଧର୍ମ ଓ ସମାଜ ସଂସ୍କାର ପାଇଁ ଆନ୍ଦୋଳନମାନ ଚାଲିଥିଲା ବେଳେ ନବଭାରତର ଉତ୍ଥାନ ପାଇଁ ଆଧ୍ୟାତ୍ମିକ ଜାଗରଣର ମଧ୍ୟ ଆବଶ୍ୟକତା ରହିଥିଲା । ସେହି ଜାଗରଣର ପୁରୋଧା ହୋଇଥିଲେ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦ ।

**ରାମକୃଷ୍ଣ ପରମହଂସ**—୧୮୩୬ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶର ହୁଗୁଳି ଜିଲ୍ଲାରେ ଗୋଟିଏ ବ୍ରାହ୍ମଣ ପରିବାରରେ ପରମହଂସ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଜଣେ ଦିବ୍ୟ ଶକ୍ତିସମ୍ପନ୍ନ ଅସାଧାରଣ ପୁରୁଷ । ଗଭୀର ଈଶ୍ୱର ଭକ୍ତି, ଯୋଗ ସାଧନା, ଧ୍ୟାନ ଓ ଅତି-ପ୍ରାକୃତିକ ଚେତନା ଦ୍ୱାରା ସେ ଆଧ୍ୟାତ୍ମିକ ଶକ୍ତି ଆହରଣ କରିଥିଲେ । ତାଙ୍କର ଅଲୌକିକ ବ୍ୟକ୍ତିତ୍ୱ ଦ୍ୱାରା ଅନେକେ ପ୍ରଭାବିତ ହୋଇଥିଲେ । ଧର୍ମପରାୟଣ ବ୍ୟକ୍ତିଙ୍କ ମନରେ ସେ କାଳରେ ଅନେକ ପ୍ରକାର ଦ୍ୱନ୍ଦ୍ୱ ଦେଖା ଦେଇଥାଏ । ସଂସ୍କାରବାଦୀମାନେ ମୂର୍ତ୍ତି ପୂଜା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥାନ୍ତି । ହିନ୍ଦୁ ଧର୍ମର ବାହ୍ୟ ରୀତିନୀତି ପ୍ରତି ଆସ୍ଥା ହରାଇ କେହି କେହି ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହେଉଥାନ୍ତି । ସଂସ୍କାରକ ଓ ପ୍ରଗତିପନ୍ଥୀ ପାଶ୍ଚାତ୍ୟ ଶିକ୍ଷିତମାନଙ୍କ ବିଦ୍ରୂପ ଫଳରେ ହିନ୍ଦୁ ଧର୍ମର ସମ୍ମାନ ହାନି ଘଟୁଥାଏ । ଏହି ପ୍ରକାର ପରିବେଶ ମଧ୍ୟରେ ରାମକୃଷ୍ଣ ପରମହଂସ ହିନ୍ଦୁ ପ୍ରାଣରେ ନୂତନ ଭାବେ ଆଧ୍ୟାତ୍ମିକ ଆତ୍ମବିଶ୍ୱାସ ପୁନରୁଜ୍ଜୀବିତ କରାଇଥିଲେ ।

ସେ କହିଥିଲେ ଯେ, ପ୍ରେମ ଓ ଭକ୍ତି ବଳରେ ଯେ କୌଣସି ଉପାୟରେ ଭଗବାନଙ୍କୁ ଉପଲବ୍ଧି କରିବା ସମ୍ଭବ । ଈଶ୍ୱର ହେଉଛନ୍ତି ସମସ୍ତ ପ୍ରକାର ଚିନ୍ତା, କଳ୍ପନା ଓ ବର୍ଣ୍ଣନାର ବହିର୍ଭୂତ ପରମଶକ୍ତି । ସେ ଅନାଦି, ଅନନ୍ତ ଓ ନିରାକାର । ଅଥଚ, ପ୍ରେମ ଓ ଭକ୍ତି ଦ୍ୱାରା ତାଙ୍କୁ ମୂର୍ତ୍ତି ମଧ୍ୟରେ ମଧ୍ୟ ଚିନ୍ତା କରାଯାଇ ପାରିବ । କାରଣ, ସେ ହେଉଛନ୍ତି ଆକାର ମଧ୍ୟରେ ନିରାକାର । ସାକାର ବା ନିରାକାର, ଯେଉଁ ଭାବରେ ହେଉ, ତାଙ୍କୁ ଭକ୍ତି କରିବା ହେଉଛି ମନୁଷ୍ୟର ଧର୍ମ । ସେ କହିଥିଲେ, "ଭଗବାନ ନିରାକାର ବୋଲି ଯେଉଁମାନେ ବିଶ୍ୱାସ କରନ୍ତି, ସେମାନେ ଭଗବାନଙ୍କୁ ଯେପରି ପାଇଥାନ୍ତି, ଠିକ୍ ସେହିପରି ଅନ୍ୟମାନେ ମଧ୍ୟ ପାଇଥାନ୍ତି—ଯେଉଁମାନେ ବିଶ୍ୱାସ କରନ୍ତି ଯେ, ତାଙ୍କର ଆକାର ରହିଛି । ବିଶ୍ୱାସ ଓ ଆତ୍ମସମର୍ପଣ ହେଉଛି ଦୁଇଟି ପ୍ରକୃତ ମୂଳ ବସ୍ତୁ ।"

ରାମକୃଷ୍ଣ ଉଦାର ମାନବପ୍ରୀତି ଉପରେ ଗୁରୁତ୍ୱ ଦେଇଥିଲେ । ଧର୍ମ ହେଉଛି ମନୁଷ୍ୟ ମନୁଷ୍ୟ ମଧ୍ୟରେ ମିଳନ ପାଇଁ ଗୋଟିଏ ମାର୍ଗ, ବିଭେଦ ପାଇଁ ନୁହେଁ । ସତ୍ୟର ସନ୍ଧାନ ହିଁ ଧର୍ମ । ସବୁ ଧର୍ମର ମୂଳତତ୍ତ୍ୱ ମଧ୍ୟ ଏକ । ସାମ୍ପ୍ରଦାୟିକ ମନୋଭାବ ଓ ଜାତିଗତ ଭେଦଭାବ ହେଉଛି ଧର୍ମଭାବର ବିପରୀତ ଗୁଣ । ରାମକୃଷ୍ଣ ହିନ୍ଦୁ ସମାଜର ଏକତା ପାଇଁ ଆଧ୍ୟାତ୍ମିକ ପ୍ରେରଣା ସୃଷ୍ଟି କରିଥିଲେ । ଯେଉଁମାନେ ମୂର୍ତ୍ତିପୂଜା ପ୍ରତି ଘୃଣା କରୁଥିଲେ ସେମାନଙ୍କୁ ସେ ଶିକ୍ଷା ଦେଇଥିଲେ ଯେ, ମୂର୍ତ୍ତିପୂଜକ ନ ହୋଇ ମଧ୍ୟ ସେମାନେ ପବିତ୍ର ହିନ୍ଦୁ ଭାବରେ ଜୀବନଯାପନ କରିପାରିବେ ।

ପୃଥିବୀର ସବୁ ଧର୍ମ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ରହିଛି ବୋଲି ରାମକୃଷ୍ଣ ଦର୍ଶାଇ ଥିଲେ । ସମୁଦ୍ର ଯେପରି ଏକ, ଅଥଚ ସେଥି ପ୍ରତି ପ୍ରବାହିତ ହେଉଥିବା ନଦୀମାନ ପୃଥକ, ସେହିପରି ସତ୍ୟ ହେଉଛି ଏକ, ବିଭିନ୍ନ ଧର୍ମ ହେଉଛି ସେହି ସତ୍ୟ ଦିଗରେ ପ୍ରବାହିତ ନଦୀ ସ୍ୱରୂପ । ଆଧ୍ୟାତ୍ମିକ ଚେତନା ବଳରେ ସବୁ ଧର୍ମର ମନୁଷ୍ୟ ଏକାକାର ହୋଇ ପାରିବେ ବୋଲି ସେ କହିଥିଲେ ।

ପରମହଂସଙ୍କ ବାଣୀ ତତ୍କାଳୀନ ଶିକ୍ଷିତ ତଥା ସାଧାରଣ ମନୁଷ୍ୟ ପ୍ରାଣରେ ଧର୍ମଚେତନା ଜାଗରଣ କରିଥିଲା । ସବୁ ଶ୍ରେଣୀର ଲୋକେ ତାଙ୍କ ମତ ମଧ୍ୟରେ ଆଧ୍ୟାତ୍ମିକତାର ଆଲୋକ ଦେଖିଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲେ ନରେନ୍ଦ୍ରନାଥ ଦତ୍ତ ନାମକ ଜଣେ ପାଶ୍ଚାତ୍ୟ ଶିକ୍ଷିତ ଯୁବକ । ଇତିହାସରେ ସେ ସ୍ୱାମୀ ବିବେକାନନ୍ଦ ନାମରେ ପ୍ରସିଦ୍ଧ । ୧୮୮୬ ଖ୍ରୀଷ୍ଟାବ୍ଦରେ ପରମହଂସଙ୍କର ଦେହାବସାନ ଘଟିଥିଲା । ଗୁରୁଙ୍କ ମୃତ୍ୟୁ ପରେ ବିବେକାନନ୍ଦ ସାରା ଭାରତରେ ଓ ଭାରତ ବାହାରେ ଭାରତୀୟ ଆଧ୍ୟାତ୍ମିକତାର ବାର୍ତ୍ତାବହ ରୂପେ ଭୂମିକା ଗ୍ରହଣ କରିଥିଲେ ।

**ସ୍ୱାମୀ ବିବେକାନନ୍ଦ**—୧୮୬୩ ଖ୍ରୀଷ୍ଟାବ୍ଦରେ କଲିକତା ନଗରୀରେ ନରେନ୍ଦ୍ରନାଥ ଜନ୍ମ ଗ୍ରହଣ କରିଥିଲେ । ସେ କାଳରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଭାରତୀୟ ଯୁବକମାନେ ନିଜ ଦେଶର ଧର୍ମ ଓ ସଂସ୍କୃତି ପ୍ରତି ଅନାଗ୍ରହ ଦେଖାଉଥିଲେ । ବୈଜ୍ଞାନିକ ମନୋଭାବ ସହ ଯୁକ୍ତିବାଦୀ ଓ ହେତୁବାଦୀ ରୂପେ ସେମାନେ ଧର୍ମବିଶ୍ୱାସ ପ୍ରତି ସନ୍ଦେହ ପ୍ରକାଶ କରୁଥିଲେ । ନରେନ୍ଦ୍ରନାଥ ମଧ୍ୟ

ସେହିମାନଙ୍କ ପରି ପାଶ୍ଚାତ୍ୟ ପନ୍ଥୀ ରୂପେ ବଢ଼ି ଉଠିଥିଲେ । କଲିକତା ସ୍କଟିଶ୍ ଚର୍ଚ୍ଚ କଲେଜରୁ ସେ ଦର୍ଶନ ଶାସ୍ତ୍ରରେ ବି. ଏ. ପାଶ୍ କରିଥିଲେ । ଜଣେ ପ୍ରଗତିବାଦୀ ଯୁବକ ଭାବେ ସେ ପ୍ରଥମେ ବ୍ରାହ୍ମସମାଜର ଆଦର୍ଶ ଦ୍ୱାରା ପ୍ରଭାବିତ ହୋଇଥିଲେ ।

ସେହିପରି ମାନସିକ ଅବସ୍ଥା ବେଳେ ଦିନେ ସେ ରାମକୃଷ୍ଣ ପରମହଂସଙ୍କର ସାକ୍ଷାତ ଲାଭ କରିଥିଲେ । ସେହି ଘଟଣା ତାଙ୍କ ଜୀବନର ଗତିପଥରେ ପରିବର୍ତ୍ତନ ଆଣିଦେଲା । ଦିବ୍ୟ ଶକ୍ତି ଓ ଦିବ୍ୟ ଜ୍ଞାନର ପରିଚୟ ପାଇ ସେ ପରମହଂସଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେହିଠାରୁ ସେ ହେଲେ ବିବେକାନନ୍ଦ । ରାମକୃଷ୍ଣଙ୍କର ପରଲୋକ ଗମନ ପରେ ବିବେକାନନ୍ଦ ସନ୍ନ୍ୟାସବ୍ରତ ଅବଲମ୍ବନ ପୂର୍ବକ ପ୍ରଚାର କାର୍ଯ୍ୟରେ ଅଗ୍ରସର ହେଲେ ।

ବ୍ରିଟିଶ ଶାସନର ଗୁରୁଭାର ତଳେ ଭାରତୀୟ ସମାଜ ସେତେବେଳେ ମ୍ରିୟମାଣ ଅବସ୍ଥାରେ ରହିଥାଏ । ପରାଧୀନତା ରୂପକ ଦାସତ୍ୱ, ଅଜ୍ଞତା ଓ ଦାରିଦ୍ର୍ୟ ଫଳରେ ଦେଶବାସୀଙ୍କର ଆତ୍ମାଭିମାନ ଲୁପ୍ତପ୍ରାୟ ଅବସ୍ଥାରେ ଥାଏ । ଜନ୍ମଭୂମିର ସେପରି ଅବସ୍ଥା ବିବେକାନନ୍ଦଙ୍କୁ ମର୍ମାହତ କରିଥିଲା । ଜାତି ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିବା ପାଇଁ ସେ ଆଧ୍ୟାତ୍ମଜ୍ଞାନ ଜାଗ୍ରତ କରିବାକୁ ପ୍ରୟାସ କଲେ । ସନ୍ନ୍ୟାସୀ ଭାବରେ ସେ ହିମାଳୟ ପାଦଭୂମିର ଗହନ ଅରଣ୍ୟାନୀ ମଧ୍ୟରେ ଦୀର୍ଘ ଛଅ ବର୍ଷ ସମୟ ବିତାଇଥିଲେ । ଆହିମାଦ୍ରି-କୁମାରିକା ସେ ଜଣେ ଦିବ୍ୟଜ୍ଞାନୀ ସାଧକ ରୂପେ ଭ୍ରମଣ କରିବା ସଙ୍ଗେ ଆଧ୍ୟାତ୍ମଜ୍ଞାନ ପ୍ରଚାର କଲେ । ତାଙ୍କର ଅବିରାମ ଭ୍ରମଣ, ବାଗ୍ମିତା, ପାଣ୍ଡିତ୍ୟ ଓ ବ୍ୟକ୍ତିତ୍ୱ ଅଗଣିତ ନରନାରୀଙ୍କୁ ପ୍ରଭାବିତ କଲା । ନିଜ ପ୍ରଚାର ଓ ଭ୍ରମଣ କାଳରେ ବିବେକାନନ୍ଦ ଶାଶ୍ୱତ ଭାରତର ଅନ୍ତରାତ୍ମାର ପରିଚୟ ପାଇଥିଲେ । ସେହି ପରିଚୟ ଦ୍ୱାରା ସେ ଦେଶବାସୀଙ୍କୁ ଅନୁପ୍ରାଣିତ କରିବାକୁ ଲାଗିଲେ ।

ନିଜର ଜ୍ଞାନଦୀପ୍ତ ଯୁକ୍ତି ଦ୍ୱାରା ବିବେକାନନ୍ଦ ପାଶ୍ଚାତ୍ୟ ଶିକ୍ଷିତମାନଙ୍କ ଆଗରେ ସ୍ୱଧର୍ମର ମହତ୍ତ୍ୱ ପ୍ରତିପାଦନ କରିପାରିଲେ । ଆଧ୍ୟାତ୍ମିକ ତତ୍ତ୍ୱମାନ ବ୍ୟାଖ୍ୟା କରି ଜନସାଧାରଣଙ୍କୁ ସେ ମୋହିତ କରିଥିଲେ । ପ୍ରକୃତ ଧର୍ମର ସନ୍ଧାନ ପାଇଁ ସେ ମାର୍ଗ ପ୍ରଦର୍ଶନ କଲେ । ଅବିଳମ୍ବେ ତାଙ୍କର ଖ୍ୟାତି ସାରା

ଦେଶରେ ବ୍ୟାପି ଯାଇଥିଲା । ନବଭାରତର ଆଧ୍ୟାତ୍ମିକ ଜାଗରଣ ପାଇଁ ସତେଯେପରି ସେ ଥିଲେ ଜଣେ ଯୁଗଜନ୍ମା ପୁରୁଷ ।

୧୮୯୩ ଖ୍ରୀଷ୍ଟାବ୍ଦରେ ଆମେରିକା ଯୁକ୍ତରାଷ୍ଟ୍ରର ସିକାଗୋ ସହରରେ ଅନୁଷ୍ଠିତ ହୋଇଥିବା ବିଶ୍ୱ ଧର୍ମ ସମ୍ମିଳନୀରେ ବିବେକାନନ୍ଦ ଭାରତୀୟ ହିନ୍ଦୁ-ଧର୍ମର ପ୍ରତିନିଧି ରୂପେ ଯୋଗଦାନ କରିଥିଲେ । ସେଠାରେ ଅଭିନବ ବାଗ୍ମିତା ବଳରେ ସେ ପୃଥିବୀର ପ୍ରାଚୀନତମ ଧର୍ମର ଅନ୍ତର୍ନିହିତ ସାରତତ୍ତ୍ୱମାନ ବ୍ୟାଖ୍ୟା କରି ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ । ସବୁ ଧର୍ମ ପ୍ରତି ସହନଶୀଳତା ଓ ସମ୍ମାନ ପ୍ରଦର୍ଶନ ପୂର୍ବକ ସେ ଦର୍ଶାଇଥିଲେ ଯେ, ବିଭିନ୍ନ ନଦନଦୀ ଯେପରି ସାଗର ଗର୍ଭରେ ଲୟପ୍ରାପ୍ତ ହୋଇଥାଏ, ସେହିପରି ବିଭିନ୍ନ ଧର୍ମ ମଧ୍ୟ ଭଗବତ୍ ପ୍ରାପ୍ତି ଲକ୍ଷ୍ୟରେ ଗତି କରିଥାଏ । ସନାତନ ଆର୍ଯ୍ୟ ଧର୍ମର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ସେ ପାଶ୍ଚାତ୍ୟବାସୀଙ୍କୁ ଦର୍ଶାଇଥିଲେ ଯେ, ସେହି ଧର୍ମର ଅଗାଧ ଗର୍ଭରୁ ବୌଦ୍ଧଧର୍ମର ଜନ୍ମ ଓ ବୌଦ୍ଧଧର୍ମର ପ୍ରତିଧ୍ୱନି ସ୍ୱରୂପ ଖ୍ରୀଷ୍ଟ-ଧର୍ମର ଉତ୍ପତ୍ତି ।

ଆମେରିକା ଯୁକ୍ତରାଷ୍ଟ୍ରରେ ଅବସ୍ଥାନ କାଳରେ ବିବେକାନନ୍ଦ ସେଠାରେ 'ବେଦାନ୍ତ ସୋସାଇଟି' ଗଠନ କରିଥିଲେ । ସେହି ସମିତି ବେଦ ଓ ଉପନିଷଦର ଗଭୀର ଦର୍ଶନ ପ୍ରତି ଆମେରିକାବାସୀଙ୍କର ଧ୍ୟାନ ଆକର୍ଷଣ କରିଥିଲା । ସେଠାରୁ ଫେରିବା ପଥରେ ବିବେକାନନ୍ଦ ଇଂଲଣ୍ଡ, ଫ୍ରାନ୍ସ, ସୁଇଜରଲ୍ୟାଣ୍ଡ ଓ ଜାର୍ମାନୀ ଭ୍ରମଣ କରିଥିଲେ । ସେସବୁ ଦେଶରେ ସେ ହିନ୍ଦୁ ଆଧ୍ୟାତ୍ମବାଦର ବାର୍ତ୍ତାବହ ରୂପେ ସମ୍ମାନ ପାଇଥିଲେ ।

ପାଶ୍ଚାତ୍ୟ ଜଗତର ବୈଜ୍ଞାନିକ ଓ ଭୌତିକ ଉନ୍ନତି ଦେଖି ବିବେକାନନ୍ଦ ମୁଗ୍ଧ ହୋଇଥିଲେ । ସେହିପ୍ରକାର ଉନ୍ନତି ଭାରତରେ ସଂଘଟିତ ହେବା ଉଚିତ ବୋଲି ସେ କହିଥିଲେ । ଭାରତୀୟ ଆଧ୍ୟାତ୍ମିକତା ସହ ପାଶ୍ଚାତ୍ୟ ବୈଷୟିକ କର୍ମପ୍ରେରଣା ମିଶ୍ରିତ ହୋଇପାରିଲେ ଦେଶବାସୀଙ୍କ ପରମ ମଙ୍ଗଳ ସାଧିତ ହେବ ବୋଲି ସେ ମତ ପ୍ରକାଶ କରିଥିଲେ ।

ବିବେକାନନ୍ଦ ଧର୍ମୀୟ ତତ୍ତ୍ୱମାନ ସରଳ ଭାବରେ ଲୋକଙ୍କ ଆଗରେ ଉପସ୍ଥାପନ କରିଥିଲେ । ଧର୍ମଜ୍ଞାନ ବଳରେ ମନୁଷ୍ୟର ମାନସିକ ଉତ୍ଥାନ ସମ୍ଭବ ହେବ ବୋଲି ତାଙ୍କର ବିଶ୍ୱାସ ଥିଲା । ଅଜ୍ଞତା ଅନ୍ଧକାର ଦୂର କରିବା

ପାଇଁ ଓ କୁସଂସ୍କାର ଲୋପ ପାଇଁ ତାଙ୍କର ଅଦମ୍ୟ ଉତ୍ସାହ ଥିଲା । ଆଧ୍ୟାତ୍ମିକ ବନ୍ଧନରେ ସେ ସମଗ୍ର ଜାତିକୁ ଏକତ୍ରିତ କରିବାକୁ ଚାହୁଁଥିଲେ । ମନରୁ ଭୟ, ଆଳସ୍ୟ, ହତାଶା ଓ ଦୁର୍ବଳତା ଦୂର କରିବାକୁ ସେ ଉପଦେଶ ଦେଇଥିଲେ । ଦେଶର ଗୌରବମୟ ଐତିହ୍ୟ ପ୍ରତି ସେ ଜାତିର ଧ୍ୟାନ ଆକର୍ଷଣ କରିଥିଲେ । ବିବେକାନନ୍ଦଙ୍କ ପ୍ରଚାର ବଳରେ ଭାରତବାସୀଙ୍କ ମନରେ ଜାତୀୟ ଉନ୍ମାଦନା ପ୍ରକାଶ ପାଇଥିଲା ।

ଆଧୁନିକ ଜାତୀୟତାବାଦର ଜଣେ ଆଦର୍ଶ ପ୍ରତିନିଧି ରୂପେ ବିବେକାନନ୍ଦ କାର୍ଯ୍ୟ କରିଥିଲେ । ସହନଶୀଳତା, ମାନବ-ପ୍ରୀତି ଓ ସାମାଜିକ ଐକ୍ୟଭାବ ଉପରେ ସେ ଗୁରୁତ୍ୱ ଦେଇଥିଲେ । ଆଧୁନିକତାର ପ୍ରେରଣା ଦ୍ୱାରା ସେ ଦେଶବାସୀଙ୍କୁ ପ୍ରଗତି ପଥ ଦେଖାଇଥିଲେ । ଉଦାରତା ଥିଲା ତାଙ୍କର ଏକ ସୁମହାନ ଶିକ୍ଷା । ସେ କହିଥିଲେ ଯେ, ତାଙ୍କ ସମ୍ମୁଖରେ ଆସ୍ତିକ, ନାସ୍ତିକ, ଅବିଶ୍ୱାସୀ, ବିଶ୍ୱାସୀ, ଏକେଶ୍ୱରବାଦୀ ଓ ବହୁ-ଦେବଦେବୀ-ବିଶ୍ୱାସୀ ସମସ୍ତେ ସମାନ । ସେ ଅନ୍ଧବିଶ୍ୱାସ ମୂଳରେ କୁଠାରାଘାତ କରିଥିଲେ । ତାଙ୍କ କଥାରେ, "ଅନ୍ଧବିଶ୍ୱାସୀ ମୂର୍ଖ ହେବା ଅପେକ୍ଷା ମୁଁ ବରଂ ପ୍ରତ୍ୟେକଙ୍କୁ ଉତ୍କଟ ନାସ୍ତିକ ରୂପେ ଦେଖିବାକୁ ଚାହିବି, କାରଣ ନାସ୍ତିକ ହେଉଛି ସଚେତନ ଏବଂ ତାହାଙ୍କୁ ନେଇ କିଛି କରିହେବ । କିନ୍ତୁ ଅନ୍ଧବିଶ୍ୱାସ ଯଦି ପ୍ରବେଶ କରେ, ତେବେ ମସ୍ତିଷ୍କ ବିନଷ୍ଟ ହେବ, ବିକୃତ ହେବ ଓ ଅଧଃପତନ ଜୀବନକୁ ଗ୍ରାସ କରିବ ।" ଧର୍ମାନ୍ଧ ରକ୍ଷଣଶୀଳ ହିନ୍ଦୁମାନଙ୍କୁ ବିଦ୍ରୂପ କରି ସେ କହିଥିଲେ, "ଆମର ଧର୍ମ ରହିଛି ରନ୍ଧନଶାଳା ମଧ୍ୟରେ । ଆମର ଭଗବାନ ହେଉଛନ୍ତି ରନ୍ଧନ ପାତ୍ର ଓ ଆମର ଧର୍ମ ହେଉଛି 'ମୋତେ ସ୍ପର୍ଶ କରନାହିଁ, ମୁଁ ପବିତ୍ର' ।"

ବିବେକାନନ୍ଦ ଥିଲେ ସର୍ବଧର୍ମବିଶ୍ୱାସୀ । ସେ କହିଥିଲେ, "ମୁଁ ମୁସଲମାନର ମସ୍‌ଜିଦକୁ ଯିବି, ମୁଁ ଖ୍ରୀଷ୍ଟିୟାନର ଗୀର୍ଜାକୁ ଯିବି ଓ କ୍ରୁଶ ଚିହ୍ନ ସମ୍ମୁଖରେ ନତଜାନୁ ହେବି, ମୁଁ ବୌଦ୍ଧ ମନ୍ଦିରରେ ପ୍ରବେଶ କରିବି ଓ ସେଠାରେ ବୁଦ୍ଧ ଓ ଧର୍ମର ଶରଣାଗତ ହେବି । ମୁଁ ଅରଣ୍ୟକୁ ଯାଇ ହିନ୍ଦୁ ସହିତ ଧ୍ୟାନମଗ୍ନ ହେବି ।...ଭବିଷ୍ୟତରେ ଯାହାସବୁ ଆସିବ, ସେଥିପାଇଁ ମଧ୍ୟ ମୁଁ ମୋର ହୃଦୟ ଉନ୍ମୁକ୍ତ ରଖିବି ।...ବାଇବଲ, ବେଦ, କୋରାଣ ଓ ଅନ୍ୟ ସମସ୍ତ ଧର୍ମଗ୍ରନ୍ଥର ଅଗଣିତ ପୃଷ୍ଠା ଏବଂ ଯେଉଁ ଅନିର୍ଦ୍ଦିଷ୍ଟ ସଂଖ୍ୟକ ପୃଷ୍ଠା ଆଗକୁ

ଉନ୍ମୋଚିତ ହେବାର ଅଛି, ମୋର ହୃଦୟ ସେସବୁ ପ୍ରତି ଉନ୍ମୁକ୍ତ ରହିବ ।" ଧର୍ମଗତ ଏକତା ହେଉଛି ପ୍ରଗତିର ପରିଚୟ, ଏହା ଥିଲା ତାଙ୍କର ବିଶ୍ୱାସ ।

୧୮୯୭ ଖ୍ରୀଷ୍ଟାବ୍ଦରେ ବିବେକାନନ୍ଦ 'ରାମକୃଷ୍ଣ ମିଶନ' ନାମକ ଅନୁଷ୍ଠାନ ସ୍ଥାପନ କରିଥିଲେ । ବେଦାନ୍ତ ନିହିତ ଆଧ୍ୟାତ୍ମଜ୍ଞାନ ପ୍ରଚାର କରିବା, ବିଭିନ୍ନ ଧର୍ମବିଶ୍ୱାସ ମଧ୍ୟରେ ସଂଯୋଗ ସ୍ଥାପନ କରିବା ଓ ମାନବ ସେବାକୁ ଈଶ୍ୱର ସେବା ରୂପେ ବିବେଚନା କରିବା ଥିଲା ରାମକୃଷ୍ଣ ମିଶନର ଲକ୍ଷ୍ୟ । କଲିକତାର ବେଲୁର ମଠ ସେହି ମିଶନର ମୁଖ୍ୟ କେନ୍ଦ୍ର ରୂପେ ପରିଗଣିତ ହେଲା ।

୧୯୦୨ ଖ୍ରୀଷ୍ଟାବ୍ଦରେ ମାତ୍ର ୩୯ ବର୍ଷ ବୟସରେ ସ୍ୱାମୀ ବିବେକାନନ୍ଦ ଦେହତ୍ୟାଗ କରିଥିଲେ । ଜାଗ୍ରତ ଭାରତ ପ୍ରତି ତାହାଙ୍କ ପ୍ରେରଣା ଅମୋଘ ଆୟୁଧ ରୂପେ ଦେଖିବାକୁ ମିଳିଥିଲା । ଜାତୀୟତାବାଦର ବିକାଶ ପାଇଁ ତାହାଙ୍କ ଭୂମିକା ମହାର୍ଘ ଥିଲା । ଦେଶାତ୍ମବୋଧ ଓ ଆତ୍ମପ୍ରତ୍ୟୟ ସୃଜନ କରିବା ଦିଗରେ ତାଙ୍କର ବାଣୀମାନ ମନ୍ତ୍ର ରୂପେ କାର୍ଯ୍ୟ କଲା । ବିଂଶ ଶତାବ୍ଦୀର ଭାରତବାସୀଙ୍କ ପ୍ରତି ବିବେକାନନ୍ଦ ଆଶା, ଉତ୍ସାହ ଓ ସାହସର ଉତ୍ସ ରୂପେ ସ୍ମରଣୀୟ ରହିଲେ ।

ଭାରତୀୟ ନବଜାଗରଣ ଜାତୀୟ ସଂହତି ଓ ଭବିଷ୍ୟତ ଜାତୀୟ ଆନ୍ଦୋଳନ ପାଇଁ ମାର୍ଗ ପ୍ରସ୍ତୁତ କରିଥିଲା । ଅବିଳମ୍ବେ ସେହି ଜାଗରଣର ପ୍ରଭାବ ଫଳରେ ଆଧୁନିକ ଇତିହାସରେ ଏକ ନୂତନ ଅଧ୍ୟାୟ ଉନ୍ମୋଚିତ ହେଲା ।

## ଅଷ୍ଟମ ଅଧ୍ୟାୟ

# ବ୍ରିଟିଶ ଶାସନର ପ୍ରଭାବ ଓ ଭାରତୀୟ ଜାତୀୟତାର ଅଭ୍ୟୁଦୟ

**(British Impact and Rise of Indian Nationalism)**

### ଆଧୁନିକ ଜାତୀୟତା

ଆଧୁନିକ ବିଶ୍ୱ ଇତିହାସରେ ଜାତୀୟତାବାଦ ହେଉଛି ଏକ ମହାନ ରାଜନୈତିକ ଚିନ୍ତାଧାରା । ୧୭୮୯ ମସିହାର ପ୍ରଖ୍ୟାତ ଫରାସୀ ରାଷ୍ଟ୍ରବିପ୍ଳବ ସମୟରୁ ଇଉରୋପୀୟ ଦେଶଗୁଡ଼ିକର ଅଧିବାସୀମାନେ ଜାତୀୟତାବାଦ ଦ୍ୱାରା ଗଭୀର ଭାବେ ଅନୁପ୍ରାଣିତ ହୋଇଥିଲେ । ପ୍ରତ୍ୟେକ ଅଞ୍ଚଳର ଜନସାଧାରଣ ନିଜର ଜାତୀୟ ସ୍ୱାର୍ଥ ଓ ସ୍ୱାଧୀନ ଅବସ୍ଥିତି ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ସ୍ୱେଚ୍ଛାଚାରୀ ରାଜତନ୍ତ୍ର ଏବଂ ବିଦେଶୀ ଶାସନରୁ ମୁକ୍ତିଲାଭ ପାଇଁ ସେମାନେ ଜାତୀୟ ସଂଗ୍ରାମ ଚଳାଇ ଥିଲେ । ଦେଶାତ୍ମବୋଧ ପ୍ରେରଣା ବଳରେ ଦେଶବାସୀଙ୍କ ପ୍ରାଣରେ ଜାଗ୍ରତ ହୋଇଥିବା ଐକ୍ୟ ଓ ଭ୍ରାତୃ-ଭାବ ହେଉଛି ଜାତୀୟତା ।

ଭୌଗୋଳିକ, ଐତିହାସିକ, ସାଂସ୍କୃତିକ, ଅର୍ଥନୈତିକ, ଭାବଗତ ଓ ଭାଷାଗତ ଏକତା ହେଉଛି ଜାତୀୟତାର ମୌଳିକ ଉପାଦାନ । ସେହି ଉପାଦାନଗୁଡ଼ିକୁ କେନ୍ଦ୍ରକରି ଇଉରୋପ ମହାଦେଶରେ ପୃଥକ ପୃଥକ ଜାତୀୟ ରାଷ୍ଟ୍ରମାନ ଗଠିତ ହୋଇଥିଲା ।

କାଳକ୍ରମେ ପୃଥିବୀର ଅନ୍ୟତ୍ର ଜାତୀୟ ମନୋଭାବ ପ୍ରକାଶ ପାଇଲା । ବ୍ରିଟିଶ ଶାସିତ ଭାରତବର୍ଷରେ ମଧ୍ୟ ଯଥାସମୟରେ ଜାତୀୟ ଜାଗରଣ ଦେଖିବାକୁ ମିଳିଲା ।

**ବ୍ରିଟିଶ ଶାସନର ପ୍ରଭାବ**

ଭାରତରେ ବ୍ରିଟିଶ ସାମ୍ରାଜ୍ୟର ଉତ୍ଥାନ ଓ ବିସ୍ତାରଲାଭ ହେଉଛି ଆଧୁନିକ ଯୁଗର ଏକ ଆଶ୍ଚର୍ଯ୍ୟଜନକ ଘଟଣା । ସାତ ସମୁଦ୍ର ସେପାରିରୁ ଆସିଥିବା କ୍ଷୁଦ୍ର ଗୋଟିଏ ଦ୍ୱୀପର ମୁଷ୍ଟିମେୟ ଲୋକେ ସମଗ୍ର ଭାରତୀୟ ଉପ-ମହାଦେଶକୁ ଅଧିକାର କରିପାରିଥିଲେ, ଏହା ଥିଲା ଗୋଟିଏ ଐତିହାସିକ ବିଡ଼ମ୍ବନା । ସେମାନେ ଆସିଥିଲେ ବଣିକ ରୂପେ, କିନ୍ତୁ ରହିଗଲେ ଶାସକ ଭାବେ । ବଣିକର ମାନଦଣ୍ଡ ଶେଷରେ ରାଜଦଣ୍ଡ ରୂପେ ଦେଖିବାକୁ ମିଳିଥିଲା । ସେଥିପାଇଁ ସେମାନଙ୍କ ଶ୍ରେଷ୍ଠତ୍ୱ ଅପେକ୍ଷା ଭାରତବାସୀଙ୍କ ଅନୈକ୍ୟ ହିଁ ଥିଲା ପ୍ରଧାନ କାରଣ । ବିଚ୍ଛିନ୍ନ, ବିକ୍ଷିପ୍ତ ଭାରତକୁ ସେମାନେ କ୍ରମେ କ୍ରମେ ଅଧିକାର କରିବାକୁ ସୁଯୋଗ ପାଇଥିଲେ । ୧୭୫୭ ମସିହାର ପଲାଶୀ ଯୁଦ୍ଧ ସମୟରୁ ପ୍ରାୟ ଏକ ଶତାବ୍ଦୀ ମଧ୍ୟରେ ଇଂରେଜମାନେ ହିମାଳୟ ଠାରୁ କୁମାରିକା ଓ ହିନ୍ଦୁକୁଶ ଠାରୁ ବ୍ରହ୍ମଦେଶ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷକୁ ବ୍ରିଟିଶ-ଭାରତୀୟ ସାମ୍ରାଜ୍ୟରେ ପରିଣତ କରିଥିଲେ ।

ସାମ୍ରାଜ୍ୟବାଦୀ ଇଂରେଜ ଜାତି ଏ ଦେଶର ବିପୁଳ ସମ୍ପଦ ଲୁଣ୍ଠନ କରିଥିଲେ । ଭାରତର କଞ୍ଚାମାଲ ବଳରେ ସେମାନେ ନିଜ ଦେଶରେ ଶିଳ୍ପ ବିପ୍ଳବ ସମ୍ଭବପର କଲେ । ନିମ୍ନତମ ମୂଲ୍ୟରେ ଏ ଦେଶରୁ ତୂଳା ନେଇ ଇଂଲଣ୍ଡର କଳକାରଖାନାରେ ଲୁଗା ତିଆରି କଲେ ଓ ସେହି ଲୁଗା ଭାରତୀୟ ବଜାରରେ ଉଚ୍ଚତମ ମୂଲ୍ୟରେ ବିକ୍ରୟ କଲେ । ଭାରତର ଅସଂଖ୍ୟ ଗ୍ରାମ୍ୟ କୁଟୀରଶିଳ୍ପ ଓ ହସ୍ତଶିଳ୍ପ ଧ୍ୱଂସ କରି ସେମାନେ ଇଂଲଣ୍ଡର ଶିଳ୍ପଜାତ ଦ୍ରବ୍ୟମାନ ଭାରତରେ ବିକ୍ରି କଲେ । ଏ ଦେଶର କଳକାରଖାନା ଓ ଶିଳ୍ପର ବିକାଶ ପାଇଁ ସେମାନେ କିଛି କଲେ ନାହିଁ । କୃଷିର ଉନ୍ନତି ପାଇଁ ମଧ୍ୟ ଦୃଷ୍ଟି ଦେଲେ ନାହିଁ । କ୍ରମବର୍ଦ୍ଧମାନ ଦାରିଦ୍ର୍ୟ, କ୍ରମାଗତ ଦୁର୍ଭିକ୍ଷ ଓ ଭାରତବାସୀଙ୍କର ଅକଥନୀୟ ଦୈନ୍ୟ ଦୁଃଖ ଥିଲା ବ୍ରିଟିଶ ଶାସନର ବାସ୍ତବ ରୂପ ।

ଏହି ପ୍ରକାର କୁଫଳ ମଧ୍ୟରେ ବ୍ରିଟିଶ ଶାସନର ପରିଣାମ ସ୍ୱରୂପ ଅନ୍ୟ ଗୋଟିଏ ସୁଫଳ ଦେଖିବାକୁ ମିଳିଥିଲା । ତାହା ଥିଲା ଭାରତୀୟ ଚେତନା ରାଜ୍ୟରେ ଆଧୁନିକ ଜାତୀୟତାର ଅଭ୍ୟୁଦୟ । ବ୍ରିଟିଶ ଶାସନର ପରୋକ୍ଷ ଫଳ ରୂପେ ଭାରତବାସୀମାନେ ଜାତୀୟ ଐକ୍ୟ ପ୍ରତି ସଚେତନ ହୋଇ ଉଠିଥିଲେ ।

ନିଜ ଦେଶର ଭୌଗୋଳିକ, ସାଂସ୍କୃତିକ ଓ ଭାବଗତ ଏକତାର ମୂଳଭିତ୍ତି ଉପରେ ସେମାନେ ଆଧୁନିକ ଜାତୀୟତାବାଦ ପ୍ରତି ପୂର୍ଣ୍ଣଭାବେ ଆକୃଷ୍ଟ ହେଲେ ।

ଭାରତୀୟ ଜାତୀୟତାର ବିକାଶ ପାଇଁ ବ୍ରିଟିଶ ଶାସନର ନିମ୍ନଲିଖିତ ଫଳାଫଳମାନ ପ୍ରଭାବପାତ କରିଥିଲା ।

**ରାଜନୈତିକ ଏକତା**—ସମଗ୍ର ଭାରତବର୍ଷକୁ ବ୍ରିଟିଶ-ଭାରତୀୟ ସାମ୍ରାଜ୍ୟ (British-Indian Empire)ରେ ପରିଣତ କରିବା ଥିଲା ଇଂରେଜ ଜାତିର ଏକ ଐତିହାସିକ କୃତିତ୍ୱ । ହିନ୍ଦୁକୁଶ ଠାରୁ ବ୍ରହ୍ମଦେଶ ଓ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭୌଗୋଳିକ ଭାରତକୁ ସେମାନେ ରାଜନୈତିକ ଏକତା ପ୍ରଦାନ କରିଥିଲେ । ନିଜର ସୁବିଧା ଦୃଷ୍ଟିରୁ ଇଂରେଜମାନେ ଅନେକ ଗୁଡ଼ିଏ ଦେଶୀୟ ରାଜ୍ୟକୁ ରାଜା, ମହାରାଜା, ନବାବ ଓ ନିଜାମ ଇତ୍ୟାଦିଙ୍କ ଅଧୀନରେ ରଖାଇ ଥିଲେ । କିନ୍ତୁ ସେହି ସବୁ ଅନୁଗତ ରାଜାମାନେ ବ୍ରିଟିଶ ସରକାରଙ୍କ ସାର୍ବଭୌମ କ୍ଷମତା ତଳେ ନିଜ ନିଜ ରାଜ୍ୟରେ ଶାସନ କରୁଥିଲେ । ବସ୍ତୁତଃ, ସମଗ୍ର ଭାରତ ଥିଲା ରାଜନୈତିକ ଦୃଷ୍ଟିରୁ ଗୋଟିଏ ଦେଶ । ଇଂରେଜମାନେ କଳ୍ପନା କରି ନ ଥିଲେ ଯେ, ସେହି ରାଜନୈତିକ ଏକତା ଦ୍ୱାରା ଦିନେ ଭାରତବାସୀଙ୍କ ମନରେ ଆଧୁନିକ ଜାତୀୟତା ବିକାଶଲାଭ କରିବ । ଏକ ମହାନ ଦେଶର ସନ୍ତାନ ସନ୍ତତି ଭାବରେ ଭାରତୀୟମାନେ ନିଜର ଐକ୍ୟବଦ୍ଧ ଜୀବନଧାରା ପ୍ରତି ସଚେତନ ହେବା ସଙ୍ଗେ ସାରା ଭାରତକୁ ନିଜର ଦେଶ ବୋଲି ଭାବ·ଗର୍ବ ଅନୁଭବ·କରିବାକୁ ଲାଗିଲେ ।

**ଶାସନଗତ ଏକତା**—ରାଜନୈତିକ ଏକତା ସହ ଇଂରେଜମାନେ ସାରା ଭାରତକୁ ଶାସନଗତ ଏକତା ପ୍ରଦାନ କଲେ । ସୁବିଶାଳ ସାମ୍ରାଜ୍ୟର ସବୁ ଦିଗରେ ଗୋଟିଏ ପ୍ରକାର ଶାସନ ପଦ୍ଧତି, ଆଇନ କାନୁନ୍ ଓ କୋର୍ଟ କଚେରି ଦେଖିବାକୁ ମିଳିଲା । ବଡ଼ଲାଟଙ୍କ ପାଖରୁ ଆରମ୍ଭ କରି ଗ୍ରାମ୍ୟ ଚୌକିଦାର ପର୍ଯ୍ୟନ୍ତ ସମସ୍ତେ ଗୋଟିଏ ଶାସନତନ୍ତ୍ରର ପ୍ରତିନିଧି ରୂପେ କାର୍ଯ୍ୟ କଲେ । ଆଇନ ଓ ବିଚାରର ଆଗରେ ହିନ୍ଦୁ, ମୁସଲମାନ, ବ୍ରାହ୍ମଣ, ଶୂଦ୍ର, ବଙ୍ଗାଳୀ ଓ ମାନ୍ଦ୍ରାଜୀ ସମସ୍ତେ ଥିଲେ ସମାନ । 'ଆଇନର ଶାସନ' ଆଗରେ ଆଞ୍ଚଳିକ ବା ଜାତିଗତ ପାର୍ଥକ୍ୟ ବୋଲି କିଛି ରହିଲା ନାହିଁ ।

ଶାସନକାର୍ଯ୍ୟର ସୁବିଧା ପାଇଁ ଇଂରେଜମାନେ ରେଳପଥ, ଟେଲିଗ୍ରାଫ ଓ ଆଧୁନିକ ଡାକ ବ୍ୟବସ୍ଥା ପ୍ରଚଳନ କଲେ । ତଦ୍ୱାରା ବ୍ରିଟିଶ ସାମ୍ରାଜ୍ୟବାଦ ଓ

ଶୋଷଣ ମଧ୍ୟ ଦୂରୀଭୂତ ହୋଇଥିଲା । କିନ୍ତୁ ଅପର ପକ୍ଷରେ, ଦେଶବାସୀଙ୍କର ମଧ୍ୟ ଅନେକ ଉପକାର ହେଲା । ସେମାନଙ୍କ ସାମାଜିକ ଓ ଅର୍ଥନୈତିକ ଏକତା କ୍ଷିପ୍ର ବେଗରେ ବଢ଼ି ଚାଲିଲା । ନିଜ ଘର ଓ ଛୁଆଁ ଅଛୁଆଁ ମନୋଭାବ ତ୍ୟାଗ କରି ଲୋକେ ରେଳଗାଡ଼ିରେ ଏକତ୍ର ଯାତାୟାତ କଲେ । ଶ୍ରମିକମାନେ ରେଳପଥରେ ଦୂରଦୂରାନ୍ତ ସ୍ଥାନକୁ କାମ ପାଇଁ ଯାଇପାରିଲେ । ତୀର୍ଥଯାତ୍ରୀମାନେ ଦେଶର ଚାରି ପ୍ରାନ୍ତରେ ଥିବା ଧର୍ମପୀଠମାନଙ୍କୁ ସହଜରେ ଯାତ୍ରା କଲେ । ତଦ୍ଦ୍ୱାରା, ଦେଶବାସୀଙ୍କ ମଧ୍ୟରେ ଭାବ ବିନିମୟ ସହଜ ହେଲା । ଟେଲିଗ୍ରାଫ ଓ ଡାକ ବ୍ୟବସ୍ଥା ଦ୍ୱାରା ଅଳ୍ପ ସମୟ ମଧ୍ୟରେ ଲୋକେ ଘରଆଡ଼କୁ ଖବର ପଠାଇ ପାରିଲେ । ଦୂରତ୍ୱର ଭୟ ହ୍ରାସ ପାଇ ଆସିଲା । ପରିଣାମରେ ଦେଶବାସୀଙ୍କ ମନରେ ଏକତା ଭାବ ବଢ଼ି ଚାଲିଲା ।

**ଭାଷା ଓ ଭାବଗତ ଏକତା**—ଇଂରେଜମାନେ ନିଜ ସାମ୍ରାଜ୍ୟ ପରିଚାଳନା ପାଇଁ ଭାରତୀୟମାନଙ୍କୁ ଶାସନକଳର ନିମ୍ନ ସ୍ତରଗୁଡ଼ିକରେ ନିଯୁକ୍ତ ଦେବାକୁ ଚାହୁଁଥିଲେ । ସେ ଦୃଷ୍ଟିରୁ ସେମାନେ ଇଂରାଜୀ ଭାଷା ମାଧ୍ୟମରେ ସ୍କୁଲ କଲେଜରେ ଶିକ୍ଷାଦାନ ପାଇଁ ବ୍ୟବସ୍ଥା କଲେ । ଭାରତୀୟମାନେ ଜ୍ଞାନ ଲାଭ ସଙ୍ଗେ ଚାକିରି ପାଇବା ଉଦ୍ଦେଶ୍ୟରେ ବହୁ ସଂଖ୍ୟାରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତ ହେଲେ । ଧୀରେ ଧୀରେ ଭାରତର ସବୁ ସ୍ଥାନରେ ଗୋଟିଏ ପାଶ୍ଚାତ୍ୟ ଶିକ୍ଷିତ ଗୋଷ୍ଠୀର ଉତ୍ଥାନ ଘଟିଲା । ରାଜକର୍ମଚାରୀ, ବୁଦ୍ଧିଜୀବୀ, ବିଦ୍ୱାନ୍ ଓ ଜନଶିକ୍ଷିତ ଭାରତୀୟମାନଙ୍କ ମଧ୍ୟରେ ଭାଷାଗତ ଏକତା ପ୍ରତିଷ୍ଠିତ ହେଲା । ଆଞ୍ଚଳିକ ବା ସ୍ଥାନୀୟ ଭାଷା ଗୁଡ଼ିକର ଊର୍ଦ୍ଧ୍ୱରେ ରହିଲା ରାଜଭାଷା ବା ଇଂରାଜୀ ଭାଷା । ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଇଂରାଜୀ ଭାଷାରେ ଭାବ ବିନିମୟ ଫଳରେ ସେମାନେ ଆଞ୍ଚଳିକ ଭାଷାଗତ ପାର୍ଥକ୍ୟ ଭୁଲି ବସିଲେ । ତଦ୍ଦ୍ୱାରା ଜାତୀୟ ଏକତା ବୃଦ୍ଧି ପାଇଲା ।

**ଅର୍ଥନୈତିକ ଏକତା**—ଆବହମାନ କାଳରୁ ଭାରତର ବିଭିନ୍ନ ଅଞ୍ଚଳ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଲାଗି ରହିଥାଏ । ଗୋଟିଏ ଅଞ୍ଚଳର ହସ୍ତଶିଳ୍ପ ଅନ୍ୟ ଅଞ୍ଚଳରେ ଆଦୃତ ହେଉଥାଏ । କାଶ୍ମୀରରେ ତିଆରି ହେଉଥିବା ଶାଲ୍ କୁମାରିକାରେ ବିକ୍ରି ହେଉଥାଏ । ଢାକାର ମସ୍‌ଲିନ୍ ବସ୍ତ୍ର କିମ୍ବା ବାରାଣସୀର ସିଲ୍‌କ ବସ୍ତ୍ର ସାରା ଦେଶରେ ଆଦୃତ ହେଉଥାଏ । ନାନା ପ୍ରକାର ପଣ୍ୟଦ୍ରବ୍ୟର ଆଦାନ ପ୍ରଦାନ ଥିଲା ଏ ଦେଶର ଏକ ଅର୍ଥନୈତିକ ପରମ୍ପରା ।

ବ୍ରିଟିଶ ଯୁଗରେ ରେଳପଥ ନିର୍ମିତ ହେବା ଦ୍ୱାରା ବାଣିଜ୍ୟ ବ୍ୟବସାୟ ବଢ଼ି ଚାଲିଲା । ଶିକ୍ଷାର ପ୍ରସାର ସଙ୍ଗେ ଅର୍ଥନୈତିକ ଯୋଗାଯୋଗ ବ୍ୟାପକ ହେଲା । ଗୋଟିଏ ସ୍ଥାନରେ ଦୁର୍ଭିକ୍ଷ ବା ଖାଦ୍ୟାଭାବ ଦେଖାଦେଲେ ଅନ୍ୟ ସ୍ଥାନରୁ ଖାଦ୍ୟଶସ୍ୟ ପଠାଯାଇ ପାରିଲା । ପ୍ରଦେଶ ପ୍ରଦେଶ ମଧ୍ୟରେ ନିର୍ଭର-ଶୀଳତା ବୃଦ୍ଧି ପାଇଲା । ଭାରତବାସୀ ଜାଣିଲେ ଯେ, ସେମାନଙ୍କର ଅର୍ଥନୈତିକ ଜୀବନ ପରସ୍ପର ସହ ଓତପ୍ରୋତ ଭାବେ ଜଡ଼ିତ । ଦେଶର ସମୂହ ଉନ୍ନତି ପାଇଁ ସବୁ ଅଞ୍ଚଳ ମଧ୍ୟରେ ସହଯୋଗ ଆବଶ୍ୟକ ବୋଲି ସମସ୍ତେ ଉପଲବ୍ଧି କଲେ । ସର୍ବ ଭାରତୀୟ ଆର୍ଥିକ ଏକତା ଉପରେ ସାମୂହିକ ଉନ୍ନତି ନିର୍ଭର କଲା । ଫଳରେ ଜାତୀୟତା ଭାବ ପ୍ରସାରଲାଭ କଲା ।

ବ୍ରିଟିଶ ଶାସନର ଏହି ପ୍ରକାର ପ୍ରଭାବ ମଧ୍ୟରୁ ଭାରତରେ ଆଧୁନିକ ଜାତୀୟତାର ବିକାଶ ଘଟିଥିଲା ।

**ଆଧୁନିକ ଜାତୀୟତାର ଅଭ୍ୟୁଦୟ**

ବ୍ରିଟିଶ ସାମ୍ରାଜ୍ୟବାଦ ଯେତିକି ମାତ୍ରାରେ ଦୃଢ଼ୀଭୂତ ହେଉଥାଏ, ସେତିକି ମାତ୍ରାରେ ଭାରତର ରାଜନୈତିକ ଏକତା ମଧ୍ୟ ବୃଦ୍ଧି ପାଉଥାଏ । ସେହିପରି ପାଶ୍ଚାତ୍ୟ ଶିକ୍ଷାର ବିସ୍ତାର ସଙ୍ଗେ ରାଜନୈତିକ ଚେତନା ମଧ୍ୟ ବଢ଼ି ବଢ଼ି ଚାଲିଥାଏ । ତେଣେ, ପାଶ୍ଚାତ୍ୟ ପ୍ରଭାବ ଓ ନୂତନ ଜ୍ଞାନ ବିଜ୍ଞାନର ପ୍ରସାର ଦ୍ୱାରା ଊନବିଂଶ ଶତାବ୍ଦୀରେ ଯେଉଁ ନବ ଜାଗରଣ ଦେଖିବାକୁ ମିଳିଥିଲା, ଜାତୀୟ ଜୀବନରେ ତାହାର ପ୍ରଭାବ ସୁଦୂରପ୍ରସାରୀ ହେଲା । ସେହି ନବ-ଜାଗରଣ ଯୁଗରେ ପୁଣି ଭାରତର ଆର୍ଥିକ ଦୁର୍ଗତି ପାଇଁ ଚିନ୍ତାଶୀଳ ବ୍ୟକ୍ତିମାନେ ସରକାରଙ୍କ ବିରୁଦ୍ଧରେ ସଚେତନ ହୋଇ ଉଠିଲେ । ଜାଗରଣ ମଧ୍ୟରେ ଅସନ୍ତୋଷ ବ୍ୟାପିଚାଲିଲା । ପରିଣାମ ସ୍ୱରୂପ, ସାମ୍ରାଜ୍ୟବାଦ ବିରୁଦ୍ଧରେ ଜାତୀୟତାବାଦ ମସ୍ତକ ଉତ୍ତୋଳନ କଲା ।

ନବ ଜାଗରଣ ଓ ବ୍ରିଟିଶ ବିରୋଧୀ ମନୋଭାବ କିପରି ଭାବରେ ଜାତୀୟତାର ଅଭ୍ୟୁଦୟ ପ୍ରତି ସହାୟକ ହୋଇଥିଲା, ତାହାର ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

**ନବ ଜାଗରଣର ପ୍ରଭାବ**—ପ୍ରଥମତଃ, ନବ ଜାଗରଣ ବା ରେନାସାଁ • ଯୁଗର ଭାରତୀୟ ମନୀଷୀମାନେ ସର୍ବଭାରତୀୟ ମନୋଭାବ ସହ ସାରା ଦେଶର

ମଙ୍ଗଳ ଉଦ୍ଦେଶ୍ୟରେ ସଚେତନତା ସୃଷ୍ଟି କରିଥିଲେ । ତାତ୍ତ୍ୱିକ ଦୃଷ୍ଟିରୁ ସମସ୍ତ ମନୁଷ୍ୟଙ୍କୁ ସେମାନେ ଗୋଟିଏ ପ୍ରକାର ଆଧ୍ୟାତ୍ମିକ ଐକ୍ୟର ସୂଚନା ଦେଇଥିଲେ । ଦୟାନନ୍ଦ ଓ ବିବେକାନନ୍ଦ ଇତ୍ୟାଦି ମହାପୁରୁଷମାନେ ଭାରତୀୟତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରି ଜାତୀୟ ଉନ୍ମାଦନାରେ ଦେଶବାସୀଙ୍କୁ ଉଦ୍‌ବୃଦ୍ଧ କରିଥିଲେ ।

ତେଣେ, ନବ ଜାଗରଣ ଯୁଗର ସଂସ୍କାର ଆନ୍ଦୋଳନ ଦ୍ୱାରା ଜାତିପ୍ରଥା ଓ ସାମାଜିକ ଭେଦଭାବ ଶିଥିଳ ହୋଇ ଆସିଥିଲା । ନବ ଶିକ୍ଷିତ ଭାରତୀୟମାନେ ରକ୍ଷଣଶୀଳତା ପାଖରୁ ଦୂରେଇ ଯାଇଥିଲେ । ନୂତନ ଜ୍ଞାନାଲୋକ ବଳରେ ସେମାନେ ପ୍ରଗତିପନ୍ଥୀ ଭାବେ ଆତ୍ମପ୍ରକାଶ କଲେ । ଧର୍ମୀୟ ଓ ସାମାଜିକ ଉଦାରତା ପ୍ରକାଶ ପାଇବା ଫଳରେ ଜାତୀୟ ମନୋଭାବ ସଞ୍ଚାରିତ ହେଲା ।

ଦ୍ୱିତୀୟତଃ, ନବ ଜାଗରଣ ଯୁଗର ଶିକ୍ଷା ମଧ୍ୟରୁ ଭାରତୀୟମାନେ ଇଉରୋପୀୟ ସାହିତ୍ୟ, ଦର୍ଶନ, ରାଜନୀତି ଓ ଅର୍ଥନୀତି ପ୍ରଭୃତିର ବିଶଦ ପରିଚୟ ପାଇଲେ । ଇଉରୋପର ଗଣତାନ୍ତ୍ରିକ ଚିନ୍ତାଧାରା ଭାରତୀୟ ମନକୁ ପ୍ରଭାବିତ କଲା । ବ୍ୟକ୍ତି-ସ୍ୱାତନ୍ତ୍ର୍ୟ, ମାନବିକ ମୁକ୍ତି, ସାମାଜିକ ସାମ୍ୟ ଓ ରାଜନୈତିକ ସ୍ୱାଧୀନତା ;ପ୍ରଭୃତିର ମୂଲ୍ୟ ଭାରତବାସୀ ହୃଦୟଙ୍ଗମ କଲେ । ପାଶ୍ଚାତ୍ୟ ଜଗତର ଆଧୁନିକ ଇତିହାସ ଅଧ୍ୟୟନ କରି ସେମାନେ ଇଂଲଣ୍ଡରେ ଗଣତନ୍ତ୍ରର ଅଭ୍ୟୁଦୟ, ଆମେରିକାର ସ୍ୱାଧୀନତା ସଂଗ୍ରାମ, ଫରାସୀ ରାଷ୍ଟ୍ରବିପ୍ଳବ, ଗ୍ରୀସ୍ ଓ ଇଟାଲିର ମୁକ୍ତି ସଂଗ୍ରାମ ପ୍ରଭୃତି ବିଷୟରେ ଧାରଣା ଲାଭକଲେ । ପାଶ୍ଚାତ୍ୟର ଉଦାର ମତମାନ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମନରେ ଆଲୋଡ଼ନ ସୃଷ୍ଟି କଲା । ନିଜ ଦେଶର ଶୋଚନୀୟ ଅବସ୍ଥା ସହିତ ସେମାନେ ଅନ୍ୟ ଦେଶର ଉନ୍ନତ ଅବସ୍ଥା ତୁଳନା କଲେ । ମୁଦ୍ରଣ ଯନ୍ତ୍ରର ବିସ୍ତାର ଓ ପତ୍ର ପତ୍ରିକାର ପ୍ରସାର ଦ୍ୱାରା ଦେଶବାସୀଙ୍କ ସଚେତନତା ବୃଦ୍ଧି ପାଇବା ସଙ୍ଗେ ଦେଶରେ ରାଜନୈତିକ କାର୍ଯ୍ୟ କଳାପ ପାଇଁ ଆଗ୍ରହ ପ୍ରକାଶ ପାଇଲା ।

ତୃତୀୟତଃ, ନବଜାଗରଣ କାଳରେ ପାଶ୍ଚାତ୍ୟ ପ୍ରାଚ୍ୟ-ବିଦ୍ୟାବିଦ୍-ମାନେ ଓ ଭାରତୀୟ ଗବେଷକମାନେ ଏ ଦେଶର ଅତୀତ ଇତିହାସ ଆବିଷ୍କାର କରିବାକୁ ଲାଗିଲେ । ଅଗାଧ ଧର୍ମଶାସ୍ତ୍ର, ଦର୍ଶନ ଗ୍ରନ୍ଥ ଓ ସାହିତ୍ୟ ମଧ୍ୟରୁ

ସେମାନେ ଭାରତର ଐତିହ୍ୟ ଉପରେ ଆଲୋକପାତ କଲେ । ସ୍ଥାପତ୍ୟ, କଳା ଓ ଭାସ୍କର୍ଯ୍ୟ ଇତ୍ୟାଦିର ପ୍ରାଚୁର୍ଯ୍ୟ ଦେଖି ସମସ୍ତେ ଆଚମ୍ବିତ ହେଲେ । ଅତୀତର ଗୌରବରାଜି ବିଷୟରେ ସମ୍ୟକ ଧାରଣା ଜାତ ହେବା ଦ୍ୱାରା ଶିକ୍ଷିତମାନଙ୍କ ମନରେ ଜାତୀୟ ଗର୍ବ ଦୃଢ଼ୀଭୂତ ହେଲା । ପରାଧୀନତାର ଦୁର୍ଦ୍ଦିନରେ ସେମାନେ ଭବିଷ୍ୟତର ସୁଦିନ ଅପେକ୍ଷାରେ ଆଶାନ୍ୱିତ ହେଲେ ।

ଏହି ପ୍ରକାର ମାନସିକ ବିପ୍ଳବ ଫଳରେ ଜାତୀୟତାବୋଧ ଜାଗରିତ ହେଲା । ନବଜାଗରଣ ମଧ୍ୟରୁ ରାଜନୈତିକ ଜାତୀୟ ଜାଗରଣ ଆତ୍ମପ୍ରକାଶ କଲା ।

**ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରତିକ୍ରିୟା**

ସଚେତନତା ବଢ଼ି ଚାଲିଥିଲା ବେଳେ ବ୍ରିଟିଶ ସାମ୍ରାଜ୍ୟବାଦର ନଗ୍ନ ରୂପ ଭାରତବାସୀଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିବାକୁ ଲାଗିଲା । ଇଂରେଜମାନଙ୍କ ଶୋଷଣ ନୀତି, ଅମଲାତନ୍ତ୍ରର ସ୍ୱେଚ୍ଛାଚାର ଓ ଶାସିତମାନଙ୍କ ପ୍ରତି ଶାସକ ଗୋଷ୍ଠୀର ଚରମ ଅବହେଳା ଅଧିକ କାଳ ସହ୍ୟ କରିବା ସମ୍ଭବ ହେଲା ନାହିଁ । ଯଥା ସମୟରେ ଶିକ୍ଷିତ ବ୍ୟକ୍ତିମାନେ ସରକାରଙ୍କୁ ସମାଲୋଚନା କରିବା ପାଇଁ ଅଗ୍ରସର ହେଲେ । ଦେଶୀୟ ସମ୍ବାଦପତ୍ର ଗୁଡ଼ିକରେ ନାନା ପ୍ରକାର ଅଭିଯୋଗ ପ୍ରକାଶ ପାଇଲା । ଜନସାଧାରଣ ସେ ସବୁ ପଢ଼ିଲେ ଓ ଦେଶର ଦୁର୍ଗତି ବିଷୟ ଜାଣିବାକୁ ଲାଗିଲେ । ବିଦେଶୀ ସରକାର ବିରୁଦ୍ଧରେ ଅସନ୍ତୋଷ ବହ୍ନି ବ୍ୟାପିବାକୁ ଲାଗିଲା ।

ଊନବିଂଶ ଶତାବ୍ଦୀର ଶେଷ ଭାଗକୁ ଭାରତବାସୀଙ୍କ ଦାରିଦ୍ର୍ୟ ସର୍ବନିମ୍ନ ସ୍ତରରେ ପହଞ୍ଚିଥିଲା । କ୍ରମାଗତ ଭାବେ ଦୁର୍ଭିକ୍ଷମାନ ଦେଖିବାକୁ ମିଳିଲା । ଅଗଣିତ ମନୁଷ୍ୟ ସେହି ସବୁ ଦୁର୍ଭିକ୍ଷରେ ଜୀବନ ହରାଉ ଥିଲେ । ଅଥଚ ବ୍ରିଟିଶ ସରକାର ସେଥିପ୍ରତି ଉଦାସୀନ ରହୁଥିଲେ । ଏପରିକି, ଦୁର୍ଭିକ୍ଷ ପ୍ରତି ଭ୍ରୁକ୍ଷେପ ନ କରି ସାମ୍ରାଜ୍ୟବାଦୀ ସରକାର ଦେଶର ବିପୁଳ ରାଜସ୍ୱ ଅପବ୍ୟୟ କରୁଥିଲେ । ଉଦାହରଣ ସ୍ୱରୂପ, ଲର୍ଡ଼ ଲିଟନ ନାମକ ବଡ଼ଲାଟଙ୍କ ଶାସନ କାଳରେ ୧୮୭୬ ମସିହାରେ ମାଡ୍ରାଜ, ମହୀଶୂର, ବୋମ୍ବେ ଓ ହାଇଦ୍ରାବାଦ ଅଞ୍ଚଳରେ ଗୋଟିଏ ଭୟଙ୍କର ଦୁର୍ଭିକ୍ଷ ଦେଖାଦେଲା । ଅଯୋଧ୍ୟା ଓ ଉତ୍ତର ପ୍ରଦେଶର କେତେକ ଅଞ୍ଚଳରେ ମଧ୍ୟ ଉତ୍କଟ ଖାଦ୍ୟାଭାବ ଘଟିଲା । ସେହି ଦାରୁଣ ଦୁର୍ଭିକ୍ଷ ପ୍ରାୟ ଦୁଇବର୍ଷ ପାଇଁ ଲାଗି ରହିଲା । ପଚିଶ ଲକ୍ଷ ଲୋକ ସେହି ଦୁର୍ଭିକ୍ଷରେ ଶୋଚନୀୟ

ଭାବେ ଜୀବନ ହରାଇଥିଲେ । ବଡ଼ଲାଟ ଲିଟନ ଦେଶର ସେହିପରି ଦୁର୍ଦ୍ଦିନରେ ମଧ୍ୟ ଅଜସ୍ର ଅର୍ଥ ବ୍ୟୟ କରି ୧୮୭୭ ମସିହାରେ ଦିଲ୍ଲୀଠାରେ ମହାଆଡ଼ମ୍ବର ମଧ୍ୟରେ ଏକ ଦରବାର ଆହ୍ୱାନ କଲେ । ସେହି ଦରବାରରେ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କୁ 'କାଇଜାର-ଇ-ହିନ୍ଦ୍' ବା ଭାରତ ସାମ୍ରାଜ୍ଞୀ ଉପାଧି ଦିଆଗଲା ବୋଲି ଘୋଷଣା କରାଗଲା । ଚିନ୍ତାଶୀଳ ବ୍ୟକ୍ତିମାନେ ମର୍ମାହତ ହେଲେ ଯେ, ଅସଂଖ୍ୟ ଆବାଳ-ବୃଦ୍ଧ-ବନିତା ଦୁର୍ଭିକ୍ଷରେ ଜୀବନ ହରାଉଥିବା ବେଳେ ସେହିମାନଙ୍କ ଅର୍ଥରେ ସରକାର ଦରବାର ବସାଇ ସାମ୍ରାଜ୍ୟବାଦୀ ସ୍ୱେଚ୍ଛାଚାରୀ ଶାସନର ଚରମ ଦେଇ ପାରିଲେ ।

ଦେଶୀୟ ସମ୍ବାଦପତ୍ରମାନଙ୍କରେ ସରକାରୀ କାର୍ଯ୍ୟର ନିନ୍ଦା ଦେଖି ଲିଟନ ଆଇନ ଦ୍ୱାରା ସମ୍ବାଦପତ୍ରର ସ୍ୱାଧୀନତା ଉପରେ କଟକଣା ଜାରି କଲେ । ସେପରି କାର୍ଯ୍ୟ ଦେଖି ଦେଶବାସୀଙ୍କ ଅସନ୍ତୋଷ ବଢ଼ି ଚାଲିଲା ।

ଲର୍ଡ୍ ଲିଟନଙ୍କ ପରେ ଲର୍ଡ୍ ରିପନ ନାମକ ଜଣେ ଉଦାରଚେତା ବଡ଼ଲାଟ ଭାରତ ଶାସନ ପାଇଁ ଆସିଥିଲେ । ସେ ଭାରତୀୟ ବିଚାରପତିମାନଙ୍କୁ ଇଉରୋପୀୟ ଅପରାଧୀମାନଙ୍କର ବିଚାର କରିବା ପାଇଁ କିଛି କ୍ଷମତା ଦେବାକୁ ଇଚ୍ଛା କରିଥିଲେ । ସେଥିରେ କ୍ରୋଧାନ୍ୱିତ ହୋଇ ଶ୍ୱେତାଙ୍ଗ ସାହେବମାନେ ବଡ଼ଲାଟଙ୍କ ବିରୁଦ୍ଧରେ ତୁମୂଳ ଆନ୍ଦୋଳନ ଆରମ୍ଭ କରିଥିଲେ । ସେମାନଙ୍କର ଜାତିଗତ ବିଦ୍ୱେଷ ଦେଖି ଭାରତୀୟମାନେ ଉତ୍ତେଜିତ ହୋଇ ଉଠିଲେ । ଅବିଳମ୍ବେ ସେମାନେ ମଧ୍ୟ ଇଉରୋପୀୟମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଓ ବିକ୍ଷୋଭ ଚଳାଇଲେ । ଇଂରେଜମାନଙ୍କ ସାମ୍ରାଜ୍ୟବାଦ ଓ ଭାରତୀୟ ଜାତି ପ୍ରତି ତାଚ୍ଛଲ୍ୟଭାବ ଦେଶବାସୀଙ୍କ ମନରେ ଦାରୁଣ ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ଏହି ପ୍ରକାର ବ୍ରିଟିଶ ବିରୋଧୀ ଅସନ୍ତୋଷ ବୃଦ୍ଧି ପାଇବା ସଙ୍ଗେ ଭାରତବାସୀଙ୍କ ଜାତୀୟତାଭାବ ବୃଦ୍ଧି ପାଇ ଚାଲିଲା । ପରିଣାମ ସ୍ୱରୂପ, ଜାତୀୟ ଏକତାର ପ୍ରତୀକ ସ୍ୱରୂପ ଗୋଟିଏ ସର୍ବଭାରତୀୟ ଜାତୀୟ ସଙ୍ଗଠନ ଜନ୍ମଲାଭ କଲା । ସେହି ସଙ୍ଗଠନ ଆଧୁନିକ ଜାତୀୟତାର ପ୍ରତିନିଧି ତଥା ଅଗ୍ରଦୂତ ରୂପେ ଭୂମିକା ଗ୍ରହଣ କଲା ।

**ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ (୧୮୮୫)**

ଭାରତବାସୀଙ୍କ ପ୍ରାଣରେ ଜାତୀୟ ଚିନ୍ତାଧାରା ବିକାଶଲାଭ କରୁଥିଲା-ବେଳେ, ସାଙ୍ଗଠନିକ ସ୍ତରରେ ଜାତୀୟତାକୁ କାର୍ଯ୍ୟକାରୀ କରିବା ପାଇଁ ଚିନ୍ତାଶୀଳ ବ୍ୟକ୍ତିମାନେ ବ୍ୟଗ୍ର ହୋଇ ଉଠିଥିଲେ । ସେ କାଳରେ ଅଧିକାଂଶ ଇଂରେଜ ଶାସକ ଭାବୁଥିଲେ ଯେ, ବ୍ରିଟିଶ ସାମ୍ରାଜ୍ୟ ହେଉଛି ଏକ ଚିରସ୍ଥାୟୀ ସାମ୍ରାଜ୍ୟ ଏବଂ ସେହି ସାମ୍ରାଜ୍ୟର ବିଲୟ ନାହିଁ । ଏପରିକି, କୌଣସି ସଙ୍ଗଠନ ପକ୍ଷରୁ ସେମାନଙ୍କ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯିବ ବୋଲି ସେମାନେ କଳ୍ପନା କରୁ ନ ଥିଲେ । ଭାରତବାସୀ ଜାତୀୟତାବୋଧ ଦ୍ୱାରା ଅନୁପ୍ରାଣିତ ହେବେ ବୋଲି ସେମାନଙ୍କର ଧାରଣା ମଧ୍ୟ ହେଉ ନ ଥିଲା । ଉଦାହରଣ ସ୍ୱରୂପ, ୧୮୮୪ ମସିହାରେ ସାର୍ ଜନ୍ ଷ୍ଟ୍ରାଚୀ (Sir John Strachey) ନାମକ ଜଣେ ଅବସରପ୍ରାପ୍ତ ବରିଷ୍ଠ ଇଂରେଜ ପ୍ରଶାସକ ଇଂଲଣ୍ଡରେ ଘୋଷଣା କରିଥିଲେ ଯେ, "ବୋମ୍ବେ, ପଞ୍ଜାବ, ବଙ୍ଗ ଓ ମାନ୍ଦ୍ରାଜର ଅଧିବାସୀମାନେ କେବେ ହେଲେ ଭାବି ପାରିବେ ନାହିଁ ଯେ, ସେମାନେ ହେଉଛନ୍ତି ଏକ ମହାନ ଭାରତୀୟ ଜାତିର ମନୁଷ୍ୟ ।" ତାଙ୍କ ମତରେ, ଭାରତ ବୋଲି ଗୋଟିଏ ଦେଶ କେବେ ହେଲେ ନ ଥିଲା କିମ୍ବା ନାହିଁ । ସୁତରାଂ, ବ୍ରିଟିଶ ଶାସନ କାଳରେ ଯେତେ ପ୍ରକାର ଐକ୍ୟ ଦେଖିବାକୁ ମିଳୁଛି ତଦ୍ଦ୍ୱାରା ଭାରତୀୟ ଜାତୀୟତା ସୃଷ୍ଟି ହେବ ବୋଲି ଆଶଙ୍କା ପ୍ରକାଶ କରିବା ନିରର୍ଥକ ।

ଷ୍ଟ୍ରାଚୀଙ୍କର ଏପରି ଚିନ୍ତା ସମ୍ପୂର୍ଣ୍ଣ ଅବାସ୍ତବ ଓ ମୂଲ୍ୟହୀନ ଥିଲା । ଅପର ପକ୍ଷରେ, କେହି କେହି ବିଚକ୍ଷଣ ଇଂରେଜ ଶାସକ ଭାରତବାସୀଙ୍କ ଦୁଃଖ ଦୁର୍ଦ୍ଦଶା ଦେଖି ଅନୁମାନ କରି ପାରିଥିଲେ ଯେ, ଦିନେ ନା ଦିନେ ଭାରତରେ ଭୟାବହ ବିପ୍ଳବ-ବହ୍ନି ଜଳି ଉଠିବ ଓ ତଦ୍ଦ୍ୱାରା ବ୍ରିଟିଶ ସାମ୍ରାଜ୍ୟ ଧ୍ୱଂସ ପାଇଯିବ । ଏହିପରି ବ୍ୟକ୍ତିଙ୍କ ମଧ୍ୟରେ ଜଣେ ଥିଲେ ଆଲାନ୍ ଓକ୍ଟାଭିଆନ ହ୍ୟୁମ୍ (Allan Octavian Hume) ।

ହ୍ୟୁମ୍ ଭାବିଥିଲେ, ଯଦି ଭାରତୀୟ ନେତାମାନେ ସଙ୍ଗଠିତ ଆକାରରେ ଦେଶବାସୀଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିପାରିବେ ଏବଂ ସରକାର ମଧ୍ୟ ଉଦାରତା ସହ ସେମାନଙ୍କ ଅଭିଯୋଗଗୁଡ଼ିକର ସମାଧାନ କରିବେ, ତେବେ ବ୍ରିଟିଶ ସାମ୍ରାଜ୍ୟର ମଙ୍ଗଳ ହେବ ।

ସେତେବେଳକୁ ଭାରତୀୟ ନେତାମାନଙ୍କ ମଧ୍ୟରେ ଗୋଟିଏ ଜାତୀୟ ସଙ୍ଗଠନ ସ୍ଥାପନ ପାଇଁ ଉଦ୍ୟମ ଚାଲିଥାଏ । ହିଉମ୍ ସେହି ଆଗ୍ରହର ସୁଯୋଗ ନେଲେ । ନେତାମାନଙ୍କ ସହିତ ସାକ୍ଷାତ କରି ସେ ସେମାନଙ୍କୁ ଉତ୍ସାହ ଦେଲେ । ଫଳରେ, ୧୮୮୫ ମସିହା ଡିସେମ୍ବର ମାସରେ ବୋମ୍ବେ ନଗରୀରେ ଭାରତର ବିଭିନ୍ନ ଅଞ୍ଚଳରୁ ରାଜନୈତିକ ନେତାମାନେ ସମବେତ ହେଲେ । ସେଠାରେ ସେମାନେ ଭାରତୀୟ ଜାତୀୟ କଂଗ୍ରେସ ନାମକ ଗୋଟିଏ ରାଜନୈତିକ ଦଳ ଗଠନ କଲେ । ଭାରତର ଉନ୍ନତି ପାଇଁ ସ୍ୱଦେଶଭକ୍ତ କର୍ମୀମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ସ୍ଥାପନ, ଜାତି ଧର୍ମ ଓ ପ୍ରାଦେଶିକ ପାର୍ଥକ୍ୟ ଲୋପ କରି ଜାତୀୟ ଭାବଧାରାର ଦୃଢ଼ୀକରଣ ଏବଂ ବିଭିନ୍ନ ସମସ୍ୟା ଉପରେ ଦେଶବାସୀଙ୍କର ମତ ନିରୂପଣ କରିବା ଜାତୀୟ କଂଗ୍ରେସର ପ୍ରଧାନ ଲକ୍ଷ୍ୟ ହେବ ବୋଲି ଘୋଷଣା କରାଗଲା ।

ଭାରତୀୟ ଜାତୀୟ କଂଗ୍ରେସର ଜନ୍ମଲାଭ ଦ୍ୱାରା ଆଧୁନିକ ଭାରତ ଇତିହାସରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ହେଲା । କଂଗ୍ରେସକୁ କେନ୍ଦ୍ର କରି ପ୍ରଥମେ ରାଜନୈତିକ ସଚେତନତା, ତା'ପରେ ଜାତୀୟ ଆନ୍ଦୋଳନ ଏବଂ ଶେଷରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତର ସ୍ୱାଧୀନତା ସଂଗ୍ରାମ ଦେଖିବାକୁ ମିଳିଲା । ପରିଣାମ ସ୍ୱରୂପ, ଭାରତୀୟ ଜାତୀୟତାର ବିଜୟଲାଭ ଓ ବ୍ରିଟିଶ ସାମ୍ରାଜ୍ୟର ଅବସାନ ଘଟିଲା ।

---